# ଉତ୍କଳ ପ୍ରସଙ୍ଗ

ଶ୍ରାବଣ ୧୯୦୬ ଶକାବ୍ଦ ୪୧ ଖଣ୍ଡ ୧ମ ସଂଖ୍ୟା ଅଗଷ୍ଟ ୧୯୮୪




ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର

ବାର୍ଷିକ ଦେୟ ୧୦.୦୦

ପ୍ରତି ଖଣ୍ଡ ୧.୦୦

ମୁଦ୍ରଣ

ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

## ସୂଚୀପତ୍ର


ବନ୍ଦେ ମାତରମ୍
ସୁଜଳାମ୍, ସୁଫଳାମ୍, ମଳୟଜ ଶୀତଳାମ୍
ଶସ୍ୟ ଶ୍ୟାମଳାମ୍ ମାତରମ୍ ।
ଶୁଭ୍ରଜ୍ୟୋତ୍ସ୍ନା ପୁଲକିତ ଯାମିନୀମ୍
ଫୁଲ୍ଲ କୁସୁମିତ ଦ୍ରୁମଦଳ ଶୋଭିନୀମ୍
ସୁହାସିନୀମ୍ ସୁମଧୁର ଭାଷିଣୀମ୍
ସୁଖଦାଂ ବରଦାଂ ମାତରମ୍ ॥
ବନ୍ଦେ ମାତରମ୍ ।।।

# ମୋ ଦୃଷ୍ଟିରେ ....

ସ୍ୱାଧୀନତାର ଅର୍ଥ ନିଜ ଅଧୀନରେ ରହିବା । ବୈଷୟିକ ତଥା ଆଧ୍ୟାତ୍ମିକ ଉତ୍କର୍ଷ ଲାଭ ଦ୍ୱାରା ଏହା ସମ୍ଭବ ହୋଇଥାଏ । ସେଥିପାଇଁ ପ୍ରାଚୀନ ଭାରତର ମନିଷୀମାନେ ବ୍ୟକ୍ତି ଓ ରାଷ୍ଟ୍ରର ସର୍ବବିଧ କଲ୍ୟାଣ ସାଧନ ନିମନ୍ତେ ଉଦ୍ୟମ କରୁଥିଲେ । ଆମ ଐତିହ୍ୟ ଓ ଇତିହାସକୁ ବୁଝି ସୁନାର ଭାରତ ଗଠନ ଦିଗରେ ଐକ୍ୟବଦ୍ଧ ଉଦ୍ୟମ କରିବା ପାଇଁ ଏ ସଂଖ୍ୟା 'ଉତ୍କଳ ପ୍ରସଙ୍ଗ'ରେ ଆମେ ସହୃଦୟ ପାଠକପାଠିକାଙ୍କ ହାତରେ ଅର୍ପଣ କରୁଛୁ : ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର ମନନଧର୍ମୀ "ଓଡ଼ିଶାରେ ସମ୍ବାଦପତ୍ର ଓ ସାମ୍ବାଦିକତା", ଡଃ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କର ଉଦ୍‌ବୋଦୀପକ "ବର୍ଷଂ ତଦ୍ ଭାରତଂ ନାମ", ଅଧ୍ୟାପକ ଦମତି କିଶୋରୀ ମୋହନ ପାତ୍ର ଓ ବନ୍ଦିତା ଦେବୀଙ୍କର ଜାତୀୟ ଚରିତ୍ର ଅନୁଶୀଳନଧର୍ମୀ ରଚନା "ଭାରତର ସ୍ୱାଧୀନତା ସଂଗ୍ରାମ" ଶ୍ରୀ ଚନ୍ଦ୍ରଶେଖର ନାୟକଙ୍କର ଜାତୀୟ ପତାକାର ଇତିବୃତ୍ତି ସମ୍ବଳିତ "ଜନ୍ମଭୂମିର ଚଳନ୍ତି ପ୍ରତିମା" ଶ୍ରୀ ଉଦୟନାଥ ପାଠୀଙ୍କର ଭାରତର ଗୌରବ ସଙ୍ଗୀତ "ଜୟ ଜୟ ଭାରତ ଜନନି ନମସ୍ତେ" ଏବଂ ପ୍ରହରାଜ ସତ୍ୟନାରାୟଣ ନନ୍ଦଙ୍କର ସନାତନ ମୂଲ୍ୟବୋଧ ଉପରେ ଆଧାରିତ "ଭାରତୀୟ ସଂସ୍କୃତି : ହୃଦୟର ସଂସ୍କୃତି" । ଏତଦ୍‌ବ୍ୟତୀତ ଓଡ଼ିଶାର ସାମ୍ପ୍ରତିକ ପ୍ରଗତି ଚିତ୍ର ସମ୍ପର୍କରେ ଉପାଦେୟ ପ୍ରବନ୍ଧମାନ ଏ ସଂଖ୍ୟାରେ ପ୍ରକାଶ ହୋଇଛି ।

ସଂଖ୍ୟାଟି ଆମକୁ ଐତିହ୍ୟ ସହିତ ବର୍ତ୍ତମାନକୁ ସମନ୍ୱିତ କରିବା ପାଇଁ ଦିଗ୍‌ଦର୍ଶନ ଦେବ ବୋଲି ବିଶ୍ୱାସ ।

ଜୟହିନ୍ଦ୍



# ଓଡ଼ିଶାରେ ସମ୍ବାଦପତ୍ର ଓ ସାମ୍ବାଦିକତା

ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ

ଓଡ଼ିଶାରେ ସମ୍ବାଦପତ୍ର ସଂସ୍ଥା ଭାରତବର୍ଷର ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ଉତ୍ସାହପ୍ରଦ ନୁହେଁ । ଭାରତବର୍ଷର ପ୍ରାୟ ପ୍ରତ୍ୟେକ ରାଜ୍ୟରେ ଗୋଟିଏ ଗୋଟିଏ ପ୍ରଥମ ଶ୍ରେଣୀୟ ସମ୍ବାଦପତ୍ର ଅଛି । କିନ୍ତୁ ଓଡ଼ିଶା ଗୋଟିଏ ରାଜ୍ୟ ଯେଉଁ ରାଜ୍ୟରେ ସବୁ ସମ୍ବାଦପତ୍ର 'ସି' କ୍ଲାସ ବା ତା'ତଳକୁ । ଏହା ଉପରକୁ କେହି ଯାଇ ନାହାନ୍ତି । ତେଣୁ ସମ୍ବାଦପତ୍ର କ୍ଷେତ୍ରରେ ଏବେ ମଧ୍ୟ ଆମେ ଅନୁନ୍ନତ ଅବସ୍ଥାରେ ରହିଛୁ । ଏଠାରେ ଜଣେ କର୍ମୀକର୍ତ୍ତା ମନ୍ତବ୍ୟ ଦେଲେ–ସମ୍ବାଦପତ୍ରମାନଙ୍କରେ "ଆମ ପ୍ରତିନିଧିଙ୍କଠାରୁ" ପ୍ରକାଶ ପାଉଛି କିନ୍ତୁ ଆମ ପ୍ରତିନିଧିଙ୍କ କଥା ଯେତେବେଳେ ପଚରା ଯାଉଛି ସେତେବେଳେ ସମସ୍ତେ ମନା କରି ଦେଉଛନ୍ତି; କହୁଛନ୍ତି ଆମର କେହି ପ୍ରତିନିଧି ନାହାନ୍ତି । ଏହାଠାରୁ ବଳି ଦୁଃଖର କଥା ଆଉ କଣ ଥାଇପାରେ ? ସମ୍ବାଦପତ୍ରର ପ୍ରଥମ ଧର୍ମ ହେଉଛି ସତ୍ୟକୁ ସ୍ୱୀକାର କରିବା ଏବଂ ସତ୍ୟପ୍ରକାଶ କରିବା । କିନ୍ତୁ ସତ୍ୟକୁ ଯଦି ସ୍ୱୀକାର କରା ନ ଯାଏ, ତା' ହେଲେ କି ସାମ୍ବାଦିକତା ହେବ ?

ପ୍ରଥମତଃ, ଆମ ରାଜ୍ୟର ସମ୍ବାଦପତ୍ରର ଭବିଷ୍ୟତ ସମ୍ପର୍କରେ ଆମେ ସଚେତନ ରହିବା । କାରଣ ଓଡ଼ିଶାରେ ଏବେ ଶିଳ୍ପ ଜାଗରଣର ସ୍ୱର୍ଣ୍ଣଯୁଗ । ସମ୍ପ୍ରତି ସମ୍ବାଦପତ୍ରର ବିକାଶ ନିର୍ଭର କରେ ଶିଳ୍ପବିକାଶ ଓ ସାକ୍ଷରତା ବୃଦ୍ଧି ଉପରେ । କେରଳରେ ସମ୍ବାଦପତ୍ରର ଯଥେଷ୍ଟ ପ୍ରସାର ହୋଇପାରିଛି । କାରଣ ସେଠି ଶିକ୍ଷାର ବିକାଶ ଘଟିଛି । ସାକ୍ଷର ସଂଖ୍ୟା ବୃଦ୍ଧି ପାଇଛି । ବର୍ତ୍ତମାନ କେରଳ ମୁଖ୍ୟମନ୍ତ୍ରୀ କରୁଣାକରନ୍ ଦାବୀ କରୁଛନ୍ତି କେରଳରେ ଶତକଡ଼ା ୯୦ ଭାଗ ଲୋକ ସାକ୍ଷର । ସାରା ଭାରତବର୍ଷରେ କେରଳର ସାକ୍ଷର ସଂଖ୍ୟା ବେଶୀ । ତେଣୁ ସେଠାରେ ଗୋଟିଏ ଗୋଟିଏ ସମ୍ବାଦପତ୍ରର ପ୍ରଚାର ୪ ଲକ୍ଷରୁ ଊର୍ଦ୍ଧ୍ୱ । ମାଲାୟଲମ ମନୋରମା ଏବଂ ମାତୃଭୂମି ଉଭୟର ପ୍ରସାର ବର୍ତ୍ତମାନ ଚାରି ଲକ୍ଷରୁ ବେଶୀ । ପଶ୍ଚିମବଙ୍ଗର ଲୋକସଂଖ୍ୟା ତା'ଠାରୁ ବେଶୀ–ପ୍ରାୟ ୪ କୋଟି । କେରଳର ଲୋକସଂଖ୍ୟା ୨ କୋଟି ହେଲେ ମଧ୍ୟ ସେଠାରେ ସମ୍ବାଦପତ୍ରର ପ୍ରସାର ସଂଖ୍ୟା ଚାରି ଲକ୍ଷ, ପଶ୍ଚିମବଙ୍ଗରେ ଲୋକସଂଖ୍ୟା ୪ କୋଟି ହେଲେ ମଧ୍ୟ ସେଠାରେ ସମ୍ବାଦପତ୍ର ପ୍ରସାର ସଂଖ୍ୟା କେରଳ ତୁଳନାରେ କମ୍ । ଏଥିରୁ ପ୍ରମାଣିତ ହେଉଛି ଯେ କେରଳରେ ସାମ୍ବାଦିକତାର ବିକାଶର ପ୍ରଧାନ କାରଣ ହେଉଛି ସାକ୍ଷରତା । ଅନ୍ୟାନ୍ୟ ରାଜ୍ୟ ମଧ୍ୟରେ ମହାରାଷ୍ଟ୍ରରେ ସାମ୍ବାଦିକତାର ବିକାଶ ଘଟୁଛି । ଏହାର ଏକମାତ୍ର କାରଣ ଶିଳ୍ପର ବିକାଶ । ଓଡ଼ିଶାରେ ଶିଳ୍ପର ବିକାଶ ନାହିଁ, ସାକ୍ଷରତାର ବିକାଶ ନାହିଁ, ତେଣୁ ସମ୍ବାଦପତ୍ରର ଯେଉଁ ବିକାଶ ଘଟିବା କଥା ତାହା ହୋଇ ପାରିନାହିଁ ।

ବର୍ତ୍ତମାନ ଓଡ଼ିଶାରେ ଯେଉଁଭଳି ଭାବରେ ଶିଳ୍ପ ବିକାଶ ଏବଂ

ସାକ୍ଷରତାର ବୃଦ୍ଧି ଘଟୁଛି, ନିଶ୍ଚିତ ଭାବେ ଓଡ଼ିଶାରେ ସମ୍ବାଦପତ୍ରର ବିକାଶ ହେବ । ଗତ ଚାରିବର୍ଷ ଭିତରେ ଦୁଇଟି ଦୈନିକ ସମ୍ବାଦପତ୍ର ଭୁବନେଶ୍ୱରରୁ ପ୍ରକାଶ ପାଉଛି, ଗୋଟିଏ ବ୍ରହ୍ମପୁରରୁ ପ୍ରକାଶ ପାଉଛି, ଗୋଟିଏ ସମ୍ବଲପୁରରୁ ପ୍ରକାଶ ପାଉଛି । ଗୋଟିଏ ଇଂରାଜୀ ଦୈନିକର ପୁନରୁଦ୍ଧାର କରାଯାଇଛି । ତେଣୁ ଏ ସବୁ ଆଶାଜନକ ଏବଂ ଉତ୍ସାହପ୍ରଦ । ପ୍ରତ୍ୟେକ ଜିଲ୍ଲାରୁ ଦୈନିକ ସମ୍ବାଦପତ୍ର ପ୍ରକାଶିତ ହେବାର ସମୟ ଆସିଛି । ଆଜି କେଉଁଝର ଜିଲ୍ଲାର ଗୋଟିଏ ସାପ୍ତାହିକ ପତ୍ରିକା ସମସ୍ତଙ୍କୁ ବିତରଣ କରାଗଲା । ପ୍ରତ୍ୟେକ ଜିଲ୍ଲାରୁ କିଛିନା କିଛି ସମ୍ବାଦପତ୍ର ବର୍ତ୍ତମାନ ପ୍ରକାଶ ପାଉଛି । ଅଧିକ ସଂଖ୍ୟାରେ ସମ୍ବାଦପତ୍ର ପ୍ରକାଶ କରିବା ପାଇଁ ସାମ୍ବାଦିକଙ୍କ ମନରେ ଆଗ୍ରହ ସୃଷ୍ଟି ହୋଇଛି । ଏହା ଗଣତନ୍ତ୍ର ପକ୍ଷରେ ବିଶେଷ ଭାବେ ସ୍ୱାଗତଯୋଗ୍ୟ । କାରଣ କୌଣସି ଗଣତନ୍ତ୍ର ରାଷ୍ଟ୍ର ସାମ୍ବାଦିକତା ବିକାଶ ବିନା କେବେହେଲେ ଅଗ୍ରଗତି କରିପାରିବ ନାହିଁ । ସାମ୍ବାଦିକତା ଯେଉଁ କାର୍ଯ୍ୟକରେ ଗଣତନ୍ତ୍ର ରାଷ୍ଟ୍ରରେ ଅନ୍ୟ ଅନୁଷ୍ଠାନ ତାହା କ୍ୱଚିତ୍ କରିପାରେ । ଅନେକ କଥା ନିର୍ଭୀକ ଭାବରେ ସମ୍ବାଦପତ୍ରରେ ପ୍ରକାଶ କରାଯାଇପାରେ । ଯେଉଁଠି ଯାହା ଭୁଲ ତ୍ରୁଟି ରହୁଛି ତାକୁ ପ୍ରକାଶ କରାଯାଇପାରେ । ସାମ୍ବାଦିକତାର ଏହା ମହନୀୟ କର୍ତ୍ତବ୍ୟ । ଭାରତବର୍ଷରେ ସାମ୍ବାଦିକତା କ୍ଷେତ୍ରରେ ସେ କର୍ତ୍ତବ୍ୟ ସାଧିତ ହେଉଛି, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଦୁଃଖର ବିଷୟ ଅନେକ ସମୟରେ ଦୋଷତ୍ରୁଟି ପ୍ରକାଶ କରିବା ଆଳରେ ପ୍ରକୃତରେ ଦୋଷତ୍ରୁଟି ଅନ୍ୱେଷଣ ନକରି ଅସୂୟାଧର୍ମୀସମ୍ବାଦ ପ୍ରକାଶ ପାଉଛି । ଅନେକ ସମୟରେ ବ୍ୟକ୍ତିଗତ ଅସୂୟା, ବ୍ୟକ୍ତିଗତ ବିଦ୍ୱେଷ କାର୍ଯ୍ୟ କରୁଛି ଏବଂ କେବଳ ସେ ସେତିକି କାର୍ଯ୍ୟ କରୁଛି ତା'ହେଲେ ତାକୁ ଚରିତାର୍ଥ କରିବା ପାଇଁ ଅତ୍ୟନ୍ତ ମିଥ୍ୟା ସମ୍ବାଦ ପରିବେଷଣ କରାଯାଉଛି । ବୋଧହୁଏ ମନେକରାଯାଉଛି, ବାରମ୍ବାର ମିଥ୍ୟା ସମ୍ବାଦ ପରିବେଷଣ କରାଗଲେ ତାହା ସତ୍ୟ ବୋଲି ପ୍ରତୀତ ହେବ। ଏହା ସାମ୍ବାଦିକତାର ଧର୍ମ ନୁହେଁ । ମୋର ଅନୁରୋଧ ସତ୍ୟ ପ୍ରକାଶ ପାଉ, ସତ୍ୟ ଉଦ୍ଘାଟନ କରାଯାଉ, ଯେଉଁଠି ସାମ୍ବାଦିକତା ସଂସ୍କାରଧର୍ମୀ ସେଠାରେ ସାମ୍ବାଦିକତା ଉତ୍ସାହିତ ହେଉ । କିନ୍ତୁ ସାମ୍ବାଦିକତା ଏପରି ନହେଉ, ଏପରି ସ୍ତରକୁ ନଯାଉ, ଯେଉଁ ସ୍ତରରେ ତାହାକୁ କାମଳ ସାମ୍ବାଦିକତା ବୋଲି କୁହାଯାଇପାରିବ । ମୁଁ ଆଶା କରୁଛି ଓଡ଼ିଶାରେ ସାମ୍ବାଦିକତାର ଗୋଟିଏ ପରମ୍ପରା ଅଛି, ବହୁଦିନ ଧରି ଗୋଟିଏ ସଂସ୍କାର ରହିଛି, ଐତିହ୍ୟ ରହିଛି । ସେ ଐତିହ୍ୟ ଏବଂ ପରମ୍ପରା ଯେପରି କ୍ଷୁର୍ଣ୍ଣ କରାନଯାଏ ସେଥିପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ବହୁ ନୂତନ ସମ୍ବାଦପତ୍ର ପ୍ରକାଶ ପାଉଛି । ସେ ସବୁ ମଧ୍ୟ ଉନ୍ନତ ଧରଣର ପରମ୍ପରାକୁ ଅନୁସରଣ କରିବା ଉଚିତ୍ । ଶସ୍ତା କଥା ପ୍ରକାଶ କରି ଏବଂ ଅସତ୍ୟ କଥା ପରିବେଷଣ କରି ଲୋକଙ୍କ ମନକୁ ଆକର୍ଷିତ କରାଯାଇନପାରେ, କିନ୍ତୁ ସେ ସମ୍ବାଦର ମୂଲ୍ୟ କ'ଣ ହେବ ? ତାର ପରିଣତି ଅନୁଧ୍ୟାନ କରିବା ଉଚିତ୍ । ସଂସ୍କୃତରେ କଥା ଅଛି 'ପରିଣତିରବଧାର୍ଯ୍ୟା ଯତ୍ନତଃ ପଣ୍ଡିତେନ' ସାମ୍ବାଦିକତା କ୍ଷେତ୍ରରେ ମଧ୍ୟ ଏହା ପ୍ରଯୁଜ୍ୟ । କେଉଁଠି କିଛି ଆନ୍ଦୋଳନ ନଥାଇ ଆନ୍ଦୋଳନ ହେଉଛି ବୋଲି କେବଳ ଖବର କାଗଜରେ ପ୍ରକାଶ ପାଉଛି । ସାଧାରଣ ଭାବରେ ଦେଖିବାକୁ ମିଳେ କୌଣସି କୌଣସି ଆନ୍ଦୋଳନ ଖବର କାଗଜ ଭିତରେ ସୀମାବଦ୍ଧ । ଏପରି ଗୁଡ଼ିଏ ମିଥ୍ୟାକଥା ବାହାରୁଛି । ଫଳରେ ଜଣାପଡୁଛି, ଯେପରି ଗୋଟିଏ ପ୍ରବଳ ଆନ୍ଦୋଳନ ଓଡ଼ିଶାରେ ହେଉଛି । କିନ୍ତୁ କାର୍ଯ୍ୟରେ ଦେଖିବାକୁ ଗଲେ ସେପରି କୌଣସି ଆନ୍ଦୋଳନ ନାହିଁ ।

ତେଣୁ ସବୁ ସମୟରେ ସାମ୍ବାଦିକତାର କର୍ତ୍ତବ୍ୟ ରାଷ୍ଟ୍ର ଓ ସମାଜପ୍ରତି ରହିଛି । ସରକାରଙ୍କର ଯେପରି ସାମ୍ବାଦିକମାନଙ୍କ ପ୍ରତି କର୍ତ୍ତବ୍ୟ ରହିଛି, ସାମ୍ବାଦିକମାନଙ୍କର ମଧ୍ୟ ସରକାରଙ୍କ ପ୍ରତି ସେହିପରି କର୍ତ୍ତବ୍ୟ ରହିଛି । ତେଣୁ ରାଷ୍ଟ୍ର ପ୍ରତି, ସାଧାରଣ ସମାଜ ପ୍ରତି ଯେଉଁ କର୍ତ୍ତବ୍ୟ ରହିଛି ସେହି କର୍ତ୍ତବ୍ୟ ପାଳିତ ହେବା ଉଚିତ ।

ଦଶବର୍ଷ ତଳେ ଗୋଟିଏ ହିସାବ ନିଆଯାଇଥିଲା । ସେ ହିସାବରେ ଦେଖାଯାଇଥିଲା ସମ୍ବାଦପତ୍ରଗୁଡ଼ିକ ଯେଉଁ ସମ୍ବାଦ ଦେଉଛନ୍ତି ତା'ର ଶତକଡ଼ା ପାଞ୍ଚଭାଗ ମାତ୍ର, ବିଭିନ୍ନ ଉନ୍ନୟନମୂଳକ ଓ ବିକାଶ କାର୍ଯ୍ୟ ସହିତ ସଂପୃକ୍ତ । ଅବଶିଷ୍ଟ ସବୁ ଅନ୍ୟାନ୍ୟ ସମ୍ବାଦ । ଭାରତ ଗୋଟିଏ ଉନ୍ନୟନମୁଖୀ ରାଷ୍ଟ୍ର । ସମସ୍ତ କ୍ଷେତ୍ରରେ ଆମେ ଉନ୍ନୟନମୂଳକ କାର୍ଯ୍ୟକ୍ରମ ଗ୍ରହଣ କରି ଏ ଦେଶକୁ ଆଗେଇ ନେବା ପାଇଁ ଯତ୍ନ କରୁଛେ । ସାମାଜିକ ନ୍ୟାୟ ପ୍ରତିଷ୍ଠା କରିବା ପାଇଁ, ଅର୍ଥନୈତିକ ସାମ୍ୟ ପ୍ରତିଷ୍ଠା କରିବା ପାଇଁ ବିଭିନ୍ନ ଯୋଜନା ଜରିଆରେ ଉଦ୍ୟମ ହେଉଛି । ତେଣୁ ଯଦି ଉନ୍ନୟନମୂଳକ କାର୍ଯ୍ୟକୁ ଆମେ ସମ୍ବାଦପତ୍ରରେ ସବୁଠାରୁ କମ୍ ସ୍ଥାନ ଦେବା ତା'ହେଲେ ଲୋକଙ୍କୁ ଅନ୍ଧକାରରେ ରଖିବା ! ସେଇଥି ପାଇଁ ଉନ୍ନୟନମୂଳକ କାର୍ଯ୍ୟକ୍ରମକୁ ଅଧିକ ଦୃଷ୍ଟି ଦିଆଯିବ ବୋଲି ମୁଁ ଆଶା କରେଁ ।

(ଉତ୍କଳ ସାମ୍ବାଦିକ ସଂଘର ବାର୍ଷିକ ଅଧିବେଶନରେ ପ୍ରଦତ୍ତ ଭାଷଣରୁ)



# ମଣି ସାଆଁତରା

ଶ୍ରୀ ରାଧାମୋହନ ଗଡ଼ନାୟକ

(‘କୃଷ୍ଣଚକ୍ର’ ଇଂରେଜ ବିରୋଧୀ ଅନୁଗୋଳ ରାଜା ସୋମନାଥ ସିଂହ ଜଗଦେବଙ୍କର ଗୁପ୍ତଗଡ଼ । ‘ରାମ ଲକ୍ଷ୍ମଣ’ କମାଣ ଦୁର୍ଗ ଦ୍ୱାରର ଉଭୟ ପାର୍ଶ୍ୱରେ ସ୍ଥାପିତ । ଇଂରେଜ ସରକାରଙ୍କ ସହିତ ବିରୋଧ କରି ରାଜା ସେଇ ଗଡ଼ରେ ବସବାସ କରୁଥିଲେ । ଶେଷରେ ଅନୁଗୁଳ ଖାସ ହେଲା ୧୮୪୭ ର ଡିସେମ୍ବର ମାସରେ । ୧୮୪୮ ର ଜାନୁଆରୀ ମାସରେ କର୍ଣ୍ଣେଲ କ୍ୟାମ୍ବେଲ ଅନୁଗୁଳ ଫିଲ୍ଡ଼ ଫୋର୍ସର ସେନାପତି ଭାବରେ ସାମରିକ ବାହିନୀ ଘେନି ଅନୁଗୁଳ ଅଭିଯାନ କରିଥିଲେ । ଦୁର୍ଗ ଦ୍ୱାରରେ ଦ୍ୱାରରକ୍ଷକ ‘ମଣି ସାଆଁତରା’ର ଶହୀଦତ୍ୱ ଆଜି କିମ୍ବଦନ୍ତୀର ବିଷୟବସ୍ତୁ ହୋଇ ରହିଛି ।)

—୧—

‘କୃଷ୍ଣଚକ୍ର’ ଦୁର୍ଗ ଦୁଆରୁ
ଲକ୍ଷ୍ୟ କରିଲା ଦୁଆରୀ
କଳ କୋଳାହଳେ ଫିରିଙ୍ଗ ଫଉଜ
ଉଆଡ଼େ ଆସୁଚି ଜୁଆରି ।

ଦେଖୁ ଦେଖୁ ତାର ମରମ ଭିତରେ
ଜାଗିଲା ସେ ଏକ କଂପ
କଂପ ନୁହଇ ଭୀତି-ଲକ୍ଷଣ
ଜୀବନରେ ଭରେ ଲଂଫ ।

—୨—

ରାତି ପାହିବାକୁ ବେଶି ଆଉ ନାହିଁ
ଦୁର୍ଗ ଦୁଆର ପାଖରେ
ଘନ ବନମାଳ ଚକିତେ ଜାଗିଲା
କୁମ୍ଭାଟୁଆ ଡାକରେ ।

ମିରିଗ ମୟୂର ଚୁହାଙ୍କି ଉଠିଲେ
ବନ ଗହନର ଅଙ୍କେ
କାକ ଶୁକ ପିକ ଡାକ ହାକ ହୋଇ
ଉଡ଼ିଲେ ଗଗନ ବକ୍ଷେ ।

— ୩ —

ପାଖେଇ ଆସିଲା ବିପୁଳ ବାହିନୀ
ଆକୁଳିତ କରି ବନାନୀ,
ଦେଖୁ ଦେଖୁ ଖରେ ଗର୍ଜି ଉଠିଲା
ଫିରିଙ୍ଗ ସେନାର ସେନାନୀ

“କିଏରେ ସେଇଠି ଛିଡ଼ା ହୋଇଅଛୁ
ଜବାବ ଦେ’ରେ ଜଲ୍‌ଦି,
ଯେଉଁଠି ରହିଚୁ ସେଇଠି ରହିଥା
ବର୍ତ୍ତମାନ ତୁ ବନ୍ଦୀ ।”

—୪—

“କହିଦେଲେ ଖାଲି ବନ୍ଦୀ ହେବିକି ?
ମୁଁ ଯେ ମୁକ୍ତିର ଭକ୍ତ
ଶିରରେ ଶିରରେ ବହିଚିତ ମୁହିଁ
ମୋହରି ଦେଶର ରକ୍ତ ।

ମୋ ଦେଶର ସେଇ ରକ୍ତ ଧରି କି
କେଉଁଠି ଖୋଜିବି ଶରଣ ?
ଜୀବନରେ ତାହା କରିପାରିବିକି
ବରିବି ପଛକେ ମରଣ ।”

—୫—

ଥାଟ ଦେଖୁ ଦେଖୁ ମଣି ସାଆଁତରା
ବୁଝିପାରିଥିଲା ସକଳ
‘ରାମ ଲକ୍ଷ୍ମଣ’ କମାଣ ମୁହଁରେ
ଭରିଦେଇଥିଲା ଅନଳ ।

ଅନାଇ ଦେଖିଲ ତାହାରି ଭିତରୁ
ବହନ ନହୋଇ ବାହାର
ଭକ ଭକ ଜଳ ଉଚ୍ଛୁଳି ଉଠୁଛି
କୁଟ ଖେଳ ଆଉ କାହାର ?

—୬—

ଗୋରା ସେନାପତି ଗର୍ଜିଲ ପୁଣି—
ହୁକୁମ ମାନରେ ଜଲଦି
ସ୍ୱାଧୀନ ପଗଏ କଅଣ କହୁଛୁ
ବର୍ତ୍ତମାନତୁ ବନ୍ଦୀ ।

କହରେ କେଉଁଠି ଲଚିଚି ତୋ ରଜା,
ସୋମନାଥ ସିଂହ ତୁମର,
ସଂଧାନ ଦେ', ସଂଧାନ ଦେ'
ନୋହିଲେ ମୃତ୍ୟୁ ସୁମର ।"

—୭—

କଅଣ କହୁଚ ଫିରିଂ ସେନାନୀ
କ୍ଷତ୍ରିୟ ମୁଁ କି ମରିବି ?
ରଜା ରଜଜର ଛିଦ୍ର କହି ମୁଁ
ଦେଶର ଦୋରେହା କରିବି ।

ମୋହ ଜୀବନର ନାଡ଼ି ଭୁଲିଯିବି,
ଆଛି ଏ ମୋହର ମୁଲକେ ?
ମଣି ସାଆଁତର କହୁଅଛି ମୁହିଁ
ମୃତ୍ୟୁ ବରିବି ପୁଲକେ ।"

—୮—

"ମୃତ୍ୟୁ ବରିବୁ"? କହି ସେନାପତି
ମଣି ସାଆଁତର—ଲକ୍ଷ୍ୟେ,
ଗୁଳି ଦାଗି ଦେଲ, ଗୁଳି ଦାଗି ଦେଲ
ମଣି ସାଆଁତର—ବକ୍ଷେ ।

ମଣି ସାଆଁତର ଭୂଇଁତଳେ ତହିଁ
ଲେଟି ଗଲ ଆଖି ପଲକେ
ମୃତ୍ୟୁ ବରି ସେ ମୃତ୍ୟୁ ଜିଣିଲ
ଜୀବନର ଏକ ଝଲକେ ।

ସଂପାଦକ, କୋଣାର୍କ
ଓଡ଼ିଶା ସାହିତ୍ୟ ଏକାଡେମି

ଜାତିର ଉନ୍ନତି ସେ କାହିଁ କରିବ
ସ୍ୱାର୍ଥେ ଯାର ବ୍ୟସ୍ତ ମନ,
ଶାଗୁଣା ବିଲୁଆ ଚିକିତ୍ସକ ହେଲେ
ଶବ କି ପାଇବ ପ୍ରାଣ ?
ଜାତି ନର୍ଦ୍ଦିଘୋଷ୍ଟ ଚଳିବ କି ରଥ
ସ୍ୱାର୍ଥକୁ ସାରଥୀ କଲେ,
ଟାଣେ କିରେ ଗାଡ଼ି ଦାନାର ତୋବଡ଼ା
ଘୋଡ଼ା ମୁହେଁ ବନ୍ଧା ଥିଲେ ?

ମଧୁସୂଦନ

# ବର୍ଷଂ ତଦ୍ ଭାରତଂ ନାମ

ଡକ୍ଟର କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ

ବିଷ୍ଣୁପୁରାଣରେ ଭାରତ ଭୂଖଣ୍ଡ ଓ ତାର ଅଧିବାସୀମାନଙ୍କର ପରିଚୟ ଦେବାକୁଯାଇ ପୁରାଣକାର କହିଛନ୍ତି—

ଉତ୍ତରଂ ଯତ୍ ସମୁଦ୍ରସ୍ୟ ହିମାଦ୍ରେଶ୍ଚୈବ ଦକ୍ଷିଣମ୍,
ବର୍ଷଂ ତଦ୍ ଭାରତଂ ନାମ ଭାରତୀ ଯତ୍ର ସନ୍ତତିଃ ।।

(ବି: ପୁ: ୧୧,୩,୧)

ହିମାଳୟର ଦକ୍ଷିଣକୁ ଓ (ଭାରତ) ମହାସାଗରର ଉତ୍ତରକୁ ଯେଉଁ ଦେଶ ରହିଲା ତାହା ଭାରତ ନାମରେ ଖ୍ୟାତ, ତାହାର ଅଧିବାସୀମାନେ ଭାରତୀୟ ।

ବାସ୍ତବରେ ଦେଶର ନାମ କେବେ ଭାରତରୂପେ କଥିତହେଲା ତାହାର ନିର୍ଦ୍ଦିଷ୍ଟ ବିବରଣୀଦେବା କଷ୍ଟକର । ଅନେକଙ୍କ ମତରେ ପୁରୁବଂଶରେ ଜାତ ମହାରାଜ ଦୁଷ୍ମନ୍ତଙ୍କ ପୁତ୍ର ଭରତଙ୍କ ନାମାନୁସାରେ ଭାରତବର୍ଷ ହୋଇଅଛି । ତାହାହେଲେ ଏହି ନାମର ଉତ୍ପତ୍ତି ମହାଭାରତ ଯୁଗରେ ହୋଇଥିବା ସମ୍ଭବ । ଆଉ କେହି କେହି 'ଭାରତ'କୁ 'ଭା-ରତ' ଅର୍ଥାତ୍ ଜ୍ଞାନ ରୂପକ 'ଭା' ଅର୍ଥାତ୍ ଆଲୋକ ବା ତେଜରେ 'ରତ' ଅର୍ଥାତ୍ ଜଡ଼ିତଥିବା ହେତୁ ଏହି ଦେଶ ଭାରତ ନାମରେ ପରିଚିତ ହୋଇ ଆସିଛି । କିନ୍ତୁ ଶେଷୋକ୍ତ ବ୍ୟୁତ୍ପତ୍ତିଟି ଯେତେ ପାଣ୍ଡିତ୍ୟପୂର୍ଣ୍ଣ ହେଲେହେଁ ତହିଁରେ ବାସ୍ତବତା ଥିଲାପରି ମନେହୁଏ ନାହିଁ । ମହାକବି କାଳିଦାସ ଶକୁନ୍ତଳା ନାଟକରେ ମହର୍ଷି ମାରୀଚଙ୍କ ମୁଖରେ ଶକୁନ୍ତଳାଙ୍କ ପୁତ୍ର 'ସର୍ବଦମନ' ପୃଥିବୀର ଅଧୀଶ୍ୱରହୋଇ ଲୋକମାନଙ୍କ ଭରଣହେତୁ 'ଭାରତ' ନାମରେ ଖ୍ୟାତ ହେବେବୋଲି ଆଶୀର୍ବଚନ ବ୍ୟକ୍ତ କରିଅଛନ୍ତି । ଖୁବ୍ ସମ୍ଭବ, ଏହି ଭରତ ହିଁ ପରେ ନିଜର ମହନୀୟ କୀର୍ତ୍ତିରାଜିରେ ବିମଣ୍ଡିତ ହୋଇଥିବା ହେତୁ ଦେଶର ନାମ ତାଙ୍କ ନାମାନୁସାରେ ନାମିତହୋଇ ଆସିଛି । ପୁରୁବଂଶରେ ଯେତେ ରାଜା ରାଜତ୍ୱ କରିଥିଲେ ସେମାନଙ୍କ ମଧ୍ୟରେ ଭରତଙ୍କ ରାଜତ୍ୱ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଓ ଗୌରବୋଜ୍ଜ୍ୱଳ ଥିଲା ଏଥିରେ ସନ୍ଦେହନାହିଁ । ଏହି ଭରତଙ୍କୁ କେନ୍ଦ୍ରକରି ଦେଶର ନାମ ଭାରତ ହୋଇଥିବା ପରଂପରା ସଂସ୍କୃତ ସାହିତ୍ୟରେ ପ୍ରାଞ୍ଜଳଭାବେ ଉପଲବ୍ଧ ହୁଏ ।

ଶିଶୁପାଳ ବଧରେ ମହାକବି ମାଘ ଯୁଧିଷ୍ଠିରଙ୍କ ମୁଖରେ ଶ୍ରୀକୃଷ୍ଣଙ୍କୁ ସ୍ତୁତିକରିବା ଛଳରେ ଭାରତବର୍ଷର ଉଲ୍ଲେଖ କରିଛନ୍ତି—

ସା ବିଭୂତିରନୁଭାବସଂପଦାଂ ଭୂୟସୀ ତବ ଯଦାୟତାୟତି ।
ଏତଦୁଢ଼ଗୁରୁଭାର ! ଭାରତଂ ବର୍ଷମଦ୍ୟ ମମ ବର୍ତ୍ତତେ ବଶେ ।।

ସର୍ଗ ୧୪,୫ ଶ୍ଳୋକ

ହେ ମହାନୁଭବ ! ହେ ବିଶ୍ୱମ୍ଭର ! ଏହି ଯେଉଁ ଭାରତବର୍ଷକୁ ଦୀର୍ଘକାଳ ମୁଁ ଶାସନାଧୀନ ରଖି ପାରିଛି, ତାହାର ମୂଳରେ ଆପଣଙ୍କ ଅଖଣ୍ଡ ପ୍ରଭାବ ବିଦ୍ୟମାନ ।

ଉକ୍ତ ଶ୍ଳୋକର ଟୀକାରେ ମଲ୍ଲିନାଥ ଭାରତକୁ ବ୍ୟାଖ୍ୟାକରି 'ଭରତସ୍ୟ ରାଜ୍ଞଃ ଇଦଂ ଭାରତମ୍' ବୋଲି ଉଲ୍ଲେଖ କରିଛନ୍ତି । ଅନ୍ୟ ଏକ ଟୀକାକାର ବଲ୍ଲଭଦେବ 'ଭାରତବର୍ଷଂ ଭାରତଖଣ୍ଡଂ' ବୋଲି ମଧ୍ୟ ବ୍ୟାଖ୍ୟା କରିଛନ୍ତି । ଏଥିରୁ ଭାରତ ସହ ଭରତଙ୍କ ସଂପର୍କ ସୁସ୍ପଷ୍ଟ ।

ଯୁଗ ଯୁଗ ଧରି ଏଦେଶର ସାହିତ୍ୟରେ ଭାରତବର୍ଷର ମହିମାଗାନ ହୋଇଥିବା ସଙ୍ଗେ ସଙ୍ଗେ ବିଶ୍ୱ ଭ୍ରାତୃତ୍ୱ ଓ ମୈତ୍ରୀର ବାର୍ତ୍ତା ପ୍ରସାରିତ ହୋଇ ଆସିଛି । ତତ୍ ସଙ୍ଗେ ସଙ୍ଗେ ଦେଶର ଅଖଣ୍ଡତାପ୍ରତି ମଧ୍ୟ ଜାତିକୁ ସାହିତ୍ୟ ଓ ଧର୍ମାଚରଣ ମାଧ୍ୟମରେ ସଚେତନ କରାଯାଉଛି । କୌଣସି ବ୍ରତ, ଉପାସନା, ହୋମ ବା ବ୍ରତ ବିବାହାଦିରେ ଯେଉଁ ସଂକଳ୍ପ ବାକ୍ୟ ବୋଲାଯାଏ ତହିଁରେ 'ଜମ୍ବୁଦ୍ୱୀପେ ଭାରତବର୍ଷେ'ବୋଲି କୁହାଯିବା ସଙ୍ଗେ ସଙ୍ଗେ ନିମ୍ନୋକ୍ତ ଦୁଇଟି ଶ୍ଳୋକପାଠ କରାଯାଏ—

ଗଙ୍ଗେ-ଚ ଯମୁନେ ଚୈବ ଗୋଦାବରୀ ସରସ୍ୱତି,
ନର୍ମଦେ ସିନ୍ଧୁକାବେରି ଜଳେଽସ୍ମିନ୍ ସନ୍ନିଧିଂକୁରୁ ।।

କୁରୁକ୍ଷେତ୍ର ଗୟାଗଙ୍ଗା ପ୍ରଭାସପୁଷ୍କରାଣି ଚ ।
ଏତାନି ପୁଣ୍ୟତୀର୍ଥାନି ସଂକଳ୍ପକାଳେ ଭବନ୍ତିହ ।।

ପ୍ରଥମ ଶ୍ଳୋକଟିରେ ଭାରତବର୍ଷର ଅଞ୍ଚଳ ନିର୍ବିଶେଷରେ ପ୍ରବହମାନ ପୁଣ୍ୟତୋୟା ନଦୀଗୁଡ଼ିକର ସ୍ମରଣ କରାଯାଇଛି । ଦ୍ୱିତୀୟ

ଶ୍ଳୋକରେ ଆର୍ଯ୍ୟଭୂମି ସମଗ୍ର ଉତ୍ତର ଭାରତର ପବିତ୍ରତା ସ୍ମରଣ କରାଯାଇଛି । ତତ୍ ସଙ୍ଗେ ସଙ୍ଗେ ପଶ୍ଚିମରେ ଥିବା ପ୍ରଭାସ ତୀର୍ଥର ପବିତ୍ରତା ମନରେ ଉଦ୍‌ଭାସିତ ହେଉଛି । ସମଗ୍ର ଭାରତବର୍ଷ ଏକ ଓ ଏଦେଶର ସନ୍ତାନଗଣ ଏକତା ସୂତ୍ରରେ ଆବଦ୍ଧ । ଚିରକାଳରୁ ଏହା ବଜ୍ର ନିର୍ଘୋଷ ବାଣୀରେ ଆର୍ଯ୍ୟମାନେ ପ୍ରଚାରକରି ଆସିଛନ୍ତି । ଏହାର ଆଉ ଏକ ଉଦାହରଣ ଦେଖନ୍ତୁ–

ଅଯୋଧ୍ୟା ମଥୁରା ମାୟା କାଶୀ କାଞ୍ଚୀ ଅବନ୍ତିକା ।<br>
ପୁରୀ ଦ୍ୱାରାବତୀ ଚୈବ ସପ୍ତୈତା ମୋକ୍ଷଦାୟକାଃ ॥

ଶଂସିତ ଶ୍ଳୋକରେ ଅଯୋଧ୍ୟା, ମଥୁରା, ହରିଦ୍ୱାର, କାଶୀ ସାଙ୍ଗକୁ ଦକ୍ଷିଣରେ କାଞ୍ଚୀ, ମଧ୍ୟ ଭାଗରେ ଅବନ୍ତୀ ଓ ପଶ୍ଚିମ ଭାରତରେ ଦ୍ୱାରିକାକୁ ମୋକ୍ଷ ଦାୟିନୀରୂପେ ଗଣନା କରାଯାଇଛି । ଆକୁମାରୀ ହିମାଚଳ ଭାରତର ପ୍ରତ୍ୟେକ ସ୍ଥାନ ନିଜ ନିଜର ସ୍ୱାତନ୍ତ୍ର୍ୟରେ ସମୃଦ୍ଧ, ପ୍ରତ୍ୟେକର ପାବନ ସ୍ପର୍ଶ ଏଜାତିକୁ ମହିମାମୟ କରିଛି, ଏଥିରେ ସନ୍ଦେହ ନାହିଁ ।

ଏଜାତିର ପ୍ରାଣରେ ମହାଜାତୀୟତା ତଥା ଆଧ୍ୟାତ୍ମିକତାର ମହନୀୟ ସ୍ରୋତ ପ୍ରବାହିତ କରିବା ଉଦ୍ଦେଶ୍ୟରେ ଶଙ୍କରାଚାର୍ଯ୍ୟ ଚାରିଧାମରେ ଆଶ୍ରମ ପ୍ରତିଷ୍ଠା କରିଗଲେ–ଉତ୍ତରରେ ବଦ୍ରିନାରାୟଣ, ଦକ୍ଷିଣରେ ରାମେଶ୍ୱର, ପୂର୍ବରେ ପୁରୁଷୋତ୍ତମ କ୍ଷେତ୍ର ଓ ପଶ୍ଚିମରେ ଦ୍ୱାରିକା । କହିବା ବାହୁଲ୍ୟ ଯେ ଜାତୀୟ ସଂହତି ସୁଦୃଢ଼ହେବା ଲକ୍ଷ୍ୟରେ ଏପରି ତୀର୍ଥସ୍ଥାନମାନଙ୍କୁ ବଛା ଯାଇଥିଲା । ଯୁଗ ଯୁଗ ଧରି ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ଧର୍ମ ଅର୍ଜନ କରିବା ଉଦ୍ଦେଶ୍ୟରେ ତୀର୍ଥଯାତ୍ରୀମାନେ ଯାତ୍ରାକରି ଭାବର ଆଦାନ-ପ୍ରଦାନ କରିବାର ସୁଯୋଗ ପାଉଥିଲେ, ଧର୍ମ ମାଧ୍ୟମରେ ଜାତୀୟ ଏକତା ପ୍ରତିଷ୍ଠିତ ହେଉଥିଲା ।

ଆଧ୍ୟାତ୍ମିକତାର ଲୀଳାଭୂମି ଭାରତବର୍ଷ । ଧର୍ମଗତ, ଜାତିଗତ ଓ ଭାଷାଗତ ବହୁ ବିଭିନ୍ନତା ମଧ୍ୟରେ ଏକତାର ସୂତ୍ର ଏ ଜାତିକୁ ଆସ୍ୱରପୂତକରିଛି । ବାଲ୍ମୀକି, ବ୍ୟାସ, ତୁଳସୀଦାସ ଓ କବୀର ପ୍ରଭୃତି ପ୍ରାତଃ ସ୍ମରଣୀୟ କବିମାନେ ଭାରତୀୟମାନଙ୍କୁ ଯେପରି ଭକ୍ତିରସରେ ଆପ୍ଳୁତକରି ଯାଇଛନ୍ତି ତାହାର ତୁଳନାନାହିଁ । ଲୋକମାନଙ୍କ ହୃଦୟରେ ମହାଭାରତୀୟ ଚେତନା ସୃଷ୍ଟି କରିବାରେ ଏମାନଙ୍କର ଅବଦାନ ଅବିସ୍ମରଣୀୟ । ଆଦିକବି ବାଲ୍ମୀକି ରାମାୟଣ ମାଧ୍ୟମରେ ଓ ବ୍ୟାସ ମହାଭାରତ ତଥା ଶ୍ରୀମଦ୍‌ଭାଗବତ ପ୍ରଭୃତି ପୁରାଣ ମାଧ୍ୟମରେ ସରଳ ସଂସ୍କୃତରେ ଦିବ୍ୟଭାବନାର ସୁରତରଙ୍ଗିଣୀ ଛୁଟାଇ ଏ ଦେଶକୁ ଗୌରବାନ୍ୱିତ କରିଛନ୍ତି । ଶ୍ରୀମଦ୍‌ଭାଗବତରେ ବ୍ୟାସ ଜମ୍ବୁଦ୍ୱୀପ ଅନ୍ତର୍ଗତ ଭାରତବର୍ଷର ଯେପରି ମହିମାଗାନ କରିଛନ୍ତି ତାହାର ପଟାନ୍ତର ନାହିଁ–

ଅହୋ ଅମୀଷାଂ କିମକାରି ଶୋଭନଂ<br>
ପ୍ରସନ୍ନ ଏଷାଂ ସ୍ୱିଦୁତ ସ୍ୱୟଂ ହରିଃ ।<br>
ଯୈର୍ଜନ୍ମ ଲବ୍‌ଧଂ ନୃଷୁ ଭାରତାଜିରେ<br>
ମୁକୁନ୍ଦସେବୌପୟିକଂ ସ୍ପୃହ-ହି-ନଃ ॥୫।୧୯।୨୧

ଯେଉଁମାନେ ଭାରତବର୍ଷରେ ଏହି ଦେଶର ଲୋକମାନଙ୍କ ମଧ୍ୟରେ ଜନ୍ମ ଗ୍ରହଣ କରି କାଳ ଯାପନ କରିବାର ସୁଯୋଗ ଲାଭ କରିଛନ୍ତି, ସେମାନେ ଧନ୍ୟ । ସେମାନଙ୍କଠାରେ ସକଳ ଦୁଃଖହାରୀ ହରି ସ୍ୱୟଂ ପ୍ରସନ୍ନ । ସେହି ମୁକୁନ୍ଦଙ୍କ ପଦ ସେବାରେ ଜୀବନ ବିତାଇବା ହିଁ ଆମର ପରମ ଧ୍ୟେୟ ହେଉ ।

ଭଗବଦ୍ ଭକ୍ତି ମାଧ୍ୟମରେ ସ୍ୱଦେଶ ପ୍ରୀତି ଓ ଜାତୀୟ ଚେତନା ସୃଷ୍ଟି କରିବାରେ ଏହାଠାରୁ ବଳି ଆଉ କି ଉଦାହରଣ ଥାଇପାରେ ।

ପ୍ରଧ୍ୟାପକ, ସଂସ୍କୃତ ବିଭାଗ<br>
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର

ଭାରତରେ ନିଜର ଗୌରବୋଜ୍ଜ୍ୱଳ ସ୍ଥାନ ଅଧିକାର କରିବା–ଏହାହିଁ ଓଡ଼ିଶାର ଲକ୍ଷ୍ୟ, ଭବିଷ୍ୟ ଓ ଅଭିପ୍ରେତ । ଏଥିପାଇଁ ଓଡ଼ିଶାର ଇତିହାସ, ସଂସ୍କୃତି ଓ ପରମ୍ପରା ନୂତନ ଭାବରେ ଆଲୋଚିତ ହେବା ଆବଶ୍ୟକ । ଯେଉଁସବୁ ଗୁଣ ବା ବୈଶିଷ୍ଟ୍ୟ ଏ ଜାତିକୁ ଅତୀତରେ ମହାନ୍ କରିଥିଲା, ତାର ପୁନରୁଦ୍‌ବୋଧନ ଆବଶ୍ୟକ ।

ଜାନକୀ ବଲ୍ଲଭ ପଟ୍ଟନାୟକ

# ଭାରତର ସ୍ୱାଧୀନତା ସଂଗ୍ରାମ (୧)

ଅଧ୍ୟାପିକା ବନ୍ଦିତା ଦେବୀ

ପୃଥିବୀର ପ୍ରାଚୀନତମ ଦେଶମାନଙ୍କ ମଧ୍ୟରେ ଭାରତ ବର୍ଷ ହେଉଛି ଅନ୍ୟତମ । ଭାରତୀୟ ସଭ୍ୟତା ନିରବଚ୍ଛିନ୍ନ ଭାବରେ ଆବହମାନ କାଳରୁ ବିକାଶ ଲାଭ କରି ଆସିଛି । ବିତ୍ତବଶାଳୀ ଭାରତର ପ୍ରାକୃତିକ ପ୍ରାଚୁର୍ଯ୍ୟ ଓ ଧନରତ୍ନ ପ୍ରତି ଆକୃଷ୍ଟ ହୋଇ ପ୍ରାଚୀନ କାଳରୁ ଏ ଦେଶକୁ ବହିର୍ଜାତିମାନେ ପ୍ରବେଶ କରିଥିଲେ । ଆଧୁନିକ ଯୁଗରେ ଇଉରୋପ ମହାଦେଶର ଅଧିବାସୀମାନେ ଭାରତକୁ ବାଣିଜ୍ୟ ବ୍ୟବସାୟ ଉଦ୍ଦେଶ୍ୟରେ ଆସିଥିଲେ ଓ ପରିଶେଷରେ ସେମାନଙ୍କ ମଧ୍ୟରୁ ଇଂରେଜ ଜାତି ଏ ଦେଶରେ ବ୍ରିଟିଶ ସାମ୍ରାଜ୍ୟ ସ୍ଥାପନ କରି ଦୀର୍ଘ ୧୯୦ ବର୍ଷ ଶାସନ କରି ଥିଲେ । ଅଷ୍ଟାଦଶ ଶତାବ୍ଦୀ ଭାରତ ଇତିହାସରେ ଏକ ସନ୍ଧିକ୍ଷଣ । ଏକ ଦିଗରେ ପ୍ରତାପଶାଳୀ ମୋଗଲ ସାମ୍ରାଜ୍ୟର ପତନ; ଅପର ଦିଗରେ ନୂତନ ଶକ୍ତି ଓ ଦୃଷ୍ଟିକୋଣ ନେଇ ଉପସ୍ଥିତ ଇଉରୋପୀୟ ଶକ୍ତିମାନଙ୍କର ସାମ୍ରାଜ୍ୟ ସ୍ଥାପନର ପରିକଳ୍ପନା— ଏହି ପରିସ୍ଥିତି ମଧ୍ୟରେ ଭାରତର ମଧ୍ୟ ଯୁଗର ଅବସାନ ଓ ଆଧୁନିକ ଯୁଗର ଅରୁଣୋଦୟ ଇତିହାସରେ ଏକ ଯୁଗାନ୍ତକାରୀ ଘଟଣା । ଆଓରେଙ୍ଗଜେବଙ୍କ ମୃତ୍ୟୁର ଠିକ୍ ୫୦ ବର୍ଷ ପରେ ୧୭୫୭ ଖ୍ରୀଷ୍ଟାବ୍ଦରେ କ୍ଲାଇବ୍ ପଲାସୀଯୁଦ୍ଧରେ ବିଜୟ ଲାଭ କରି ଭାରତରେ ଇଂରେଜ ସାମ୍ରାଜ୍ୟର ମୂଳଭିତ୍ତି ସ୍ଥାପନ କଲେ ।

## ଜାତୀୟ ଚେତନାର ଉନ୍ମେଷ

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ବହୁ କାରଣରୁ ଭାରତରେ ଜାତୀୟ ଚେତନାର ବିକାଶ ଘଟିଥିଲା । ଇଂରେଜମାନେ ଅଜାଣତରେ ଇଂରେଜ ଶାସନର ଅବସାନ ପାଇଁ ପଥ ସୁଗମ କରିଥିଲେ । ବ୍ରିଟିଶ୍ ଶାସନ କାଳରେ ସମଗ୍ର ଭାରତରେ ରାଜନୈତିକ ଐକ୍ୟ ପ୍ରତିଷ୍ଠିତ ହୋଇଥିଲା । ସବୁ ଭାରତୀୟ ଶକ୍ତି ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ବ୍ରିଟିଶ ଶକ୍ତିର ସାର୍ବଭୌମତ୍ୱ ସ୍ୱୀକାର କରିଥିଲେ ଏବଂ ତାହାଫଳରେ ସାରା ଭାରତରେ ଏକ ସାର୍ବଭୌମ ରାଜନୈତିକ କ୍ଷମତା ପ୍ରତିଷ୍ଠିତ ହୋଇଥିଲା । ଏହା ଭାରତୀୟମାନଙ୍କ ମନରେ ଏକ ନୂତନ ରାଜନୈତିକ ଚେତନା ସୃଷ୍ଟି କରି ଜାତୀୟତା ବିକାଶରେ ସହାୟକ ହୋଇଥିଲା । ରାଜନୈତିକ ଐକ୍ୟ ପ୍ରତିଷ୍ଠିତ ହେବା ଫଳରେ ଶାସନଗତ ଐକ୍ୟ ସମ୍ଭବପର ହେଲା । ରେଳଗାଡ଼ି ପ୍ରବର୍ତ୍ତନ, ନୂତନ ଡାକ ଓ ତାର ବ୍ୟବସ୍ଥା ପ୍ରଭୃତି ଯୋଗୁଁ ଦ୍ରୁତ ଯୋଗାଯୋଗ ହୋଇ ପାରିଲା ଏବଂ ଭାରତୀୟମାନଙ୍କ ମନରେ ଏକତା ଦୃଢ଼ୀଭୂତ ହେବାକୁ ଲାଗିଲା । ଏତଦ୍‌ବ୍ୟତୀତ ଇଂରାଜୀ ଶିକ୍ଷାର ପ୍ରସାର ଫଳରେ ଭାରତୀୟ ଯୁବ ସଂପ୍ରଦାୟ ମନରେ ବିଦେଶୀ ଶାସନ ପ୍ରତି ତିକ୍ତ ମନୋଭାବ ସୃଷ୍ଟି ହେଲା ଓ ସେମାନଙ୍କୁ ଜାତୀୟ ଚେତନାରେ ଅନୁପ୍ରାଣିତ କରିଥିଲା । ଭାରତୀୟ ସାହିତ୍ୟ ଓ ସମ୍ବାଦ ପତ୍ର ମଧ୍ୟ ଏଥିପାଇଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଇଂରେଜମାନଙ୍କର ଅର୍ଥନୈତିକ ଶୋଷଣ ନୀତି ବିଶ୍ଳେଷଣ କରି ବିଦେଶୀ ସାମ୍ରାଜ୍ୟବାଦ ଦ୍ୱାରା ଭାରତରେ ଯେଉଁ ପ୍ରଭୂତ ଆର୍ଥିକ କ୍ଷତି ଓ ବିପର୍ଯ୍ୟୟ ଘଟିଛି, ତାହା ଦେଶର ଚିନ୍ତାଶୀଳ ଓ ବୁଦ୍ଧିମାନ ବ୍ୟକ୍ତିମାନେ ହୃଦୟଙ୍ଗମ କରି ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ବଦ୍ଧପରିକର ହେଲେ । ସରକାରଙ୍କ ନିକଟରେ ଭାରତୀୟମାନଙ୍କ ଦାବୀ ଉପସ୍ଥାପିତ କରିବା ପାଇଁ ଏହି ସମୟରେ କେତେଗୁଡ଼ିଏ ଅନୁଷ୍ଠାନ କଲିକତା, ମାଡ୍ରାଜ ଓ ପୁନା ଇତ୍ୟାଦି ସ୍ଥାନରେ ପ୍ରତିଷ୍ଠିତ ହୋଇଥିଲା । ଅବଶେଷରେ ୧୮୮୫ ଖ୍ରୀଷ୍ଟାବ୍ଦରେ ଭାରତୀୟ ଜାତୀୟ କଂଗ୍ରେସ ଆତ୍ମ ପ୍ରକାଶ କଲା । ଆଲନ ଓକ୍ଟାଭିଆନ ହିଉମ୍ ନାମକ ଜଣେ ଅବସର ପ୍ରାପ୍ତ ଇଂରେଜ କର୍ମଚାରୀ ହେଉଛନ୍ତି ଭାରତୀୟ ଜାତୀୟ କଂଗ୍ରେସର ସ୍ରଷ୍ଟା । ଭାରତୀୟମାନଙ୍କ ପ୍ରତି ତାହାଙ୍କର ଗଭୀର ମମତା ଥିଲା । ଇଂରେଜ ଶାସନ ବିରୁଦ୍ଧରେ ସଂଘବଦ୍ଧ ଅନୁଷ୍ଠାନ ମାଧ୍ୟମରେ ଦୁଃଖ ଦୁର୍ଦ୍ଦଶା ବିଷୟ ସରକାରଙ୍କ ନିକଟରେ ଉପସ୍ଥାପିତ କରିବାପାଇଁ ସେ ଜାତୀୟ କଂଗ୍ରେସ ସୃଷ୍ଟି କରିଥିଲେ । କ୍ରମେ ଏହି ଅନୁଷ୍ଠାନ ଭାରତରେ ଜାତୀୟ ଆନ୍ଦୋଳନ ଓ ସ୍ୱାଧୀନତା ସଂଗ୍ରାମର କେନ୍ଦ୍ର ବିନ୍ଦୁ ରୂପେ କାର୍ଯ୍ୟ କଲା । ଭାରତୀୟ ଜାତୀୟ ଆନ୍ଦୋଳନକୁ ସାଧାରଣତଃ ଦୁଇଟି ମୁଖ୍ୟ ପର୍ଯ୍ୟାୟରେ ବିଭକ୍ତ କରାଯାଇଛି । ପ୍ରଥମ ପର୍ଯ୍ୟାୟ ୧୮୮୫ ଖ୍ରୀଷ୍ଟାବ୍ଦରୁ ୧୯୧୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓ ଦ୍ୱିତୀୟ ପର୍ଯ୍ୟାୟ ୧୯୧୯ରୁ ୧୯୪୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ । ଏହିପରି ଦୀର୍ଘ ୬୨ ବର୍ଷ ଆନ୍ଦୋଳନ କରି ଭାରତୀୟମାନେ ସେମାନଙ୍କର ଈପ୍ସିତ ସ୍ୱାଧୀନତା ଲାଭ କରିବାରେ ସଫଳ ହୋଇଥିଲେ ।

ଜାତୀୟ ଆନ୍ଦୋଳନର ପ୍ରଥମ କୋଡ଼ିଏ ବର୍ଷ ଯାଏ ଜାତୀୟ କଂଗ୍ରେସର ନେତୃବୃନ୍ଦ ଉଦାର ଓ ନରମପନ୍ଥା ଗ୍ରହଣ କରିଥିଲେ ।

ଆବେଦନ ଓ ନିବେଦନ ଦ୍ୱାରା ବୈଧାନିକ ଉପାୟରେ ଇଂରେଜ ସରକାରଙ୍କଠାରୁ ସୁବିଧା ଓ ସହାନୁଭୂତି ହାସଲ କରିବା ପାଇଁ କଂଗ୍ରେସ ନେତୃବୃନ୍ଦଙ୍କ ଉଦ୍ୟମ ଅବ୍ୟାହତ ରହିଥିଲା । କଂଗ୍ରେସ ନେତାମାନେ ସ୍ୱଦେଶ ପ୍ରେମ ଓ ଉଚ୍ଚ ଆଦର୍ଶ ବଳରେ ଭାରତୀୟମାନଙ୍କ ହୃଦୟରେ ଗଭୀର ଜାତୀୟ ପ୍ରୀତି ଉଦ୍ରେକ କରିବାରେ ସଫଳ ହୋଇଥିଲେ । ଏତଦ୍‌ବ୍ୟତୀତ ଜାତୀୟ ସମସ୍ୟାଗୁଡ଼ିକର ଆଲୋଚନା ଦ୍ୱାରା ସାରା ଦେଶରେ ଦୃଢ଼ ଜନମତ ସୃଷ୍ଟି ହେବାକୁ ଲାଗିଲା । କଂଗ୍ରେସର ସଭ୍ୟମାନେ ଭାରତର ଶାସନଗତ ସମସ୍ୟା ସମ୍ବନ୍ଧରେ ବିଶେଷ ଆଲୋଚନା କରୁଥିଲେ । ଭାରତୀୟ ବିଧାନ ପରିଷଦଗୁଡ଼ିକର ସଭ୍ୟ ସଂଖ୍ୟା ଓ ସେଗୁଡ଼ିକର କ୍ଷମତା ପରିସର ବୃଦ୍ଧି କରିବା ପାଇଁ ଦାବୀ ହେଉଥିଲା । ସେମାନେ ଭାରତୀୟମାନଙ୍କର ଦୁର୍ଦ୍ଦଶା ମୋଚନ ପାଇଁ ସରକାରଙ୍କ କରଧାର୍ଯ୍ୟ ନୀତିର ସମାଲୋଚନା ମଧ୍ୟ କରୁଥିଲେ । କୃଷି ଓ ଶିଳ୍ପର ବିକାଶ, ଶିକ୍ଷା ପ୍ରସାର ପୋଲିସ୍ ଓ ବିଚାର ବିଭାଗୀୟ ସଂସ୍କାର ପ୍ରଭୃତି ସମସ୍ତ ଜାତୀୟ ସମସ୍ୟା ଉପରେ କଂଗ୍ରେସ ତାହାର ଦୃଢ଼ମତାମତ ଜଣାଇବାକୁ ପଶ୍ଚାତ୍‌ପଦ ହେଉନଥିଲା । କଂଗ୍ରେସର ଉଦ୍ୟମ ଫଳରେ ୧୮୯୨ ଖ୍ରୀଷ୍ଟାବ୍ଦରେ ଭାରତୀୟ ପରିଷଦ ଆଇନ ପ୍ରଣୟନ କରାଯାଇ କେନ୍ଦ୍ର ଓ ପ୍ରାଦେଶିକ ବ୍ୟବସ୍ଥା ପରିଷଦମାନଙ୍କରେ ଭାରତୀୟ ପ୍ରତିନିଧିଙ୍କ ସଂଖ୍ୟା ବୃଦ୍ଧି କରାଯାଇଥିଲା ଏବଂ ସେମାନଙ୍କୁ ବଜେଟ୍ ପ୍ରଭୃତି ଆଲୋଚନା କରିବାର ସୁଯୋଗ ଦିଆଗଲା ।

## ଗଣ ଜାଗରଣ

କାଳକ୍ରମେ ଇଂରେଜ ଶାସକମାନେ ହୃଦୟଙ୍ଗମ କଲେ ଯେ, କଂଗ୍ରେସ ପ୍ରକୃତରେ ଏକ ଜାତୀୟ ଅନୁଷ୍ଠାନରେ ପରିଣତ ହୋଇ ଜାତୀୟ ଆନ୍ଦୋଳନର ନେତୃତ୍ୱ ଗ୍ରହଣ କରିବ । ତେଣୁ ସେମାନେ ଏହାକୁ ସନ୍ଦେହ ଚକ୍ଷୁରେ ଦେଖିବାକୁ ଆରମ୍ଭ କଲେ । କଂଗ୍ରେସର ଦାବୀ ପ୍ରତି ସେମାନେ ବିଶେଷ ସହାନୁଭୂତି ଦେଖାଇଲେ ନାହିଁ କିମ୍ବା ଆପତ୍ତି ଅଭିଯୋଗଗୁଡ଼ିକର ଯଥାଯଥ ପ୍ରତିକାର କରିବା ନିମନ୍ତେ ଚେଷ୍ଟା କଲେ ନାହିଁ । ଏହାଦ୍ୱାରା ଭାରତରେ କ୍ରମେ ଏକ ନୂତନ ବିପ୍ଳବୀ ଗୋଷ୍ଠୀ ସୃଷ୍ଟି ହୋଇ ଇଂରେଜମାନଙ୍କ ବିରୁଦ୍ଧରେ ଚରମପନ୍ଥା ଗ୍ରହଣ କରିବାକୁ ବାଧ୍ୟ ହେଲେ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଭାରତୀୟ ରାଜନୀତି କ୍ଷେତ୍ରରେ ଚରମପନ୍ଥୀମାନଙ୍କର ଆବିର୍ଭାବ ଘଟିଥିଲା । ପ୍ରାୟ ଦୀର୍ଘ ୨୦ ବର୍ଷକାଳ ଉଦାରପନ୍ଥୀ ରାଜନୀତିଜ୍ଞମାନେ କଂଗ୍ରେସ ଅନୁଷ୍ଠାନ ଜରିଆରେ ବିଶେଷ କିଛି ସୁଯୋଗ ହାସଲ କରି ପାରି ନ ଥିଲେ । ଏହା ଜାଗ୍ରତ ଯୁବଗୋଷ୍ଠୀ ମନରେ ନିରାଶା ସୃଷ୍ଟି କରିଥିଲା । ସେମାନେ ଆଇନଗତ ବା ବୈଧାନିକ ଦାବୀ ଦ୍ୱାରା ଇଂରେଜ ଶାସକମାନଙ୍କଠାରୁ କୌଣସି ରାଜନୈତିକ ସୁବିଧା ଲାଭର ସମ୍ଭାବନା ପରିତ୍ୟାଗ କଲେ । ଚରମପନ୍ଥା ଗ୍ରହଣ କରି ବଳପୂର୍ବକ ସକ୍ରିୟ ଆନ୍ଦୋଳନ ଦ୍ୱାରା ଭାରତର ସ୍ୱାଧୀନତା ହାସଲ କରିବାରେ ବ୍ରତୀ ହେଲେ । ଏମାନଙ୍କ ମଧ୍ୟରେ ବାଳଗଙ୍ଗାଧର ତିଳକ, ବିପିନ ଚନ୍ଦ୍ର ପାଲ୍, ଲାଲା ଲଜପତ୍ ରାୟ ଏବଂ ଅରବିନ୍ଦ ଘୋଷ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ଉଦାର ପନ୍ଥୀ ନେତାମାନେ ଥିଲେ ସୁରେନ୍ଦ୍ରନାଥ ବାନାର୍ଜି, ଗୋପାଳକୃଷ୍ଣ ଗୋଖଲେ ଓ ଫିରୋଜ ସାହା ମେହେଟା ଇତ୍ୟାଦି । ଊନବିଂଶ ଶତାବ୍ଦୀର ଶେଷ ପାଦରେ ଭାରତରେ ଦୁର୍ଭିକ୍ଷ ଓ ପ୍ଲେଗ କବଳରେ ପଡ଼ି ଲକ୍ଷ ଲକ୍ଷ ଲୋକ ଅଶେଷ ଯନ୍ତ୍ରଣା ଭୋଗ କରିଥିଲେ ଓ ବହୁ ସଂଖ୍ୟାରେ ମୃତ୍ୟୁମୁଖରେ ପଡ଼ିଥିଲେ । ସେହି ଘୋର ଦୁର୍ଦ୍ଦିନରେ ଇଂରେଜ ଶାସକମାନଙ୍କର ଉଦାସୀନତା ଓ ଅବହେଳା ଯୋଗୁ ଭାରତୀୟ ଯୁବନେତାମାନଙ୍କ ମନରେ ତୀବ୍ର ଅସନ୍ତୋଷ ପ୍ରକାଶ ପାଇଲା । ସେମାନେ ଚରମପନ୍ଥା ଗ୍ରହଣ କରି ସକ୍ରିୟ ଆନ୍ଦୋଳନ ଦ୍ୱାରା ଭାରତର ସ୍ୱାଧୀନତା ହାସଲ କରିବାରେ ବ୍ରତୀ ହେଲେ । ସେସମୟର ବଡ଼ଲାଟ ଲର୍ଡ କର୍ଜନ କଂଗ୍ରେସର ଭୂମିକାକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନଥିଲେ । ୧୯୦୪ ଖ୍ରୀଷ୍ଟାବ୍ଦରେ କଂଗ୍ରେସର ଏକ ପ୍ରତିନିଧି ଦଳକୁ ସାକ୍ଷାତ କରିବାକୁ ମନା କରିଦେଲେ । ତେଣୁ ୧୯୦୫ ଖ୍ରୀଷ୍ଟାବ୍ଦରେ କଂଗ୍ରେସ ବିଲାତକୁ ଏକ ପ୍ରତିନିଧିଦଳ ପ୍ରେରଣ କରିଥିଲେ । ସେହି ପ୍ରତିନିଧି ଦଳରେ ଥିଲେ ଗୋପାଳକୃଷ୍ଣ ଗୋଖଲେ ଓ ଲାଲାଲଜପତ ରାୟ । ବିଲାତରେ ମଧ୍ୟ ସେମାନଙ୍କ ମତ ଓ ଦାବୀ ପ୍ରତି ବିଶେଷ ସହାନୁଭୂତି ପ୍ରକାଶ ପାଇଲା ନାହିଁ କିମ୍ବା ଇଂରେଜସରକାର ସେଥିପ୍ରତି ଗୁରୁତ୍ୱ ଦେଲେ ନାହିଁ । ସେହି ବର୍ଷ ବାରଣାସୀଠାରେ ଅନୁଷ୍ଠିତ କଂଗ୍ରେସର ବାର୍ଷିକ ଅଧିବେଶନରେ ଭାରତୀୟମାନଙ୍କୁ ଚେତାବନୀ ଶୁଣାଇ ଲାଲାଲଜପତ୍ ରାୟ କହିଥିଲେ ଯେ, ସେମାନେ ନିଜ ଶକ୍ତିରେ ଦଣ୍ଡାୟମାନ ହୋଇ କର୍ତ୍ତବ୍ୟ ପଥରେ ଅଗ୍ରସର ହୁଅନ୍ତୁ । ତାଙ୍କର ଆହ୍ୱାନ କଂଗ୍ରେସ ସଭ୍ୟ ତଥା ଭାରତୀୟମାନଙ୍କ ମନରେ ନୂତନ ପ୍ରେରଣା ସୃଷ୍ଟି କଲା ।

ଏତିକିବେଳେ ଲର୍ଡ କର୍ଜନ ଙ୍କ ବଙ୍ଗଭଙ୍ଗ ବ୍ୟବସ୍ଥା କାର୍ଯ୍ୟକାରୀ ହେଉଥିଲା । ୧୯୦୩ ଖ୍ରୀଷ୍ଟାବ୍ଦର ଶେଷ ବେଳକୁ ବଙ୍ଗଭଙ୍ଗ ସିଦ୍ଧାନ୍ତ ସୂଚନା ମିଳିଥିଲା । ୧୯୦୫ ଖ୍ରୀଷ୍ଟାବ୍ଦରେ ତାହା ପ୍ରକାଶ ପାଇଲା । ସେହି ବର୍ଷ ଅକ୍ଟୋବର ମାସ ୧୬ ତାରିଖରୁ ତାହା କାର୍ଯ୍ୟକାରୀ କରାଗଲା । ବଙ୍ଗଳା ସେ ସମୟରେ ଥିଲା ଭାରତର ବ୍ରିଟିଶ ଶାସନାଧୀନ ପ୍ରଦେଶ ଭିତରେ ସବୁଠାରୁ ବୃହତମ ପ୍ରଦେଶ । କର୍ଜନ ଏହାକୁ ଦୁଇଭାଗ କରିଦେଲେ । ବଙ୍ଗଳାର ପୂର୍ବଭାଗକୁ ଆସାମ ସହିତ ମିଶାଇ 'ପୂର୍ବବଙ୍ଗ ଓ ଆସାମ' ନାମରେ ଗୋଟିଏ ନୂଆ ପ୍ରଦେଶ ସୃଷ୍ଟି କରାଗଲା । ପଶ୍ଚିମବଙ୍ଗ, ବିହାର ଓ ଓଡ଼ିଶାକୁ ନେଇ ଅନ୍ୟ ଏକ ପ୍ରଦେଶ ଗଠିତ ହେଲା । କର୍ଜନ ଶାସନଗତ ଦୃଷ୍ଟିରୁ ବଙ୍ଗଳା ପ୍ରଦେଶକୁ ଦୁଇଭାଗରେ ବିଭକ୍ତ କରିଥିଲେ ବୋଲି ଯୁକ୍ତି କରୁଥିଲେ । ମାତ୍ର ବଙ୍ଗ ଅଧିବାସୀମାନଙ୍କ ମଧ୍ୟରେ ପ୍ରକଟିତ ବଳିଷ୍ଠ ଜାତୀୟ ଚେତନା ଓ ଏକତା ନଷ୍ଟ କରିବାହିଁ ତାହାଙ୍କ ଉଦ୍ଦେଶ୍ୟ ବୋଲି ବଙ୍ଗ ଅଧିବାସୀମାନେ ମନେକଲେ । ଏହି ବଙ୍ଗ ବିଭାଗ ନୀତି କାର୍ଯ୍ୟକାରୀ ହେବା ଫଳରେ ସାରା ବଙ୍ଗଦେଶରେ ଘୋର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା । କ୍ରମେ ତାହା ଭାରତର ଅନ୍ୟାନ୍ୟ ଅଞ୍ଚଳକୁ ମଧ୍ୟ ବ୍ୟାପିଯାଇଥିଲା । ଏହା ସ୍ୱଦେଶୀ ଆନ୍ଦୋଳନ ନାମରେ ଖ୍ୟାତ ।

## ସ୍ୱଦେଶୀ ଆନ୍ଦୋଳନ

ଯେଉଁ ଦିନ ବଙ୍ଗଭଙ୍ଗ ଆଇନ କାର୍ଯ୍ୟକାରୀ କରାଗଲା ସେଦିନଟି ବଙ୍ଗଳାରେ ଏକ ଜାତୀୟ ଶୋକ ଦିବସରୂପେ ପାଳିତ ହୋଇଥିଲା । ଲୋକେ ଉପବାସ ରହିଥିଲେ ଶୋଭାଯାତ୍ରା ଓ ସଂକୀର୍ତ୍ତନ ଦଳମାନ ରାସ୍ତାରେ ବୁଲି 'ବନ୍ଦେ ମାତରମ୍' ଧ୍ୱନିରେ ଚତୁର୍ଦ୍ଦିଗ ପ୍ରକମ୍ପିତ କରିଥିଲେ । ଶେଷ ପର୍ଯ୍ୟନ୍ତ ସଂଗ୍ରାମ କରି ବିଜୟ ହାସଲ କରିବା ନିମନ୍ତେ ଏବଂ ନିଜ ନିଜ ଭିତରେ

ଐକ୍ୟ ବଜାୟ ରଖିବା ପାଇଁ ସେମାନେ ପରସ୍ପର ହାତରେ ରାକ୍ଷୀ ବାନ୍ଧିଥିଲେ । ବଙ୍ଗଭଙ୍ଗ ଆନ୍ଦୋଳନ ପରିଚାଳନା କରିଥିଲେ ସୁରେନ୍ଦ୍ରନାଥ ବାନାର୍ଜି, ବିପିନଚନ୍ଦ୍ର ପାଲ୍, ଅରବିନ୍ଦ ଘୋଷ, ଅଶ୍ୱିନୀ କୁମାର ଦତ୍ତ ପ୍ରମୁଖ ବିଶିଷ୍ଟ ନେତୃବୃନ୍ଦ । ଏହି ମହାନ ଆଦର୍ଶ ଓ ସ୍ୱଦେଶ ପ୍ରେମରେ ଉଦ୍‌ବୁଦ୍ଧ ହୋଇ ଜନସାଧାରଣ ବିଦେଶୀ ଜିନିଷ ବର୍ଜନ ଓ ସ୍ୱଦେଶୀ ଜିନିଷର ବ୍ୟବହାର କରିବାକୁ ସିଦ୍ଧାନ୍ତ ଗ୍ରହଣ କଲେ । ବହୁଲୋକ ବିଦେଶୀ ଲୁଗା ପ୍ରଭୃତି ସ୍ୱଇଚ୍ଛାରେ ପୋଡ଼ି ଦେଇଥିଲେ ଏବଂ ବିଦେଶୀ ଲୁଗା ପ୍ରଭୃତି ଜିନିଷ ବିକ୍ରି ହେଉଥିବା ଦୋକାନଗୁଡ଼ିକ ଆଗରେ ପିକେଟିଂ ଆରମ୍ଭ କଲେ । ବିଦେଶୀ ଜିନିଷ ବର୍ଜନ ସଙ୍ଗେ ସଙ୍ଗେ ସ୍ୱଦେଶୀ ଜିନିଷର ଆଦର ଯଥେଷ୍ଟ ବୃଦ୍ଧି ପାଇଲା । ସରକାରୀ ସ୍କୁଲ କଲେଜ ପରିତ୍ୟାଗ କରି ଯେଉଁ ଛାତ୍ରମାନେ ସ୍ୱଦେଶୀ ଆନ୍ଦୋଳନରେ ଯୋଗ ଦେଇଥିଲେ, ସେମାନଙ୍କ ପଢ଼ାପଢ଼ି ପାଇଁ ବଙ୍ଗଳାର ଏକ ଜାତୀୟ ଶିକ୍ଷା ପରିଷଦ ଗଢ଼ାହୋଇ ତାହାରି ଆନୁକୂଲ୍ୟରେ ଏକ ଜାତୀୟ କଲେଜ ମଧ୍ୟ ୧୯୦୬ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ ହୋଇଥିଲା । ଏହିପରି ଭାବରେ ବଙ୍ଗଦେଶରେ ଏକ ଅଭୂତପୂର୍ବ ଜାଗରଣ ଦେଖାଦେଇ ଥିଲା । ଅରବିନ୍ଦ ଘୋଷଙ୍କର 'ବନ୍ଦେ ମାତରମ୍' ପତ୍ରିକା, ବିପିନଚନ୍ଦ୍ର ପାଲଙ୍କର 'ନବଭାରତ' ମାଧ୍ୟମରେ ବଙ୍ଗଳାର ଜନମତକୁ ଜାଗ୍ରତ କରିବାପାଇଁ ନୂତନ ଚିନ୍ତାଧାରା ପ୍ରଚାର କରିଥିଲା ।

ବଙ୍ଗଭଙ୍ଗକୁ କେନ୍ଦ୍ରକରି ସ୍ୱଦେଶୀ ଆନ୍ଦୋଳନ ତଥା ଭାରତୀୟ ରାଜନୀତି କ୍ଷେତ୍ରରେ ଚରମପନ୍ଥୀମାନଙ୍କର ଆବିର୍ଭାବ ଇଂରେଜ ସରକାରଙ୍କୁ ଅତିଷ୍ଠ କରିଦେଇଥିଲା । ଚରମପନ୍ଥୀ ନେତା ବାଳଗଙ୍ଗାଧର ତିଳକ ସ୍ୱଦେଶ ପ୍ରୀତି ଉଦ୍ଦେଶ୍ୟପାଇଁ ଆହ୍ୱାନ ଦେଇ କହିଥିଲେ "ସ୍ୱରାଜ୍ୟ ମୋର ଜନ୍ମଗତ ଅଧିକାର ଓ ମୁଁ ତାହା ହାସଲ କରିବି" । ତିଳକଙ୍କ ସହିତ ଯୋଗ ଦେଇଥିଲେ ଲାଲାଲଜପତ୍ ରାୟ ଓ ବିପିନଚନ୍ଦ୍ର ପାଲ୍ । ସେହି ଚରମପନ୍ଥୀ ନେତାମାନେ ଲାଲ୍-ବାଲ୍-ପାଲ୍ ନାମରେ ସ୍ୱାଧୀନତା ସଂଗ୍ରାମରେ ଏକ ନୂତନ ଚେତନାର ଅଗ୍ରଦୂତ ଥିଲେ ।

ଜାତୀୟ କଂଗ୍ରେସର ଚରମପନ୍ଥୀ ଓ ଉଦାରପନ୍ଥୀ ନେତୃବୃନ୍ଦ ସ୍ୱଦେଶୀ ଓ ବୟକଟ୍ ନୀତିକୁ ସମର୍ଥନ କଲେ ଓ ବଙ୍ଗଭଙ୍ଗ ଆନ୍ଦୋଳନକୁ ପ୍ରତ୍ୟକ୍ଷ ଭାବରେ ସମର୍ଥନ କରାଗଲା । ବୈଧାନିକ ଉପାୟରେ ଶାସନ ସଂସ୍କାର ନୀତିକୁ ପରିତ୍ୟାଗକରି ପ୍ରବଳ ରାଜନୈତିକ ଆନ୍ଦୋଳନ ଦ୍ୱାରା ଭାରତରୁ ଇଂରେଜ ରାଜତ୍ୱର ଅବସାନ କରାଇବା ସ୍ୱରାଜ ଲାଭର ଏକ ମାତ୍ର ପନ୍ଥା ବୋଲି ଚରମପନ୍ଥୀମାନେ ବିଶ୍ୱାସ କରୁଥିଲେ । ମାତ୍ର ଉଦାର ପନ୍ଥୀ ଗୋଷ୍ଠୀ ବୈଧାନିକ ଆନ୍ଦୋଳନ ପରିତ୍ୟାଗ କରିବାକୁ ଇଚ୍ଛୁକ ନଥିଲେ ଏବଂ କଂଗ୍ରେସ କେବଳ ବଙ୍ଗଳା ବ୍ୟତୀତ ଅନ୍ୟ କୌଣସି ସ୍ଥାନରେ ବୟକଟ୍ ନୀତି ପ୍ରୟୋଗ କରିବା ପାଇଁ ସମର୍ଥନ କରୁନଥିଲେ । ଅବଶେଷରେ ୧୯୦୭ ଖ୍ରୀଷ୍ଟାବ୍ଦରେ ସୁରାଟଠାରେ ଅନୁଷ୍ଠିତ ବାର୍ଷିକ ଅଧିବେଶନରେ କଂଗ୍ରେସ ଦୁଇ ଭାଗରେ ବିଭକ୍ତ ହେଲା । ଏକ ନୂତନ ସମ୍ବିଧାନ ଗଢ଼ାଯାଇ ଚରମପନ୍ଥୀମାନଙ୍କୁ ଦଳରୁ ବହିଷ୍କାର କରିଦିଆଗଲା । ମାତ୍ର ଯେଉଁ ନୂତନ ଶକ୍ତି ଭାରତୀୟ ରାଜନୀତିରେ ଆବିର୍ଭାବ ଘଟିଥିଲା ତାହାର ବିଲୋପ ସାଧନ ଆଉ ସମ୍ଭବ ହେଲା ନାହିଁ ।

## ଦେଶାନ୍ତର ଦଣ୍ଡ

ଏହି ପ୍ରବଳ ଗଣ ଆନ୍ଦୋଳନକୁ ଦମନ କରିବା ପାଇଁ ସରକାର ସମସ୍ତ ପ୍ରକାର ବ୍ୟବସ୍ଥା ଗ୍ରହଣ କରିଥିଲେ । ଆନ୍ଦୋଳନକାରୀମାନଙ୍କୁ କଠିନ ଶାସ୍ତି ଓ ଜେଲଦଣ୍ଡ ଦେଇ ଘୋର ଭୟର ବାତାବରଣ ସୃଷ୍ଟି କରାଯାଇ ଥିଲା । ଭାରତର ପ୍ରସିଦ୍ଧ ଚରମପନ୍ଥୀ ନେତା 'ଲାଲ-ବାଲ-ପାଲ' ଙ୍କୁ ଦେଶାନ୍ତର ଦଣ୍ଡ ଭୋଗିବାକୁ ପଡ଼ିଥିଲା । ସମ୍ବାଦପତ୍ରଗୁଡ଼ିକ ଉପରେ ଅତି କଠୋର କଟକଣାଜାରି କରାଯାଇଥିଲା । ଛାତ୍ରମାନଙ୍କୁ ଆନ୍ଦୋଳନରେ ଯୋଗଦେବା ବନ୍ଦ ନ କଲେ ସ୍କୁଲ କଲେଜର ମଞ୍ଜୁରୀ, ଗ୍ରାଣ୍ଟ ପ୍ରଭୃତି ବନ୍ଦ କରିବାର ଧମକ ଦିଆଗଲା । ବହୁ ଶିକ୍ଷକଙ୍କୁ ଚାକିରିରୁ ବରଖାସ୍ତ କରାଗଲା । ସର୍ବୋପରି ଆନ୍ଦୋଳନରେ ଯୋଗ ଦେଇଥିବା ଜନସାଧାରଣ ଓ ନେତୃବୃନ୍ଦ ଅକଥନୀୟ ଅତ୍ୟାଚାର ଭୋଗିଲେ । କେବଳ 'ବନ୍ଦେ ମାତରମ୍' ଧ୍ୱନି ଦେଲେହିଁ ଏହା ଆଇନ ବିରୁଦ୍ଧ କାର୍ଯ୍ୟ ବୋଲି ଧରାଯାଉ ଥିଲା । ବହୁ ସଭାସମିତି ଭଙ୍ଗକରି ଏବଂ ଆନ୍ଦୋଳନକାରୀ ମାନଙ୍କୁ କଠିନ ଶାସ୍ତି ଓ ଜେଲଦଣ୍ଡ ଦେଇ ଆନ୍ଦୋଳନକୁ ଦମନ କରାଗଲା ।

ଭାରତର ଜାତୀୟ ଜାଗରଣକୁ ଦମନ କରିବା ପାଇଁ ବ୍ରିଟିଶ ସରକାର ଏହି ସମୟରେ ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟ ମଧ୍ୟରେ ସାମ୍ପ୍ରଦାୟିକତାର ବୀଜ ରୋପଣକରି ଗଣ ଆନ୍ଦୋଳନକୁ ବିଭ୍ରାନ୍ତ କରିବା ପାଇଁ ଚେଷ୍ଟା କରିଥିଲେ । ସୟଦ ଅହମ୍ମଦ ଖାଁ ଥିଲେ ମୁସଲମାନମାନଙ୍କର ଜଣେ ବିଶିଷ୍ଟ ନେତା । ସେ ପ୍ରଥମେ ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟ ମଧ୍ୟରେ ଏକତା ରକ୍ଷା କରି ଜାତୀୟ ଆନ୍ଦୋଳନ ଚଳାଇବାକୁ ଇଚ୍ଛା କରୁଥିଲେ । ମାତ୍ର କ୍ରମେ ସେ ତାଙ୍କର ମତ ପରିବର୍ତ୍ତନ କରିଥିଲେ । ଇଂରେଜ ଶାସକ-ଗୋଷ୍ଠୀ ତାଙ୍କ ମନରେ ଘୋର ସମ୍ପ୍ରଦାୟିକ ମନୋଭାବ ସୃଷ୍ଟି କରିବାରେ ସକ୍ଷମ ହୋଇଥିଲେ । ତାହା ଫଳରେ ଆଲିଗଡ଼ ଠାରେ ମୁସଲମାନଙ୍କ ମଧ୍ୟରେ ଏକ ଅନୁଷ୍ଠାନ ଗଢ଼ାହେଲା ଏବଂ ଶେଷରେ ୧୯୦୬ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସ ଶେଷରେ ଢାକା ଠାରେ ନିଖିଳ ଭାରତୀୟ ମୁସଲିମ ଲିଗ୍ ପ୍ରତିଷ୍ଠା କରାଗଲା । ଏହି ମୁସଲିମ ଲିଗ୍ ପ୍ରଥମରୁ ସାମ୍ପ୍ରଦାୟିକ ମନୋଭାବ ଗ୍ରହଣ କରି ଭାରତର ରାଜନୀତିରେ ଏକ ଗୁରୁତର ପରିସ୍ଥିତି ସୃଷ୍ଟି କରିଥିଲା । ୧୯୦୯ ଖ୍ରୀଷ୍ଟାବ୍ଦରେ ମର୍ଲେମିଣ୍ଟୋ ଶାସନ ସଂସ୍କାର ପ୍ରବର୍ତ୍ତନ କରାଯାଇ ଉଦାର ପନ୍ଥୀ ମାନଙ୍କୁ ସନ୍ତୁଷ୍ଟ କରାଗଲା । ଅବଶେଷରେ ୧୯୧୧ ଖ୍ରୀଷ୍ଟାବ୍ଦରେ ସରକାର ବଙ୍ଗ ବିଭାଜନକୁ ରଦ୍ଦ କରି ଦେଇଥିଲେ । ତହିଁ ପରବର୍ଷ ଭାରତର ରାଜଧାନୀ କଲିକତାରୁ ଦିଲ୍ଲୀକୁ ସ୍ଥାନାନ୍ତରିତ କରାଗଲା ଏବଂ ଏହାଫଳରେ ଜାତୀୟ ଆନ୍ଦୋଳନ କିଛିଦିନ ପାଇଁ ମାନ୍ଦା ପଡ଼ିଯାଇଥିଲା । ଦୁଇ ବଙ୍ଗଳାର ଏକତ୍ରୀକରଣ ଫଳରେ ବଙ୍ଗଦେଶରେ ଅବସ୍ଥା ଆୟତ୍ତାଧୀନ ହୋଇଥିଲା କିନ୍ତୁ ଚରମପନ୍ଥୀମାନଙ୍କର କାର୍ଯ୍ୟକଳାପ ସମ୍ପୂର୍ଣ୍ଣ ବନ୍ଦ ହୋଇ ନ ଥିଲା ।

ଭାରତର ରାଜନୈତିକ ଅବସ୍ଥା ଶାନ୍ତ ଥିଲା ବେଳେ ୧୯୧୪ ଖ୍ରୀଷ୍ଟାବ୍ଦରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଥିଲା । ବ୍ରିଟିଶ ସାମ୍ରାଜ୍ୟର ଅଂଶ ହିସାବରେ ଭାରତ ମଧ୍ୟ ଏହି ଯୁଦ୍ଧରେ ଯୋଗ ଦେଇଥିଲା ।

# 'ହୋମରୁଲ୍' ଆନ୍ଦୋଳନ

ଭାରତୀୟ ସୈନ୍ୟମାନେ ପ୍ରାଣବଳୀ ଦେଇ ବ୍ରିଟିଶ ଗଣତନ୍ତ୍ରର ସୁରକ୍ଷା ନିମନ୍ତେ ସଂଗ୍ରାମ କରୁଥିଲାବେଳେ କେତେକ ଭାରତୀୟ ରାଜନୀତିଜ୍ଞ ଏ ଦେଶବାସୀଙ୍କର ଶାସନଗତ ତଥା ରାଜନୈତିକ ଦାସତ୍ୱ ବିରୁଦ୍ଧରେ ଆନ୍ଦୋଳନ କରିଥିଲେ । ଶାସନ ବ୍ୟବସ୍ଥାରେ ପ୍ରକୃତ କ୍ଷମତା ଲାଭପାଇଁ ଯେଉଁ ନୂତନ ଆନ୍ଦୋଳନ ହେଲା ତାହାକୁ 'ହୋମ୍‌ରୁଲ' ଆନ୍ଦୋଳନ କୁହାଯାଏ । ମାନ୍ଦ୍ରାଜରେ ଅବସ୍ଥିତ ଭାରତୀୟ ବ୍ରହ୍ମବିଦ୍ୟା ସମିତିର ଅଧ୍ୟକ୍ଷା ଆନିବେସାନ୍ତ ଓ ଲୋକମାନ୍ୟ ବାଳଗଙ୍ଗାଧର ତିଳକ ଏହି ନୂତନ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । କ୍ରମେ ଭରତୀୟ ଜାତୀୟ କଂଗ୍ରେସ ମଧ୍ୟ ଏହି ଆନ୍ଦୋଳନରେ ଜଡ଼ିତ ହୋଇଥିଲା । ଆନିବେସାନ୍ତ ଓ ତିଳକ ସାରା ଭାରତରେ 'ହୋମ୍‌ରୁଲ' ଲିଗ୍‌ର ଶାଖାମାନ ପ୍ରତିଷ୍ଠା କରିଥିଲେ । ଭାରତୀୟମାନେ ନିଜେ ନିଜକୁ ଶାସନ କରିବା ସଂପୂର୍ଣ୍ଣ ଯୋଗ୍ୟ ଓ ଇଂରେଜମାନେ କ୍ଷମତା ହସ୍ତାନ୍ତର କରିଦେବା ଶ୍ରେୟସ୍କର ବୋଲି ସେମାନେ ଦୃଢ଼ମତ ଦେଇଥିଲେ । ବିଶ୍ୱଯୁଦ୍ଧର ସଙ୍କଟଜନକ ପରିସ୍ଥିତିବେଳେ ଭାରତରେ ଏହି ଆନ୍ଦୋଳନ ଇଂରେଜ ସରକାରଙ୍କୁ ବିଶେଷ ବିବ୍ରତ କରି ପକାଇଲା ।

ଏହି ସମୟରେ ୧୯୧୬ ଖ୍ରୀଷ୍ଟାବ୍ଦରେ ଲକ୍ଷ୍ନୌରେ ଜାତୀୟ କଂଗ୍ରେସର ଏକ ସ୍ମରଣୀୟ ଓ ଗୁରୁତ୍ୱପୂର୍ଣ୍ଣ ଅଧିବେଶନ ଅନୁଷ୍ଠିତ ହୋଇଥିଲା । କଂଗ୍ରେସ ସଂବିଧାନର ପରିବର୍ତ୍ତନ କରାଯାଇ ତିଳକ ପ୍ରଭୃତି ଜାତୀୟବାଦୀ ନେତାମାନଙ୍କୁ ଯେଉଁମାନେକି ସୁରାଟ କଂଗ୍ରେସ ଅଧିବେଶନରେ ଗୁରୁତର ନୀତିଗତ ବିଭେଦ ଯୋଗୁଁ ଦଳରୁ ବହିଷ୍କୃତ ହୋଇଥିଲେ ସେମାନଙ୍କୁ ପୁନର୍ବାର ଗ୍ରହଣ କରାଗଲା । ସେହିବର୍ଷ ମୁସଲିମ ଲିଗ୍‌ର ମଧ୍ୟ ବାର୍ଷିକ ଅଧିବେଶନ ଲକ୍ଷ୍ନୌଠାରେ ଅନୁଷ୍ଠିତ ହୋଇଥିଲା । ଇତିମଧ୍ୟରେ ମୁସଲମାନମାନଙ୍କର ଧର୍ମଗୁରୁ ତୁର୍କୀର ଖଲିଫାଙ୍କ ବିରୁଦ୍ଧରେ ଇଂରେଜମାନେ ଯୁଦ୍ଧ ଘୋଷଣା କରିବାରୁ ସେମାନେ ଅସନ୍ତୁଷ୍ଟ ହୋଇ କଂଗ୍ରେସ ଅନୁଷ୍ଠାନ ସହିତ ଏକ ମିଳିତ କାର୍ଯ୍ୟପନ୍ଥା ଗ୍ରହଣ କରିବାକୁ ସିଦ୍ଧାନ୍ତ କଲେ । କଂଗ୍ରେସ ଓ ମୁସଲିମ ଲିଗ୍‌ର ମିଳିତ ରାଜିନାମା 'ଲକ୍ଷ୍ନୌଚୁକ୍ତି' ନାମରେ ଖ୍ୟାତ ।

କଂଗ୍ରେସ ଓ ମୁସଲିମ ଲିଗ୍‌ର ମିଳିତ କାର୍ଯ୍ୟକ୍ରମ ତଥା ହୋମରୁଲ୍ ଆନ୍ଦୋଳନକୁ ଦମନ କରିବା ନିମନ୍ତେ ବିଲାତ ସରକାର ଭାରତୀୟମାନଙ୍କ ଦାବୀ ପ୍ରତି କର୍ଣ୍ଣପାତ କରିବାକୁ ବାଧ୍ୟହେଲେ । ଭାରତ ଶାସନ ପାଇଁ ଏକ ନୂତନ ଆଇନ ପ୍ରଣୟନ କରାଗଲା । ତାହା ମଣ୍ଟେଗୁ ଚେମସ୍ ଫୋର୍ଡ ଆଇନ ନାମରେ ଖ୍ୟାତ । ଇତି ମଧ୍ୟରେ ପ୍ରଥମ ବିଶ୍ୱଯୁଦ୍ଧର ଅବସାନ ଘଟିଥିଲା । ପ୍ରଥମ ବିଶ୍ୱଯୁଦ୍ଧର ଅବସାନ ଘଟିବା ପରେ ସ୍ୱାଧୀନତା ସଂଗ୍ରାମର ପ୍ରଥମ ପର୍ବ ଶେଷ ହୋଇ ଦ୍ୱିତୀୟ ଓ ଶେଷ ପର୍ବ ଆରମ୍ଭ ହେଲା । ମହାତ୍ମାଗାନ୍ଧୀଙ୍କ ଆବିର୍ଭାବ ଫଳରେ ଭାରତରେ ଏକ ନୂତନ ଯୁଗ ସୃଷ୍ଟିହେଲା ଓ ଶେଷରେ ଭାରତରୁ ବିଦେଶୀ ଶାସନ ଲୋପ ପାଇଲା ।

ସତ୍ୟସାଇ ମହିଳା ମହାବିଦ୍ୟାଳୟ
ଭୁବନେଶ୍ୱର



# ଜନ୍ମଭୂମିର ଚଳନ୍ତି ପ୍ରତିମା

ଶ୍ରୀ ଚନ୍ଦ୍ରଶେଖର ନାୟକ

ଚଳିତବର୍ଷ ସାଧାରଣତନ୍ତ୍ର ଦିବସର ଘଟଣା । କଳାହାଣ୍ଡିର ଜିଲ୍ଲାସ୍ତରୀୟ ସାଧାରଣତନ୍ତ୍ର ଦିବସ ସଦରମହକୁମା ଭବାନୀପାଟଣାରେ ପାଳିତ ହୋଇଥାଏ । ପ୍ୟାରେଡ୍ ମଇଦାନରେ ସୁସଜ୍ଜିତ ପୋଲିସ୍, ଏନ୍,. ସି. ସି. ଓ ନନ୍ ଏନ୍. ସି. ସି. ବାହିନୀଙ୍କ ସଙ୍ଗକୁ ଆବାଳବୃଦ୍ଧ ବନିତା ସାଧାରଣତନ୍ତ୍ର ଉତ୍ସବ ଉପଭୋଗ ପାଇଁ ଠୁଳ ହୋଇଥାନ୍ତି । ନିରୂପିତ ସମୟରେ ପୁରୋଧା ଝଣ୍ଡା ଚୌକି ଉପରକୁ ଉଠିଲେ । ଧାର୍ଯ୍ୟ ସମୟ ପୂର୍ବାହ୍ନ ୮.୩୦ମି. । ସୁସଜ୍ଜିତ ବାହିନୀ ଅଶୋକଚକ୍ର ଶୋଭିତ ଜନନୀ ଜନ୍ମଭୂମିର ଚଳନ୍ତି ପ୍ରତିମା ତ୍ରିରଙ୍ଗା ଜାତୀୟ ପତାକାକୁ ଅଭିବାଦନ ଜଣାଇବା ପାଇଁ ଉଦ୍ୟତ । ପୁରୋଧା କୁଞ୍ଚିତ ପତାକାର ରଜ୍ଜୁକୁ ଟାଣି ପତାକା ଉତ୍ତୋଳନ ପାଇଁ ଉଦ୍ୟତ ହେଲେ । ଯୁଗପତ୍ ରାଷ୍ଟ୍ରୀୟ ସଙ୍ଗୀତ ଜନ-ଗଣ-ମନ ଝଙ୍କୃତ ହେବାକୁ ଲାଗିଲା । ମାତ୍ର ଏ କ'ଣ ! ପତାକା ଉନ୍ମୋଚିତ ହୋଇ ପାରିଲା ନାହିଁ । ଏକ କ୍ରୋଧ, ବିସ୍ମୟ ଓ ହାସ୍ୟକର ପରିବେଶ ମଧ୍ୟରେ କର୍ତ୍ତବ୍ୟରତ ପୋଲିସ୍ ଅଫିସର କୁଞ୍ଚିତ ପତାକାକୁ ତଳକୁ ଖସାଇ ଆଣି ପୁଣି ଥରେ ଗଣ୍ଠି ଦେଇ ସ୍ତମ୍ଭର ଅଗ୍ରଭାଗକୁ ଉଠାଇବା ବାଟରେ ପତାକାଟି ଫିଟିଗଲା । ଯଥାବିଧି ପତାକା ଉତ୍ତୋଳିତ ହୋଇ ପାରିଲା ନାହିଁ । ଯୋଗକୁ ସେହିଦିନ ସେହି କଳାହାଣ୍ଡି ଜିଲ୍ଲା ଧର୍ମଗଡ଼ ସବ୍‌ଡିଭିଜନର ସଦର-ମହକୁମାରେ ଅନୁ ବିଭାଗ ସ୍ତରୀୟ ଉତ୍ସବରେ ପୁରୋଧା ପତାକା ଉତ୍ତୋଳନ କରିବାରେ ଦେଖାଗଲା ଯେ ପତାକା ଓଲଟା ଉଡୁଛି ।

ସେତେବେଳେ ସମ୍ବାଦପତ୍ର ମାଧ୍ୟମରେ ଏହି ମର୍ମରେ ସମ୍ବାଦଟି ପରିବେଷଣ କରାଯାଇଥିଲା । ଏହା ଯଦି ସତ୍ୟ ହୋଇଥାଏ ଦେଶ ଓ ଜାତିର ଯେଉଁ ନୀରବ ପ୍ରତୀକର ସମ୍ମାନ ରକ୍ଷାପାଇଁ ସ୍ୱାଧୀନତା ସଂଗ୍ରାମୀମାନେ ଲହୁ ଲହୁ ଢ଼ାଳି ଦେଇଥିଲେ, ସ୍ୱାଧୀନତା ଉତ୍ତର ଦୀର୍ଘ ୧୬ ବର୍ଷ ଅତିକ୍ରାନ୍ତ ହୋଇଥିଲେ ସୁଦ୍ଧା ତାହାକୁ ଯଥାଯଥ ସମ୍ମାନ ପ୍ରଦର୍ଶନ କରା ନଯିବା ବିଶେଷତଃ ଏନ୍. ସି. ସି. ଓ ଆରକ୍ଷୀମାନେ ପତାକାକୁ ତ୍ରୁଟିଶୂନ୍ୟ ଭାବେ ବାନ୍ଧି ପାରୁନଥିବା ଆମ ପକ୍ଷରେ ଲଜ୍ଜା ଜନକ ।

ସାଧାରଣତଃ ଜାତୀୟ ଦିବସମାନଙ୍କରେ ପତାକା ଉତ୍ତୋଳନହିଁ ଏକମାତ୍ର ପ୍ରମୁଖ କାର୍ଯ୍ୟକ୍ରମ ହୋଇ ଆସିଛି । ଗାଁ ଗହଳରେ ଶିକ୍ଷକମାନେ ହିଁ ଏହି କାର୍ଯ୍ୟ ସଂପାଦନ କରନ୍ତି । ଅଥଚ ଶିକ୍ଷକ ତାଲିମ ବିଦ୍ୟାଳୟ—ମହାବିଦ୍ୟାଳୟରେ ପତାକା ସମ୍ବନ୍ଧୀୟ ତାତ୍ତ୍ୱିକ ଓ ବ୍ୟବହାରିକ ଶିକ୍ଷା ପ୍ରଦାନର ବ୍ୟବସ୍ଥା ପାଠ୍ୟ ତାଲିକାରେ ନାହିଁ । ସାଧାରଣତଃ ସ୍କୁଲ କଲେଜର ପିଲାମାନେ ବର୍ଷକରେ ମାତ୍ର ଦୁଇଥର, ମାତ୍ର କେତୋଟି ମିନିଟ୍ ପାଇଁ ପତାକା ଦେଖନ୍ତି । ତେଣୁ ପତାକାର ବର୍ଣ୍ଣ ଯୋଜନା ଓ ତହିଁରେ ନିହିତ ତତ୍ତ୍ୱଦର୍ଶନ ଜାଣିବା ଦୂରେ ଥାଉ, ପତାକାର ପ୍ରତ୍ୟେକ ରଙ୍ଗ ପାଇଁ ସ୍ୱତନ୍ତ୍ର କପଡ଼ା ରହିଛି କି ଗୋଟିଏ କପଡ଼ାରେ ତ୍ରିବିଧ ରଙ୍ଗ କ୍ରମାନ୍ୱୟରେ ଲେପନ କରାଯାଇଛି, କେବଳ ପିଲାମାନେ ନୁହନ୍ତି ଅନେକ ସମୟରେ ଶିକ୍ଷକମାନେ ମଧ୍ୟ ଦ୍ୱନ୍ଦ୍ୱରେ ପଡ଼ି ଯାଉଛନ୍ତି । ଏଥିପ୍ରତି ସରକାରୀ ସଚେତନତା ସୃଷ୍ଟି ହେଉ ନଥିବା ଓ ସରକାରୀ କଳ ଜାଣି ନଜାଣିଲା ପରି ଉଦାସୀନ ରହୁଥିବା ବିସ୍ମୟକର । ଏହା ଦେଶାତ୍ମବୋଧର ପରିପନ୍ଥୀ ଓ ଯେତେଶୀଘ୍ର ଏହାର ଅବସାନ ଘଟେ ଦେଶ ଓ ଜାତି ପକ୍ଷରେ ସେତେ ମଙ୍ଗଳ ।

ଜିଜ୍ଞାସୁ ଓ ଗବେଷକମାନଙ୍କ ମତରେ ଆମ ଜାତୀୟ ପତାକାରେ କେବଳ ଯେ ଆମ ପବିତ୍ର ଜନ୍ମଭୂମି ଭାରତ ପ୍ରତି ଆନୁଗତ୍ୟର ଭାବନା ପୂରି ରହିଛି ତାହା ନୁହେଁ, ଆମ ପତାକା ବିଶ୍ୱଶାନ୍ତି, ମୁକ୍ତି ଓ ପ୍ରଗତିର ବାର୍ତ୍ତାବହ । ଏଥିରେ ବସୁଧୈବ କୁଟୁମ୍ବକମ୍ ଭାବନା ଛତ୍ରେ ଛତ୍ରେ ପ୍ରତିଫଳିତ । ଆମ ଜାତୀୟ ପତାକାର ଜନ୍ମବୃତ୍ତାନ୍ତ ଓ ସ୍ୱାଧୀନତା ସଂଗ୍ରାମରେ ଅବଦାନ ଚର୍ଚ୍ଚା କଲେ ନିଷ୍ପନ୍ଦ ହୃଦୟରେ ମଧ୍ୟ ଜାତୀୟତାର ସ୍ପନ୍ଦନ ଜାଗି ଉଠେ ।

## ପ୍ରାକ୍ ଇଂରେଜ ଯୁଗ

ଆଗେ ଆକୁମାରୀ ହିମାଚଳ ଏକ ଓ ଅଖଣ୍ଡ ନଥିଲା । ଭାରତବର୍ଷ ବହୁ ରାଜ୍ୟରେ ବିଭକ୍ତ ଥିଲା । ମୌର୍ଯ୍ୟ, ନନ୍ଦ, ଚେତ, କୁଶାଣ, ଗୁପ୍ତ, ବର୍ଦ୍ଧନ, ଶ୍ୱେତହାନ, ଘଠୋର, ତୋଗଲକ, ଖିଲିଜୀ, ମଙ୍ଗ, ସୂର୍ଯ୍ୟ, ଦାସ,

ମୋଗଲ, ମରହଟ୍ଟା ଓ ଶିଖ ବଂଶର ନରପତିମାନେ ବିଭିନ୍ନ ଭୂଖଣ୍ଡରେ ରାଜତ୍ୱ କରୁଥିଲେ । ସେମାନଙ୍କ ମଧ୍ୟରେ ପାରସ୍ପରିକ ସଂହତି ନଥିଲା । ପ୍ରତ୍ୟେକ ନିଜ ନିଜ ବଂଶର ସ୍ୱତନ୍ତ୍ର ପତାକା ରଖିଥିଲେ । ବିଜୟ କାମନାରେ ମତ୍ତ ହୋଇ ସେମାନେ ପରସ୍ପରର ରାଜ୍ୟ ଆକ୍ରମଣ କରି ଚକ୍ରବର୍ତ୍ତୀ ବୋଲାଉଥିଲେ । ଏହି ପରିପେକ୍ଷୀରେ ଭାରତର କୌଣସି ରାଷ୍ଟ୍ରୀୟ ନିଶାଣ ନଥିଲା ।

## ବିଦେଶୀ ଶାସନ

ଭାରତକୁ ବାଣିଜ୍ୟ କରିବାକୁ ଆସିଥିବା ଇଷ୍ଟ-ଇଣ୍ଡିଆ କଂପାନୀ ନାମରେ ଅଭିହିତ ଗୋରା ବଣିକ ଦଳ ଭାରତୀୟ ରାଜ୍ୟର ନରପତିମାନଙ୍କ ଅନୈକ୍ୟ ଓ ଅସଦ୍ଭାବ ସ୍ଥାନରୁ ସୁଯୋଗ ନେଇ ଘଟଣା କ୍ରମେ ରାଜ୍ୟ ଗୁଡ଼ିକର ପ୍ରଶାସନକୁ ଅଧିକାର କରିବାକୁ ଲାଗିଲେ । ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଭାଷାରେ " ବଣିକେର୍ ମାନଦଣ୍ଡ ଦେଖା ଦିଲ ରାଜଦଣ୍ଡ ରୂପେ ।" ଏହି ପରିପ୍ରେକ୍ଷୀରେ ଯୁକ୍ତ ରାଜ୍ୟର ପତାକା ୟୁନିଅନ୍ ଜ୍ୟାକ୍ ଭାରତରେ ପ୍ରବେଶ କଲା ।

## ପ୍ରଥମ ଜାତୀୟ ଜାଗରଣ ଓ ସବୁଜ ଧ୍ୱଜା

ଭାରତରୁ ବିଦେଶୀ ଶକ୍ତିର ବହିଷ୍କାର ପାଇଁ ୧୮୫୭ ମସିହାରେ ଯେଉଁ ବିରାଟ ଜାତୀୟ ଜାଗରଣ ଦେଖା-ଦେଇଥିଲା ତାହାର ଜାତୀୟ ଗୁରୁତ୍ୱକୁ ନ୍ୟୁନ ପ୍ରତିପାଦନ କରିବା ଅଭିପ୍ରାୟରେ ବିଦେଶୀ ଐତିହାସିକମାନେ ତାହାକୁ ସିପାହୀ ବିଦ୍ରୋହ ଆଖ୍ୟା ଦେଇଥିଲେ ମଧ୍ୟ ତାହା ଯେ ଭାରତବାସୀଙ୍କର ଏକ ସୁସଙ୍ଗଠିତ ଜାତୀୟ ସଂଗ୍ରାମ ଏଥିରେ ସନ୍ଦେହର କୌଣସି ଅବକାଶ ନାହିଁ । ସିଂହାସନ ଚ୍ୟୁତ, ପରାଜିତ ଓ ରାଜ୍ୟ ହରାଇଥିବା ନରପତିମାନେ ଏହି ସଂଗ୍ରାମର ନେତୃତ୍ୱ ନେଇଥିଲେ । ପୁରୋଭାଗରେ ଥିଲେ ଝାନ୍ସୀର ମହାରାଣୀ ଲକ୍ଷ୍ମୀବାଈ, ତାନ୍ତିଆ ତୋପେ, ନାନା ଫଡ଼ଣାବିସ୍, ଶେଷ ମୋଗଲ ସମ୍ରାଟ ବାହାଦୁର ଶାହ, ବୀରସୁରେନ୍ଦ୍ର ସାଏ ପ୍ରମୁଖ ଭାରତ ମାତାର ବହୁ ବୀର ସନ୍ତାନ । ଏକ ପକ୍ଷରେ ବିଦେଶୀ ସେନା ଓ ଅପର ପକ୍ଷରେ ସଂଗ୍ରାମୀ ଭାରତୀୟ ବାହିନୀ ରଣ କ୍ଷେତ୍ରରେ ଅବତୀର୍ଣ୍ଣ । ବିଦେଶୀ ବାହିନୀଙ୍କ ହାତରେ ଥିଲା ତାଙ୍କ ଦେଶର ପତାକା ୟୁନିଅନ୍ ଜ୍ୟାକ୍ । ଭାରତୀୟ ସଂଗ୍ରାମୀ-ମାନଙ୍କ ପୁରୋଭାଗରେ ରହିଥିଲା ଉଦୀୟମାନ ସୂର୍ଯ୍ୟ ଚିତ୍ର ସମ୍ବଳିତ ଏକ ସବୁଜ ବର୍ଣ୍ଣର ପତାକା । ତେଣୁ ଐତିହାସିକ-ମାନେ ଭାରତ ଜାତୀୟ ସଂଗ୍ରାମର ଇତିହାସରେ ସବୁଜ ଧ୍ୱଜାକୁ ସର୍ବ ପ୍ରଥମ ଜାତୀୟ ପତାକାରୂପେ ସ୍ୱୀକାର କରନ୍ତି । ଏହି ମହାନ ଐତିହ୍ୟକୁ ସମ୍ମାନ ଜଣାଇ ସ୍ୱାଧୀନତା ସଂଗ୍ରାମର ପରବର୍ତ୍ତୀ ପର୍ଯ୍ୟାୟମାନଙ୍କରେ ଜାତୀୟ ପତାକାର ଯେତେସବୁ ପରିବର୍ତ୍ତନ ଘଟିଛି ତହିଁରୁ ସବୁଜ ରଙ୍ଗକୁ ଉଠାଇ ଦିଆଯାଇନାହିଁ । ସ୍ୱାଧୀନ ଭାରତ ଜାତୀୟ ପତାକାର ପ୍ରାନ୍ତଭାଗରେ ସେହି ସବୁଜ ରଙ୍ଗଟି ରହି ସଂଗ୍ରାମୀମାନଙ୍କ ଉତ୍ତରପୁରୁଷଙ୍କୁ ପ୍ରଥମ ସଂଗ୍ରାମର ଅସୀମ ତ୍ୟାଗପୂତ ଦୁର୍ଦ୍ଧର୍ଷ ଜୀବନ ଚରିତ ଦେବାର ଦେଇଛି ।

## ଜାତୀୟ କଂଗ୍ରେସ ଓ ୟୁନିୟନ ଜ୍ୟାକ୍

ଏହି ଜାତୀୟ ଜାଗରଣ କତିପୟ ଭାରତୀୟ ଐତିହାସିକଙ୍କ ଯୋଗୁ ଉଣ୍ଡୁର ହୋଇଗଲା ସତ, ଭାରତରୁ କଂପାନୀ ଶାସନର ବିଲୋପ ଘଟାଇଲା । ବିଲାତର ଶାସନ ସହିତ ଭାରତ ସିଧାସଳଖ ସଂଯୁକ୍ତ ହେଲା । ଭାରତୀୟମାନଙ୍କୁ ଉଚ୍ଚଶିକ୍ଷା, ଚାକିରି, ବାଣିଜ୍ୟ, ଧର୍ମାଚରଣ, ଇତ୍ୟାଦିରେ ଅଧିକତର ସୁବିଧା ସୁଯୋଗ ଦେବା ପାଇଁ ଇଂଲଣ୍ଡେଶ୍ୱରୀ ମହାରାଣୀ ଭିକ୍ଟୋରିଆଙ୍କର ଭାରତବାସୀଙ୍କ ପ୍ରତି ସ୍ନେହ, ସୌହାର୍ଦ୍ଦ୍ୟ, ସଦିଚ୍ଛା ଓ ଆଶ୍ୱାସନାତ୍ମକ ଘୋଷଣାନାମା ପ୍ରକାଶ ପାଇଲା । ଭାରତର ତଦାନିନ୍ତନ ନେତୃବୃନ୍ଦ ବିଲାତ ଶାସନାଧୀନରେ ଉକ୍ତ ପ୍ରୋକ୍ତ ଘୋଷଣାନାମାର କାର୍ଯ୍ୟକାରିତାକୁ ଆଗ୍ରହର ସହିତ ଲକ୍ଷ୍ୟ କଲେ । ଏହି ପରିପ୍ରେକ୍ଷୀରେ ଆୟର୍ଲାଣ୍ଡରୁ ଆଗତ ଜଣେ ସ୍ୱାଧୀନଚେତା ସିଭିଲିଆନ୍ ଅଫିସର ମିଃ ହ୍ୟୁମଙ୍କର ପ୍ରେରଣା ନେଇ ୧୮୮୫ ଡିସେମ୍ବର ୨୮ ତାରିଖରେ ମହାଭାରତୀୟ ଜାତୀୟ କଂଗ୍ରେସ ଜନ୍ମଲାଭ କଲା । ସେ ଦିନ ବମ୍ବେ ନଗରୀରେ ସ୍ୱର୍ଗତ ଦାଦା ଭାଇ ନାଉରୋଜୀ, ସୁରେନ୍ଦ୍ରନାଥ ବାନାର୍ଜ୍ଜୀ ଓ ଉମେଶ ଚନ୍ଦ୍ର ବାନାର୍ଜ୍ଜୀ ପ୍ରମୁଖ ମାତ୍ର ୭୨ ଜଣ ଭାରତୀୟ ଠୁଳ ହୋଇ ଜାତୀୟ କଂଗ୍ରେସର ଜନ୍ମ ପରିଗ୍ରହ ଘୋଷଣା କଲେ । ସ୍ୱର୍ଗତ ଉମେଶ ଚନ୍ଦ୍ର ବାନାର୍ଜ୍ଜୀ ହେଲେ କଂଗ୍ରେସର ପ୍ରଥମ ସଭାପତି ।

ସ୍ୱାଧୀନତା ଲିପ୍ସା କଂଗ୍ରେସର ନ ଥିବାରୁ ରାଜଭକ୍ତିର ନିଦର୍ଶନ ସ୍ୱରୂପ ୟୁନିୟନ ଜ୍ୟାକ୍କୁ ନିଜର ପତାକା ରୂପେ କଂଗ୍ରେସ ବରଣ କରିନେଲେ ।

## ତ୍ରିରଙ୍ଗ ପତାକାର ଜନ୍ମ

ଘଟଣାଚକ୍ରରେ ବହୁ ନବ ଯୁବକ ବହି ଭାରତରୁ ଯାଇ ସ୍ୱାଧୀନ ଦେଶ ବିଦେଶର ରୀତିନୀତି ସଂପର୍କରେ ଆସିଲେ । ସେମାନଙ୍କର ଚଳଣି ପରାଧୀନ ଭାରତ ବାସୀଙ୍କୁ ନାନା ଭାବରେ ଅନୁପ୍ରାଣିତ କଲା । ସମସାମୟିକ ଘଟଣାବଳୀରୁ ଜଣାଯାଏ ଯେ ଜଣେ ଜାପାନୀ ବାଳକର ଜିଜ୍ଞାସାକୁ ଚରିତାର୍ଥ କରି ନପାରି ଉଚ୍ଚ ଶିକ୍ଷିତ ଭାରତୀୟମାନେ ଭାରତ ପାଇଁ ଏକ ସ୍ୱତନ୍ତ୍ର ପତାକା ଗ୍ରହଣ ପାଇଁ ଅନୁ-ପ୍ରେରଣା ଲାଭ କରିଥିଲେ । ୧୯୦୬ ମସିହାରେ ଭାରତର ବଡ଼ଲାଟ ଲର୍ଡ଼ କର୍ଜନ ବଙ୍ଗଳାକୁ ଭାଗ ଭାଗ କରିବା ପାଇଁ ଯେଉଁ ଘୋଷଣାନାମା ପ୍ରକାଶ କରିଥିଲେ ତାହାହିଁ ହେଲା ଭାରତରେ ପୁନଃ ଜାତୀୟ ଜାଗରଣର ଭିତ୍ତି ଭୂମି । ସ୍ୱର୍ଗତ ସୁରେନ୍ଦ୍ର ନାଥ ବାନାର୍ଜ୍ଜୀଙ୍କ ନେତୃତ୍ୱରେ ବଙ୍ଗ ଭଙ୍ଗ ବିରୋଧରେ ଏକ ସଙ୍ଗଠିତ ଜାତୀୟ ଜାଗରଣ ପରିବ୍ୟାପ୍ତ ହେବାକୁ ଲାଗିଲା । ସ୍ୱାଧୀନତା ସଂଗ୍ରାମରେ ଜାତୀୟ ଉନ୍ମା-ଦନା ସୃଷ୍ଟି କରୁଥିବା 'ବନ୍ଦେ ମାତରମ୍' ଧ୍ୱନି ଏହି ଆନ୍ଦୋଳନର ଜନନୀ । ଭାରତ ପାଇଁ ଏକ ସ୍ୱତନ୍ତ୍ର ପତାକାର ପରିକଳ୍ପନାକୁ ଏହି ଆନ୍ଦୋଳନ ନାନା ଭାବରେ ପରିପୁଷ୍ଟ କରିବାକୁ ଲାଗିଲା ।

ଦିନକର ଘଟଣା । କଲିକତା ବନ୍ଦରରୁ ଏକ ଜାପାନୀ ଜାହାଜ ଜାପାନ ଯାତ୍ରାର ଅବ୍ୟବହିତ ପୂର୍ବରୁ ଜାହାଜର

ଯାତ୍ରୀମାନେ ଡେକ୍ ଉପରେ ବିଚରଣ କରୁଥିଲେ । ଜାହାଜରେ ଜାପାନୀ ପତାକା ଫର ଫର ଉଡୁଥାଏ । ଜାପାନୀ ପିଲାଟିଏ ଅତ୍ୟନ୍ତ ଜିଜ୍ଞାସୁ ନୟନରେ ସହଯାତ୍ରୀ ଜଣେ ଶିକ୍ଷିତ ଭାରତୀୟଙ୍କୁ ତାଙ୍କ ଦେଶର ସେହି ପତାକାକୁ ଦେଖାଇ ଦେଇ ନମ୍ରତାର ସହିତ ପଚାରିଲା—"ମହାଶୟ ! ଆପଣଙ୍କ ଦେଶର ପତାକାଟି କ'ଣ ଆମ ଏହି ପତାକା ପରି"? ବିଚରା ଭାରତୀୟ ଯୁବକ ଏକ ସ୍ୱାଧୀନ ଦେଶର ଏହି ସ୍ୱାଧୀନ ବାଳକଟିର ପ୍ରଶ୍ନର କି ଜବାବ ଦେବେ ଭାବି ପାରିଲେ ନାହିଁ । ଭାରତ ପରାଧୀନ । ପରାଧୀନ ଜାତିର ପତାକା ଆସିବ କେଉଁଠୁ ? ତେଣୁ ସେ ଲଜ୍ଜାରେ ମସ୍ତକ ଅବନତ କରି ଅଶ୍ରୁ ବିମୋଚନ କରିବାକୁ ଲାଗିଲେ । ଏହି ପରିପ୍ରେକ୍ଷୀରେ ପ୍ରବାସୀ ଭାରତୀୟମାନେ ବିପ୍ଳବିଣୀ ମ୍ୟାଡ଼ାମ୍ କେମା ଓ ବିପ୍ଳବୀ ଶ୍ୟାମଜୀ କୃଷ୍ଣବର୍ମାଙ୍କ ନେତୃତ୍ୱରେ ପ୍ୟାରିସ ନଗରୀରେ ସମବେତ ହୋଇ ଭାରତ ପାଇଁ ଏକ ସ୍ୱତନ୍ତ୍ର ପତାକାର ପରିକଳ୍ପନା କଲେ । ଏହା ତ୍ରିରଙ୍ଗୀ ଥିଲା । ଆଦ୍ୟ ଭାଗରେ ନାଲି, ମଧ୍ୟ ଭାଗରେ ହରିଦ୍ରା ଓ ପ୍ରାନ୍ତ ଦେଶରେ ସବୁଜ ରଙ୍ଗ ସମାନ୍ତରାଳ କ୍ରମରେ ସଜ୍ଜିତ ହୋଇଥିଲା । ନାଲି ପ୍ରସ୍ଥରେ ଗୋଟିଏ ପଦ୍ମ ଓ ସାତଟି ତାରକା, ମଧ୍ୟ ପ୍ରସ୍ଥରେ ଦେବନାଗରୀ ଲିପିରେ ବନ୍ଦେ ମାତରମ୍ ଲେଖା ଓ ପ୍ରାନ୍ତ ପ୍ରସ୍ଥର ବାମ ଭାଗରେ ଉଦୀୟମାନ ସୂର୍ଯ୍ୟ ଓ ଦକ୍ଷିଣ ଭାଗରେ ବକ୍ର ଚନ୍ଦ୍ର ଓ ତାରକାର ଛବି ଥିଲା । ଛବିଗୁଡ଼ିକ ଶ୍ୱେତ ରଙ୍ଗରେ ଓ ବନ୍ଦେ ମାତରମ୍ ଗାଢ଼ ନୀଳ ରଙ୍ଗରେ ଅଙ୍କିତ ହୋଇଥିଲା । ଜର୍ମାନୀର ରାଜଧାନୀ ବର୍ଲିନ ନଗରୀରେ ଏକ ସମାଜବାଦୀ ସମ୍ମେଳନ ଅନୁଷ୍ଠିତ ହେଉଥାଏ । ପୃଥିବୀର ବହୁ ଦେଶରୁ ସମାଜବାଦୀ ଚିନ୍ତାଧାରାକୁ ସମର୍ଥନ କରୁଥିବା ବହୁ ଯୁବକ ଯୁବତୀ ନିଜ ନିଜ ଦେଶର ପତାକା ଉଡ଼ାଇ ଏହି ସମ୍ମେଳନରେ ଭାଗ ନେଇଥାନ୍ତି । ବିପ୍ଳବୀ ଭାରତୀୟ ଯୁବକମାନଙ୍କ ଗହଣରେ ମ୍ୟାଡ଼ାମ୍ କେମା ଏହି ସମ୍ମେଳନରେ ଭାଗ ନେଇ ଯେତେବେଳେ ନବ ପ୍ରସ୍ତୁତ ତ୍ରିରଙ୍ଗ ଝଣ୍ଡାଟିକୁ ଉତ୍ତୋଳନ କରିଦେଲେ ସମବେତ ଜନତାଙ୍କ ମଧ୍ୟରୁ ସ୍ୱତଃ ଧ୍ୱନିତ ହେଲା Long Live India, Long Live India—ଆଜାଦ୍ ହିନ୍ଦ୍—ଜିନ୍ଦାବାଦ । ଏହା ୧୯୦୫ ମସିହାର ଘଟଣା । କେହି କେହି ଏହାକୁ ୧୯୦୭ ମସିହାର ବୋଲି କହନ୍ତି ।

ବଙ୍ଗ ଭଙ୍ଗ ଆନ୍ଦୋଳନରେ ୧୯୦୬ ଅଗଷ୍ଟ ୭ ତାରିଖରେ କଲିକତାସ୍ଥିତ ପାର୍ସୀ ବାଗାନ ସ୍କୋୟାର (Green Park)ରେ ଏହି ପତାକାର ଅନୁରୂପ ପତାକାଟିଏ ପ୍ରଥମ କରି ଉତ୍ତୋଳିତ ହେଲା । କାହାରି କାହାରି ମତରେ ଆଦ୍ୟ ଭାଗରେ ସପ୍ତ ତାରକା ଓ ଗୋଟିଏ ପଦ୍ମ ବଦଳରେ ୮ଟି ପଦ୍ମ ଥିଲା । ଅନ୍ୟ ସଙ୍କେତଗୁଡ଼ିକରେ କୌଣସି ପରିବର୍ତ୍ତନ ହୋଇ ନଥିଲା ।

ଏହିପରି ଭାବରେ ୧୯୦୫ରୁ ୧୯୦୭ ମସିହା ମଧ୍ୟରେ ଭାରତ ପାଇଁ ପ୍ରସ୍ତୁତ ସର୍ବ ପ୍ରଥମ ତ୍ରିରଙ୍ଗ ପତାକାର ଅଭ୍ୟୁଦୟ ହୋଇଛି । ଏହି ପତାକାର ପ୍ରସ୍ତୁତ ପ୍ରଣାଳୀ ଓ ତହିଁରେ ସମାବିଷ୍ଟ ସଙ୍କେତଗୁଡ଼ିକ ଗଭୀର ଜାତୀୟତା ବୋଧ, ସାଂପ୍ରଦାୟିକ ସଂପ୍ରୀତି ଓ ଅଖଣ୍ଡ ଭାରତର ଦ୍ୟୋତକ ହୋଇ ଥିବାରୁ ସ୍ୱାଧୀନତା ଲିପ୍ସୁ ଭାରତୀୟମାନଙ୍କ ପ୍ରାଣରେ ଜାତୀୟତାର ଉନ୍ମେଷ ହୋଇଗଲା । ବଙ୍ଗ ବିଚ୍ଛେଦ ଆନ୍ଦୋଳନରେ ବିପ୍ଳବୀମାନେ ଏହି ତ୍ରିରଙ୍ଗ ପତାକାକୁ ବ୍ୟବହାର କରି ଅସୀମ ତ୍ୟାଗ ସ୍ୱୀକାର କରିଥିଲେ । ଜାତୀୟ ପତାକାର ଅଭ୍ୟୁଦୟ ବିଦେଶୀ ସରକାରଙ୍କର ଭୀତି ସଞ୍ଚାରର କାରଣ ହେଲା ।

## ହୋମ୍ ରୁଲ୍ ଆନ୍ଦୋଳନ ଓ ରୈଖିକ ପତାକା

ଘଟଣାକ୍ରମେ ସ୍ୱାଧୀନତାର ଆଶା ଆକାଂକ୍ଷା ନେଇ ବହୁ ନବ ଯୁବକ କଂଗ୍ରେସରେ ଯୋଗ ଦେଲେ । ଉଚ୍ଚ ଚାକିରି ବାକିରିରେ ଆବେଦନ ନିବେଦନ ଦ୍ୱାରା ପ୍ରବେଶ ଲଭ ପାଇଁ ଜନ୍ମବେଳେ କଂଗ୍ରେସର ଯେଉଁ ଲକ୍ଷ୍ୟ ଥିଲା, ତାହା କ୍ରମେ ବଦଳିବାକୁ ଲାଗିଲା । ଲୋକମାନ୍ୟ ବାଳଗଙ୍ଗାଧର ତିଳକ କଂଗ୍ରେସକୁ ନିଜସ୍ୱ ସ୍ୱରାଜ ମନ୍ତ୍ରରେ ଅଭିମନ୍ତ୍ରିତ କରାଇବାକୁ ଲାଗିଲେ । ଏହି ଲକ୍ଷ୍ୟରେ ସେ Home rule for India League ସଂସ୍ଥା ଗଠନ କଲେ । ଡ଼ଃ ଶ୍ରୀମତୀ ଆନିବେସାନ୍ତ କଂଗ୍ରେସର ସଭାନେତ୍ରୀ ଭାବରେ ୧୯୧୭ ଡ଼ିସେମ୍ବର ୨୬ ତାରିଖରେ ଅନୁଷ୍ଠିତ କଲିକତା କଂଗ୍ରେସରେ ହୋମ୍ ରୁଲ୍ ଆନ୍ଦୋଳନର ରୂପରେଖ ବର୍ଣ୍ଣନା କରି ଯେଉଁ ଜ୍ୱାଳାମୟୀ ଭାଷଣ ଦେଇଥିଲେ ସାରା ଭାରତ ତହିଁରେ ଆନ୍ଦୋଳିତ ହେବାକୁ ଲାଗିଲା । କଂଗ୍ରେସର ପୂର୍ବ ପ୍ରଚଳିତ ଲକ୍ଷ୍ୟରେ ବୈଶିଷ୍ଟ୍ୟ ସୂଚକ ୟୁନିୟନ ଜ୍ୟାକ୍ ବଦଳରେ ଏକ ସ୍ୱତନ୍ତ୍ର ପତାକାର ଆବଶ୍ୟକତା ଅନୁଭୂତ ହେଲା ।

ଏଥି ପୂର୍ବରୁ ୧୯୧୫ ମସିହାରେ ବମ୍ବେର ଜଣେ ବର୍ଷିୟାନ କଂଗ୍ରେସ ନେତା ଶ୍ରୀ ଡ଼ି. ଡ଼ି. ସାଠେ ଜାତୀୟ ସ୍ୱୟଂ ସେବକ ବାହିନୀର ବ୍ୟବହାର ପାଇଁ ଏକ ପତାକା ପ୍ରସ୍ତୁତ କରିଥିଲେ । ଯୁକ୍ତରାଷ୍ଟ୍ର ଆମେରିକା ଝଣ୍ଡାର ଅନୁକରଣରେ ଶ୍ରୀ ସାଠେଜୀ ଏହି ପତାକାକୁ ରୈଖିକ ରୂପ ଦେଇଥିଲେ । ଏଥିରେ ପାଞ୍ଚଟି ନାଲି ଓ ଚାରୋଟି ସବୁଜ ରଙ୍ଗର ରେଖା କୃତି ପ୍ରସ୍ଥ ଏକାନ୍ତର ଭାବେ ସଜ୍ଜିତ ଥିଲା । ପତାକାର ବାମ ଶୀର୍ଷରେ ୟୁନିୟନ ଜ୍ୟାକ୍, ଦକ୍ଷିଣ ଶୀର୍ଷରେ ଚନ୍ଦ୍ର ଓ ତାରକାର ଛବି ଏବଂ ନିମ୍ନ ଭାଗରେ ସପ୍ତର୍ଷିମଣ୍ଡଳ ଧଳା ରଙ୍ଗରେ ଚିତ୍ରିତ ହୋଇଥିଲା । ୟୁନିୟନ ଜ୍ୟାକ୍‌ରୁ ସୂଚନା ମିଳୁଥିଲା ଯେ ଭାରତ ଇଂରେଜ ଶାସନାଧୀନରେ ସ୍ୱାୟତ୍ତ ଶାସନ ଦାବୀ କରେ । ନଅଟି ରେଖା ତତ୍‌କାଳୀନ ଭାରତର ପ୍ରଦେଶଗୁଡ଼ିକର ସୂଚକ ଥିଲା । ଅନ୍ୟ ଛବିଗୁଡ଼ିକ ଭାରତର ପ୍ରାଚୀନ ଐତିହ୍ୟ ଓ ଧର୍ମ ସମନ୍ୱୟ ଭାବ ପ୍ରଚାର କରୁଥିଲା । ହୋମ୍ ରୁଲ୍ ଲିଗ୍ ଏହି ପତାକାକୁ ଗ୍ରହଣ କରିଥିଲେ ।

୧୯୧୭ କଲିକତା କଂଗ୍ରେସରେ ସଭାନେତ୍ରୀ ଶ୍ରୀମତୀ ବେସାନ୍ତଙ୍କ ପ୍ରସ୍ତାବ ଅନୁଯାୟୀ କଂଗ୍ରେସର ଗ୍ରହଣୀୟ ହେବା ଭଳି ଏକ ଜାତୀୟ ପତାକାର ରୂପରେଖ ନିର୍ଣ୍ଣୟ ପାଇଁ ଶ୍ରୀଯୁକ୍ତ ଅବନୀନ୍ଦ୍ର ନାଥ ଠାକୁରଙ୍କ ନେତୃତ୍ୱରେ ଏକ କମିଟି ଗଠିତ ହୋଇଥିଲା । ମାତ୍ର ଆନ୍ଦୋଳନର ପର୍ଯ୍ୟାୟ ଭିତରେ କମିଟିର କୌଣସି ବୈଠକ ଅନୁଷ୍ଠିତ ହୋଇ ପାରିଲା ନାହିଁ । ପ୍ରୋକ୍ତ ରୈଖିକ ପତାକା ହିଁ କଂଗ୍ରେସର ବିନା ସ୍ୱୀକୃତିରେ ଆନ୍ଦୋଳନରେ ବ୍ୟାପକ ହେବାକୁ ଲାଗିଲା ।

ବଙ୍ଗଭଙ୍ଗ ଆନ୍ଦୋଳନରେ ବ୍ୟବହୃତ ତ୍ରିରଙ୍ଗ ପତାକା ଓ ହୋମ୍ ରୁଲ୍ ଆନ୍ଦୋଳନରେ ବ୍ୟବହୃତ ରୈଖିକ ପତାକା କଂଗ୍ରେସରେ ଆନୁଷ୍ଠାନିକ ରୀତିରେ ସ୍ୱୀକୃତ ହୋଇ ନଥିବାରୁ ଓ ଏକ ନିର୍ଦ୍ଦିଷ୍ଟ ଆନ୍ଦୋଳନ ପରିପ୍ରେକ୍ଷୀରେ ବ୍ୟବହୃତ ହୋଇଥିବାରୁ ସେହି ଦୁଇଟି ଆନ୍ଦୋଳନ ମଉଳି ଯିବା ପରେ ଦୁଇଟିଯାକ ପତାକାର ବ୍ୟବହାର ବିଲୁପ୍ତ ହୋଇଗଲା ।

## ଅସହଯୋଗ ଆନ୍ଦୋଳନ ଓ ସ୍ୱୀକୃତ ଜାତୀୟ ପତାକା

ପ୍ରଥମ ମହାଯୁଦ୍ଧ କାଳରେ ମହାତ୍ମାଗାନ୍ଧୀ ଭାରତର ରାଜନୈତିକ ଗଗନରେ ସମୁଜ୍ଜ୍ୱଳ ଜ୍ୟୋତିଷ୍କ ରୂପେ ପ୍ରତିଭାତ ହେଲେ । ଦକ୍ଷିଣ ଆଫ୍ରିକାରେ ଉତ୍‌କଟ କଳା ଗୋରା ଭେଦର ବିଲୋପ ପାଇଁ ସତ୍ୟ ଓ ଅହିଂସାର ଭିତ୍ତି ଉପରେ ପ୍ରତିଷ୍ଠିତ ସତ୍ୟାଗ୍ରହର ସଫଳ ପ୍ରୟୋଗ ସାରି ସେ ଭାରତ ଆସିଥାନ୍ତି । ସ୍ୱାଧୀନତା ଲିପ୍ସୁ ଭାରତୀୟମାନେ କଂଗ୍ରେସରେ ଗାନ୍ଧିଜୀଙ୍କ ନେତୃତ୍ୱ ପ୍ରତି ସ୍ୱତଃ ଶ୍ରଦ୍ଧା ଓ ଆସ୍ଥାବାନ ହୋଇପଡ଼ନ୍ତି । ମହାଯୁଦ୍ଧରେ ବିଜୟ ହାସଲ ପରେ ଇଂରେଜ ସରକାର ଭାରତୀୟମାନଙ୍କୁ ସ୍ୱାୟତ୍ତ ଶାସନ ଦେବା ଦୂରେ ଥାଉ ଭାରତୀୟମାନଙ୍କ ଅଦମ୍ୟ ସ୍ୱାଧୀନତା ଲିପ୍ସାକୁ ଖର୍ବ କରିଦେବା ଅଭିପ୍ରାୟରେ ଦମନମୂଳକ କାନୁନ୍‌ମାନ ଜାରି କରିବାକୁ ଲାଗିଲେ । ଗାନ୍ଧିଜୀଙ୍କ ଆହ୍ୱାନରେ ଭାରତ ସାରା ୧୯୧୯ ଅପ୍ରେଲ ୧୩ ତାରିଖ ପବିତ୍ର ମହାବିଷୁବ ସଂକ୍ରାନ୍ତିରେ ଆହୁମାରୀ ହିମାଚଳ ପ୍ରତିବାଦ ଦିବସ ପାଳିତ ହେଲା । ସେଦିନ ଅମୃତସରସ୍ଥିତ ଜାଲିଆନାବାଗଠାରେ ଜନପ୍ରିୟ ନେତା ଲାଲ ହଂସରାଜଙ୍କ ନେତୃତ୍ୱରେ ବିଂଶସହସ୍ରାଧିକ ଆବାଳ ବୃଦ୍ଧ ବନିତା ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ନବବର୍ଷର ସାମୂହିକ ଉତ୍ସବ ପ୍ରତିପାଳନ କରୁଥିଲାବେଳେ ପଞ୍ଜାବର ଲଟ ମାଇକେଲ ଓଡାୟାରଙ୍କ ନିର୍ଦ୍ଦେଶରେ ଜେନେରାଲ ଡାୟାର ସେଠାରେ ଜନତାକୁ ଛତ୍ରଭଙ୍ଗ କରାଇବା ଆଳରେ ଯେଉଁ ନାରକୀୟ ହତ୍ୟାକାଣ୍ଡ ଘଟାଇଲେ ସ୍ୱାଧୀନତା ସଂଗ୍ରାମର ଇତିହାସରେ ତାହା ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡ ନାମରେ ବିଦିତ । ଭାରତସାରା ଏହି ନିର୍ମମ ହତ୍ୟାକାଣ୍ଡର ଆତଙ୍କିତ, କ୍ରୁଦ୍ଧ ଓ ଉଦ୍‌ବେଳିତ ହୋଇ ଉପାୟାନ୍ତର ଖୋଜି ବସିଲେ । ଏହି ପରିପ୍ରେକ୍ଷୀରେ ସ୍ୱାଧୀନତା ସଂଗ୍ରାମକୁ ଏକ ବିଧିବଦ୍ଧ ଯୋଜନାଭୁକ୍ତ ପର୍ଯ୍ୟାୟରେ ଆରମ୍ଭ କରିବା ଲକ୍ଷ୍ୟରେ ମହାତ୍ମାଗାନ୍ଧୀ ଅସହଯୋଗ ଆନ୍ଦୋଳନ ପାଇଁ ଦେଶବାସୀଙ୍କୁ ଆହ୍ୱାନ କଲେ । ଇଂରେଜୀ ଶାସନ ସହିତ ସବୁପ୍ରକାର ଅସହ-ଯୋଗ ଏହି ଆନ୍ଦୋଳନର କାର୍ଯ୍ୟକ୍ରମରେ ଥିଲା ।

ଏଥିପାଇଁ ସର୍ବାଦୌ ଆବଶ୍ୟକ ହେଲା କୋଟି ଜନତାର ମନଲାଖି ଏକ ଜାତୀୟ ପତାକା । ମହାତ୍ମାଗାନ୍ଧୀଙ୍କର ପରିକଳ୍ପନାକୁ ନିର୍ଦ୍ଦିଷ୍ଟ ରୂପ ଦେବା ପାଇଁ ମସଲିପଟମ୍ ଜାତୀୟ କଲେଜର ଅଧ୍ୟାପକ ଶ୍ରୀ ପି. ଭେଙ୍କେୟା ପ୍ରସ୍ତାବିତ ଜାତୀୟ ପତାକାର ରୂପରେଖ ବର୍ଣ୍ଣନା କରି ପୁସ୍ତିକାଟିଏ ପ୍ରକାଶକଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଗଭୀର ଆଲୋଚନା ଓ ପର୍ଯ୍ୟାଲୋଚନା ପରେ କଂଗ୍ରେସର ଜାତୀୟ ପତାକା ରୂପେ ଏକ ତ୍ରିରଙ୍ଗ ଝଣ୍ଡା ପ୍ରସ୍ତୁତ ହେଲା । ଲାଲ ହଂସରାଜ ସ୍ୱାଧୀନତା ସଂଗ୍ରାମର ଅହିଂସକ ଆୟୁଧ ରେଖାର ପୂର୍ଣ୍ଣାବୟବ ଚିତ୍ରକୁ ଜାତୀୟ ପତାକାର ବକ୍ଷ ଦେଶରେ ସ୍ଥାନ ଦେବାକୁ ପ୍ରସ୍ତାବ ଦେଲେ । ନିର୍ବିବାଦରେ ଏ... ଗୃହୀତ ହେଲା ।

୧୯୨୧ ଅପ୍ରେଲ ୧୩ ତାରିଖ ସଂଖ୍ୟା ୟଙ୍ଗ୍ ଇଣ୍ଡିଆରେ ... ନବପ୍ରସ୍ତୁତ ତ୍ରିରଙ୍ଗ ପତାକାର ବୈଶିଷ୍ଟ୍ୟ ଓ ମହତ୍ତ୍ୱ ବୁଝାଇ ବାପୁଜୀ କହିଲେ ଯେ ଏହି ପତାକାର ଆଦ୍ୟ ଭାଗରେ ଶ୍ୱେତ, ମଧ୍ୟ ଭାଗରେ ସବୁଜ ଓ ପ୍ରାନ୍ତ ଭାଗରେ ନାଲି ରଙ୍ଗର କପଡ଼ା ରହିବ । ଏହା ଯଥାକ୍ରମେ ଭାରତସ୍ଥିତ ସମସ୍ତ ସଂଖ୍ୟାଲଘିଷ୍ଠ ଗୋଷ୍ଠୀ, ମୁସଲମାନ ଓ ହିନ୍ଦୁମାନଙ୍କର ପ୍ରତିନିଧିତ୍ୱ କରିବ । ଏହି ପ୍ରତ୍ୟେକ ସଂପ୍ରଦାୟ ସଂଖ୍ୟା ଦୃଷ୍ଟିରୁ ବଡ଼ସାନ ହେଲେ ହେଁ ପ୍ରତ୍ୟେକ କପଡ଼ାକୁ ସାନବଡ଼ ନ କରି ସମାନ କରାଯିବ । ତଦ୍ୱାରା ଏହି ତ୍ରିରଙ୍ଗ ପତାକା ବିଭେଦଗ୍ରସ୍ତ ବିଭିନ୍ନ ଧର୍ମ, ଜାତି, ବର୍ଣ୍ଣ ଓ ଗୋଷ୍ଠୀମାନଙ୍କୁ ପରସ୍ପର ଗ୍ରଥିତ କରି ଜାତୀୟ ସଂହତି ପ୍ରତିଷ୍ଠା କରିବ । ସର୍ବାଧିକ ସଂଖ୍ୟକ ହିନ୍ଦୁମାନଙ୍କୁ ପତାକାର ପ୍ରାନ୍ତ ଭାଗରେ ଓ ଅନ୍ୟମାନଙ୍କୁ ସଂଖ୍ୟାକ୍ରମେ ମଧ୍ୟ ଓ ଆଦ୍ୟ ଭାଗରେ ରଖିବା ଦ୍ୱାରା ସଂଖ୍ୟା ଗରିଷ୍ଠ ଗୋଷ୍ଠୀ ସଂଖ୍ୟା ଲଘିଷ୍ଠ-ମାନଙ୍କ ସୁରକ୍ଷାର ଦାୟିତ୍ୱ ନେବାକୁ କର୍ତ୍ତବ୍ୟ ମନେ କରିବେ । ସଂଖ୍ୟାଲଘିଷ୍ଠମାନେ ନିଜକୁ ଦୁର୍ବଳ ଅସହାୟ ମନେ କରିବେ ନାହିଁ । ସମୃଦ୍ଧି ରୂପକ ସୌର ଜଗତର ସୂର୍ଯ୍ୟ ରୂପେ ବିବେଚିତ ରେଖାକୁ ପତାକାରେ ସ୍ଥାନ ଦେବା ଦ୍ୱାରା ଦୃଢ଼ ଶିଳ୍ପ ସମୃଦ୍ଧି ଓ ବିଭବକୁ ଫେରାଇ ଆଣିବା ପାଇଁ ଭାରତୀୟମାନେ ପ୍ରେରଣା ଲାଭ କରିବେ । ଜାତୀୟ ପତାକା ହାତକଟା ସୂତା ଓ ତନ୍ତବୁଣା ପ୍ରସ୍ତୁତ ଖଦଡ଼ କପଡ଼ାରେ ତିଆରି ହେବ । ଏହି ଜାତୀୟ ପତାକାରେ ଧର୍ମ ନିରପେକ୍ଷତା ସୂଚିତ ହୋଇଥିବାରୁ ଓ ଗାଣିତିକ ନିୟମରେ ଗୋଷ୍ଠୀ ଓ ଧର୍ମକୁ ସ୍ଥାନ ଦିଆଯାଇଥିବାରୁ ଯେ କୌଣସି ଧର୍ମ ସଂପ୍ରଦାୟ ନିଜ ପତାକାରେ ଜାତୀୟ ପତାକାର ଏକ କ୍ଷୁଦ୍ର ରୂପକୁ ମନ କଲେ ସ୍ଥାନ ଦେଇପାରିବ ।

୧୯୨୧ ମସିହା ଡିସେମ୍ବର ୨୭ ତାରିଖରେ ଅହମଦାବାଦରେ ଅନୁଷ୍ଠିତ କଂଗ୍ରେସର ବାର୍ଷିକ ଅଧିବେଶନରେ ନିର୍ବିବାଦରେ ଏହି ତ୍ରିରଙ୍ଗ ଜାତୀୟ ପତାକା ଉତ୍ତୋଳିତ ହେଲା ଓ ଦୀର୍ଘ ୩୬ ବର୍ଷ ଧରି କଂଗ୍ରେସ ଅଧିବେଶନରେ ଉତ୍ତୋଳିତ ହୋଇ ଆସୁଥିବା ବିଦେଶ ସରକାରଙ୍କ ପତାକା ୟୁନିଅନ୍ ଜ୍ୟାକ୍ ସ୍ୱତଃ ଅପସାରିତ ହୋଇଗଲା । ଏହି ପତାକାକୁ ହାତରେ ଧରି ଅସହଯୋଗ ଆନ୍ଦୋଳନର ସତ୍ୟାଗ୍ରହୀମାନେ ବିଦେଶ ସରକାରଙ୍କୁ ପ୍ରକାଶ୍ୟ ଜଣାଇଦେଲେ ଯେ ଭାରତ ଆଉ ଗୋଲାମ ହୋଇ ରହିବାକୁ ଚାହେଁ ନାହିଁ ।

## ସରକାରୀ ହସ୍ତକ୍ଷେପ

ବିଦେଶୀ ସରକାର ଏଥିରେ ବିଚଳିତ ହୋଇପଡ଼ିଲେ । ଜାତୀୟ ପତାକାର ଲୋକପ୍ରିୟତା ଭାରତର ପୁରପଲ୍ଲୀରେ ଦ୍ରୁତ ପ୍ରସାର ଲାଭ କରୁଥିବା ଅନୁଭବ କରି ବିଭିନ୍ନ ଉପାୟରେ ଜାତୀୟ ପତାକାର ବ୍ୟବହାରକୁ ନିଷେଧ କରି କଟକଣା ଜାରି କରିବାକୁ ଲାଗିଲେ ।

୧୯୨୨ ମସିହାରେ ଜବଲପୁର ମ୍ୟୁନିସିପାଲିଟି ପଣ୍ଡିତ ମୋତିଲାଲ ନେହେରୁଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରିବାକୁ ଯାଇ ଜାତୀୟ ପତାକା ଉତ୍ତୋଳନ କରିବାରୁ ବିଲାତ ପାର୍ଲିଆମେଣ୍ଟରେ

ଆନ୍ଦୋଳନ ସୃଷ୍ଟି ହୋଇଥିଲା । ୧୯୨୩ ମାର୍ଚ୍ଚ ୧୩ ତାରିଖରେ ସେହି ମ୍ୟୁନିସିପାଲିଟି ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ଓ ଡ଼ଃ ରାଜେନ୍ଦ୍ର ପ୍ରସାଦଙ୍କୁ ଅଭିନନ୍ଦିତ କରାଇବାକୁ ଯାଇ ଜାତୀୟ ପତାକା ଉତ୍ତୋଳନ ପ୍ରସ୍ତାବ ଗ୍ରହଣ କରିବାରୁ ପୋଲିସ ଓ ସୈନ୍ୟ ଫଉଜ ପଠାଇ ବିଦେଶୀ ସରକାର ତାହା କରାଇ ଦେଲେ ନାହିଁ ।

ଜାତୀୟ ପତାକାର ବ୍ୟବହାର ଉପରେ ଜାରି କରାଯାଇଥିବା ନିଷେଧାଜ୍ଞାକୁ ପ୍ରତିହତ କରାଇବା ପାଇଁ ଏକ ସଂଗଠିତ ଆଇନ ଅମାନ୍ୟ ନାଗପୁରରେ ହୋଇଥିଲା । ସ୍ୱାଧୀନତା ସଂଗ୍ରାମର ଇତିହାସରେ ଏହା ନାଗପୁର ଝଣ୍ଡା ସତ୍ୟାଗ୍ରହ ନାମରେ ବିଦିତ। ୧୯୨୩ ମଇ ୧ ତାରିଖରେ ଦଳେ କଂଗ୍ରେସ ସ୍ୱୟଂ ସେବକ ଜାତୀୟ ପତାକା ହସ୍ତରେ ଧରି ସର୍ବସାଧାରଣ ରାସ୍ତା (Civi line) ଦେଇ ଶୋଭାଯାତ୍ରାରେ ଯାଉଥିବାବେଳେ ଜାତୀୟ ପତାକାର ବ୍ୟବହାର ପାଇଁ ସରକାରୀ କର୍ତ୍ତୃପକ୍ଷ ସେମାନଙ୍କୁ ବାରଣ କଲେ । ଶୋଭାଯାତ୍ରାକାରୀମାନେ ମାନିଲେ ନାହିଁ । ତେଣୁ ପୋଲିସ ସେମାନଙ୍କୁ ଗିରଫ କଲେ । ଏହି ଘଟଣାକୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ମନେକରି ନାଗପୁର କଂଗ୍ରେସ କମିଟି ନିଷ୍ପତ୍ତି କଲେ ଯେ ଜାତୀୟ ପତାକାର ବ୍ୟବହାର ଉପରୁ କଟକଣା ଉଠାଇବା ପାଇଁ ସେମାନେ ସତ୍ୟାଗ୍ରହ କରିବେ । କଂଗ୍ରେସର ଅସହଯୋଗ ଆହ୍ୱାନରେ ଏଲାହାବାଦ ସରକାରୀ ସ୍କୁଲରୁ ପଢ଼ା ଛାଡ଼ିଥିବା ଛାତ୍ରୀ ଶ୍ରୀମତୀ ସୁଭଦ୍ରା ଦେବୀ ପ୍ରଥମ ସତ୍ୟାଗ୍ରହୀ ରୂପେ ଜାତୀୟ ପତାକା ହସ୍ତରେ ନିଷିଦ୍ଧାଞ୍ଚଳରେ ପ୍ରବେଶ କରି କାରାବରଣ କଲେ । ପ୍ରବୀଣ ରାଜନୀତିଜ୍ଞ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ନାଗପୁର ଆସି ୧୯୨୩ ମଇ ୩୧ ତାରିଖରେ ଏକ ବିରାଟ ସାଧାରଣ ସଭାରେ ଏହି ଝଣ୍ଡା ସତ୍ୟାଗ୍ରହର ଗୁରୁତ୍ୱ ବୁଝାଇବାକୁ ଯାଇ ଜ୍ୱାଳାମୟୀ ଭାଷଣରେ ଭାରତୀୟ ଜନସାଧାରଣଙ୍କୁ ଚେତାଇଦେଲେ ଯେ ଜାତୀୟ ପତାକାରେ ନିହିତ ଜାତୀୟ ସଂହତି ରେଖାର ଦୁର୍ଦ୍ଦମନୀୟ ଶକ୍ତିରେ ବିଚଳିତ ହୋଇ ଆମ ଜାତୀୟ ପତାକାକୁ ବିଦେଶୀ ସରକାର ସହିପାରୁ ନାହାନ୍ତି । ଏହା ଉପଲବ୍ଧି କରି ସ୍ୱାଧୀନତାକାମୀ ପ୍ରତ୍ୟେକ ଭାରତୀୟ ଚରମ ତ୍ୟାଗ ସ୍ୱୀକାର କରି ଜାତୀୟ ପତାକାର ଟେକ ରଖନ୍ତୁ ।

ନିଖିଳ ଭାରତ କଂଗ୍ରେସ କମିଟି ନାଗପୁରରେ ଅନୁଷ୍ଠିତ ହୋଇ ଏହି ଝଣ୍ଡା ସତ୍ୟାଗ୍ରହକୁ ଏକ ମହାଭାରତୀୟ ସତ୍ୟାଗ୍ରହରେ ପରିଣତ ପାଇଁ ସିଦ୍ଧାନ୍ତ କଲେ । ତଦନୁଯାୟୀ ଭାରତର ବିଭିନ୍ନ ପ୍ରଦେଶରୁ ବହୁ ସତ୍ୟାଗ୍ରହୀ ନାଗପୁର ଆସିଲେ । ସତ୍ୟାଗ୍ରହର ସପରିଚାଳନା ଦାୟିତ୍ୱ ଶ୍ରୀ ଵିଠଲଭାଇ ପଟେଲ, ବଲ୍ଲଭଭାଇ ପଟେଲ ଓ ଆଚାର୍ଯ୍ୟ ବିନୋବାଜୀଙ୍କ ଉପରେ ନ୍ୟସ୍ତ ହେଲା । ଅସହଯୋଗ ଆନ୍ଦୋଳନ ସଂକ୍ରାନ୍ତରେ ମହାତ୍ମାଗାନ୍ଧୀ ୧୯୨୩ ମାର୍ଚ୍ଚ ୧୮ ତାରିଖରେ ୬ ବର୍ଷ ପାଇଁ କାରାଦଣ୍ଡରେ ଦଣ୍ଡିତ ହୋଇଥିବାରୁ ତାଙ୍କର ମୁକ୍ତି ଦାବୀ କରି ପ୍ରତି ମାସ ୧୮ ତାରିଖକୁ ଗାନ୍ଧୀ ଦିବସ ରୂପେ ଦେଶବାସୀ ପାଳନ କରି ଆସୁଥିଲେ । ତଦନୁଯାୟୀ ଜୁଲାଇ ୮ ତାରିଖ ଗାନ୍ଧୀ ଦିବସରେ ଠୁଳ ହୋଇଥିବା ସମସ୍ତ ସତ୍ୟାଗ୍ରହୀ ସମବେତ ଭାବରେ ନିଷିଦ୍ଧାଞ୍ଚଳରେ ପ୍ରବେଶ କରିବେ ବୋଲି ସତ୍ୟାଗ୍ରହ ସଂଚାଳନା ମଣ୍ଡଳୀ ଆଗରୁ ଘୋଷଣା କରିଦେଲେ । ଆନନ୍ଦ ଓ ବିସ୍ମୟର କଥା ଯେ ସେହି ତାରିଖରୁ ଜାରି କରାଯାଇଥିବା ନିଷେଧାଜ୍ଞା ସରକାର ଉଠାଇ ନେଲେ । ଝଣ୍ଡା ସତ୍ୟାଗ୍ରହ ଜୟଯୁକ୍ତ ହେଲା । ମୌଲନା ଆଜାଦଙ୍କ ସଭାପତିତ୍ୱରେ ଦିଲ୍ଲୀରେ ଅନୁଷ୍ଠିତ କଂଗ୍ରେସର ଏକ ବିଶେଷ ଅଧିବେଶନ ଝଣ୍ଡା ସତ୍ୟାଗ୍ରହର ସଫଳତା ପାଇଁ ସତ୍ୟାଗ୍ରହୀମାନଙ୍କୁ ସଶ୍ରଦ୍ଧ ସମ୍ମାନ ଜ୍ଞାପନ କଲେ ।

ଏହି ସତ୍ୟାଗ୍ରହର ପରିଣତି ବିଶେଷ ସୁଦୂର ପ୍ରସାରୀ ହେଲା । ଜାତୀୟ ପତାକାର ମହତ୍ୱ ଅଧିକରୁ ଅଧିକ ପରିବ୍ୟାପ୍ତ ହେବାକୁ ଲାଗିଲା । ଜାତୀୟ ପତାକାକୁ ନିଜର ପ୍ରାଣ ବିନିମୟରେ ରକ୍ଷା କରିବା ପାଇଁ ଚକ୍ରବ୍ୟୁହାକାର ପୀଠ ପ୍ରସ୍ତୁତି, ସ୍ୱୟଂ ସେବକ ତାଲିମ, ପତାକା ବନ୍ଦନାର ବିଧିବିଧାନ ଇତ୍ୟାଦିର ବ୍ୟବସ୍ଥା ପାଇଁ କଂଗ୍ରେସରେ 'ହିନ୍ଦୁସ୍ଥାନୀ ସେବାଦଳ' ଶାଖା ସୃଷ୍ଟି ହେଲା ।

## ଶିଖମାନଙ୍କ ଆପତ୍ତି ଓ ପରିଣତି

ଜାତୀୟ ପତାକାର ବ୍ୟବହାରକୁ ଖର୍ବ କରିଦେବା ଲକ୍ଷ୍ୟରେ ଉପାୟାନ୍ତର ଖୋଜୁଥିଲାବେଳେ ସରକାରୀ ଭେଦ ନୀତିର ଆୟୁଧ ରୂପେ ଉଭାହେଲେ ଶିଖ ସମାଜ । ସରକାରୀ ହୀନ ଚକ୍ରାନ୍ତରେ ପ୍ରରୋଚିତ ହୋଇ କେତେକ ସାମ୍ପ୍ରଦାୟିକତାବାଦୀ ଶିଖ ତ୍ରିରଙ୍ଗ ପତାକାରେ ସ୍ୱତନ୍ତ୍ର ସ୍ଥାନ ଦାବୀ କରି ଏପରିକି ଅଧିକା କଳା ରଙ୍ଗର ପ୍ରସ୍ତଟିଏ ଯୋଡ଼ି ଚାରି ରଙ୍ଗିଆ ପତାକା ଉଠାଇବାକୁ ଲାଗିଲେ । ୧୯୨୯ ମସିହା ଲାହୋର କଂଗ୍ରେସରେ କଂଗ୍ରେସର ଶିଖ ଗୋଷ୍ଠୀ ଜାତୀୟ ପତାକାକୁ ମୂଳକରି ଉପୁଜିଥିବା ବିଭ୍ରାଟର ସମାଧାନ ପାଇଁ ନିଷ୍ପତ୍ତି ଲୋଡ଼ିଲେ । ମାତ୍ର ଲବଣ ସତ୍ୟାଗ୍ରହ ପାଇଁ ଦେଶବାସୀଙ୍କୁ ପ୍ରସ୍ତୁତ କରୁଥିବା ଦୃଷ୍ଟିରୁ କଂଗ୍ରେସ ସେଥିପ୍ରତି ଦୃଷ୍ଟି ଦେଇ ପାରିଲେ ନାହିଁ । ଅଧିକନ୍ତୁ ଶିଖ ସମାଜକୁ ମହାତ୍ମାଗାନ୍ଧୀ ସ୍ପଷ୍ଟ ଜଣାଇଦେଲେ ଯେ ଶିଖ ସମାଜ ବିରାଟ ହିନ୍ଦୁ ଧର୍ମର ଏକ ଅଂଶ ବିଶେଷ । ଏହା ସେମାନେ ସ୍ୱୀକାର ନ କଲେ ସଂଖ୍ୟା ଲଘିଷ୍ଠ ଗୋଷ୍ଠୀରେ ହିଁ ରହିବେ । ଯାହା ହେଉ ଜାତୀୟ ପତାକାରେ ସେମାନଙ୍କ ପାଇଁ ସ୍ଥାନ ଅଛି । ବର୍ଣ୍ଣବିଦ୍ୱେଷ ବିଷ ବପନ କରୁଥିବା ବିଦେଶୀ ସରକାରର ଚକ୍ରାନ୍ତ ପ୍ରତି ସଚେତନ ରହିବାକୁ ଗାନ୍ଧିଜୀ ଶିଖମାନଙ୍କୁ ଦୃଢ଼ ଚେତାବନୀ ଶୁଣାଇଥିଲେ ।

ଲବଣ ସତ୍ୟାଗ୍ରହର ଅବସାନ ପରେ ଶିଖମାନଙ୍କ ଦାବୀ ପୁଣି ଉତ୍‌ଥାପିତ ହେବାରୁ ୧୯୩୧ ଅପ୍ରେଲ ୧ ତାରିଖରେ କରାଚି ହରଗୃନ୍ଦ ନଗରରେ ଅନୁଷ୍ଠିତ କଂଗ୍ରେସର କାର୍ଯ୍ୟକାରୀ କମିଟି ପତାକା ବିଭ୍ରାଟର ସମାଧାନ ପାଇଁ ଏକ ପତାକା-କମିଟି ଗଠନ କଲେ ।

## ଗୁଣାତ୍ମକ ପତାକା

ବହୁ ଆଲୋଚନା ପର୍ଯ୍ୟାଲୋଚନା ପରେ ପତାକା କମିଟି ସୁପାରିଶ କଲେ ଯେ ତ୍ରିରଙ୍ଗ ପତାକାର ଆଦ୍ୟ କେଶରୀ, ମଧ୍ୟ ଭାଗରେ ଶ୍ୱେତ ଓ ପ୍ରାନ୍ତ ଭାଗରେ ସବୁଜ ରଙ୍ଗ ରହିବ । ଛତ୍ରପତି ଶିବାଜୀ କେଶରୀ ରଙ୍ଗର ପତାକା ବ୍ୟବହାର କରୁଥିଲେ । ଏହି ରଙ୍ଗ ସାହସ ଓ ତ୍ୟାଗର ପ୍ରତୀକ ହେବ । ଶ୍ୱେତ ରଙ୍ଗ ଶିକ୍ଷା ଦେବ ସତ୍ୟ, ଶାନ୍ତି ଓ ପବିତ୍ରତା । ସବୁଜ ରଙ୍ଗରୁ ବୀରତ୍ୱ, ବିଶ୍ୱାସ, ଶ୍ରଦ୍ଧା ଓ ଭକ୍ତିର ଶିକ୍ଷା ମିଳିବ ।

ପତାକାର ମଧ୍ୟ ଭାଗରେ ଜନସାଧାରଣଙ୍କ ଆଶା ଭରସାର ମୂର୍ତ୍ତିମନ୍ତ ପ୍ରତୀକ ରୂପେ ଚରଖାର ସ୍ଥାନ ଅପରିବର୍ତ୍ତନୀୟ ରହିବ । ନୀଳ ରଙ୍ଗର କାଳିରେ (Blue black) ଚରିତ୍ର ଚିହ୍ନିତ ହେବ । ପତାକାର ଦୈର୍ଘ୍ୟ-ପ୍ରସ୍ଥର ଅନୁପାତ ୩ରେ ୨ ହେବ । ପତାକାର ସବୁଜ ରଙ୍ଗ ମନକୁ ଚିର ହରିତ ରଖିବା ପାଇଁ ଓ ଶ୍ରମଦାନରେ ଧରିତ୍ରୀମାତାକୁ ଶସ୍ୟ ଶ୍ୟାମଳା ରଖିବା ପାଇଁ ସୂଚନା ଦେବ । ବନସ୍ପତି ଓ ମୃତ୍ତିକା ସହିତ ମାନବର ପ୍ରାକୃତିକ ସଂପଦକୁ ମଧ୍ୟ ଦୃଢ଼ୀଭୂତ କରିବ ।

୧୯୩୧ ମସିହା ଅଗଷ୍ଟ ମାସରେ ବମ୍ବେରେ ଅନୁଷ୍ଠିତ ନିଖିଳ ଭାରତ କଂଗ୍ରେସ କମିଟି ଜାତୀୟ ପତାକାର ଏହି ରୂପାନ୍ତର ଓ ଅର୍ଥାନ୍ତରକୁ ପୁରାପୁରି ଗ୍ରହଣ କରିନେଲେ । **ଜାତୀୟ ପତାକାରୁ ସମ୍ପ୍ରଦାୟଗତ ଅର୍ଥ ଅର୍ଥାନ୍ତର ସଂପୂର୍ଣ୍ଣ ଲୋପ ପାଇଁ ଜାତୀୟ ପତାକାକୁ ଏହି ଯେଉଁ ମାନବୀୟ ସଦ୍‌ଗୁଣ** ରାଜିର ଦ୍ୟୋତକ କରାଗଲା ତହିଁରେ ସମସ୍ତେ ଏକମତ ହେଲେ । ଶିଖମାନଙ୍କର ଦାବୀ ସ୍ୱତଃ ଲୋପ ପାଇଗଲା ଓ ଭବିଷ୍ୟତରେ ସେ ପ୍ରକାର ଦାବୀ ପାଇଁ ଆଦୌ ସୁଯୋଗ ରହିଲା ନାହିଁ । ଏହି ଗୁଣାତ୍ମକ ପତାକା ସହ ଦେଶବାସୀ ବହୁଳ ପରିଚିତ ହେବା ଲକ୍ଷ୍ୟରେ ୧୯୩୧ ଅଗଷ୍ଟ ୩୦ ତାରିଖକୁ ପତାକା ପୁଣ୍ୟାହ ରୂପେ ପାଳିବା ପାଇଁ ଦେଶବାସୀଙ୍କୁ କଂଗ୍ରେସ ନିର୍ଦ୍ଦେଶ ଦେଲେ । ଭାରତ ସାରା ବିଜୟୋଲ୍ଲାସରେ ଏହି ଗୁଣାତ୍ମକ ତ୍ରିରଙ୍ଗ ପତାକାକୁ ଉତ୍ତୋଳନ କରି ଦେଶବାସୀ ପତାକା ପୁଣ୍ୟାହ ପାଳନ କଲେ ।

## ସ୍ୱାଧୀନତାପ୍ରାପ୍ତି ଓ ରାଷ୍ଟ୍ରୀୟ ନିଶାଣ

ଲବଣ ସତ୍ୟାଗ୍ରହର ଅବସାନ ପରେ ଅନ୍ତିମ ସଂଗ୍ରାମ ପାଇଁ ପ୍ରସ୍ତୁତି ଲକ୍ଷ୍ୟରେ ମହାତ୍ମାଗାନ୍ଧୀ ପୂର୍ଣ୍ଣପ୍ରାଣରେ ରଚନାତ୍ମକ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଇବାକୁ ଲାଗିଲେ । ଅସ୍ପୃଶ୍ୟତା ନିବାରଣ, ସଂପ୍ରଦାୟିକ ଏକତା, ଖଦୀ ପ୍ରସାର, ନିଶାନିବାରଣ, ସ୍ୱଭାଷା ପ୍ରେମ, ମୌଳିକଶିକ୍ଷା, ସାମାଜିକ ସଫାଇ, ଗ୍ରାମୋଦ୍ୟୋଗ, ମହିଳା ଛାତ୍ର, କୃଷକ ଓ ଆଦିବାସୀ ସଂଗଠନ ଇତ୍ୟାଦି କାର୍ଯ୍ୟକ୍ରମ ମାଧ୍ୟମରେ ବହୁ ପରୀକ୍ଷିତ ସତ୍ୟାଗ୍ରହୀମାନଙ୍କ ଦ୍ୱାରା ମତପ୍ରକାଶର ସ୍ୱାଧୀନତା ଦାବୀକରି ଯୁଦ୍ଧବିରୋଧୀ ଧ୍ୱନି ସତ୍ୟାଗ୍ରହ ୧୯୪୦ ମସିହାରେ ପରିବ୍ୟାପ୍ତି ହେଲା । ପରିଶେଷରେ ୧୯୪୨ ଅଗଷ୍ଟ ୮ତାରିଖରେ ବମ୍ବେ ଗୋଆଲିଆ ଟ୍ୟାଙ୍କ୍ ମଇଦାନରେ ନିଖିଳ ଭାରତ କଂଗ୍ରେସ କମିଟି ଭାରତରୁ ଇଂରେଜ ଶାସନର ଚୂଡ଼ାନ୍ତ ଅବସାନ ଦାବୀକରି ଭାରତ–ଛାଡ଼ (କ୍ୱିଟ୍ ଇଣ୍ଡିଆ) ପ୍ରସ୍ତାବ ଗ୍ରହଣ କଲେ । ଏହି ବିରାଟ ଆନ୍ଦୋଳନର ଶୁଭାରମ୍ଭ ପାଇଁ ମନୋନୀତ ସେନାପତି ମହାତ୍ମାଗାନ୍ଧୀଙ୍କର ଆହ୍ୱାନକୁ ସୁଯୋଗ ନଦେଇ ଇଂରେଜ ସରକାର ୯ ତାରିଖ ପ୍ରାକ୍‌କାଳରୁ ଭାରତ ସାରା ତୋଫାନୀ ଆକ୍ରମଣ ଆରମ୍ଭ କରିଦେଲେ । ଗାନ୍ଧୀଜିଙ୍କ ପ୍ରମୁଖ ନେତୃବୃନ୍ଦଙ୍କଠାରୁ ଆରମ୍ଭକରି ଗାଁ ସହରର ବହୁ ଜନସାଧାରଣ କର୍ମୀ ଗିରଫ ହୋଇଗଲେ । ଏହା ଜନସାଧାରଣଙ୍କ ମଧ୍ୟରେ ଯେଉଁ ଦୁର୍ଦ୍ଦମନୀୟ ପ୍ରତିକ୍ରିୟା ସୃଷ୍ଟିକଲା ସେମାନେ ଆନ୍ଦୋଳନର ବହ୍ନି ପ୍ରଜ୍ୱଳନ କରିବାକୁ ଲାଗିଲେ । ସ୍ଥାନେ ସ୍ଥାନେ ଲୋକେ ନିଜକୁ ସ୍ୱାଧୀନ ଘୋଷଣା କରି ସରକାରୀ ଦପ୍ତରମାନଙ୍କରେ ଜାତୀୟ ପତାକା ଉଡାଇଦେଲେ । ଏହି ଆନ୍ଦୋଳନକୁ ପ୍ରତିହତ କରିବା ପାଇଁ ବିଦେଶୀ ପ୍ରଶାସନ କଠୋରରୁ କଠୋରତମ ପନ୍ଥା ଅବଲମ୍ବନ କରିଥିଲେ ମଧ୍ୟ ଭାରତବାସୀ ତାହାକୁ ଭ୍ରୁକ୍ଷେପ ନକରି ଜେଲ ଜୋରିମାନା, ଫାଶୀ, ଗୁଳି ଇତ୍ୟାଦିର ଶିକାର ହୋଇ ସ୍ୱାଧୀନତା ପ୍ରାପ୍ତିର ଯେଉଁ ପରାକାଷ୍ଠା ପ୍ରଦର୍ଶନ କଲେ ତହିଁର ପଟାନ୍ତର ନାହିଁ ।

ଅବଶେଷରେ ଜନତାର ବିଜୟ ହେଲା । ୧୯୪୬ ଫେବ୍ରୁୟାରୀରେ ଭାରତୀୟ ନୌବାହିନୀ ବିଦ୍ରୋହ ଘୋଷଣା କଲେ । ବିଲାତ ପାର୍ଲିଆମେଣ୍ଟରେ ଶ୍ରମିକ ଦଳ ଭାରତକୁ ସ୍ୱାଧୀନତା ଦେବା ନୀତିରେ ବିଜୟୀ ହେଲେ । ଭାରତକୁ ପରାଧୀନ ରଖିବା ଆଉ ସମ୍ଭବପର ହେଲାନାହିଁ । ୧୯୪୬ ଡ଼ିସେମ୍ବର ୯ ତାରିଖରେ ସ୍ୱାଧୀନ ଭାରତର ଶାସନ ବିଧାନ ପ୍ରଣୟନ ପାଇଁ ଶାସନ ବିଧାୟକ ସଭା ଗଠିତ ହେଲା ।

ସ୍ୱାଧୀନ ଭାରତ ପାଇଁ ରାଷ୍ଟ୍ରୀୟ ନିଶାଣର ରୂପରେଖ ନିର୍ଣ୍ଣୟ ପାଇଁ ମୌଲାନା ଆଜାଦ୍, ଶ୍ରୀମତୀ ସରୋଜିନୀ ନାଇଡୁ, ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ, ଶ୍ରୀ କେ. ଏମ. ମୁନ୍‌ସୀ, ସର୍ଦ୍ଦାର ପାନିକର, ଡଃ. ଆମ୍ବେଦକର, ଶ୍ରୀଫ୍ରାଙ୍କ ଏନ୍ଥୋନୀ, ସର୍ଦ୍ଦାର ଉଜ୍ଜ୍ୱଳ ସିଂ, ଶ୍ରୀ ଜି. ଏନ୍. ମିତ୍ରଙ୍କୁ ନେଇ ଶାସନ ବିଧାୟକ ସଭା ୧୯୪୭ ଜୁନ୍ ୨୩ ତାରିଖରେ ପତାକା କମିଟି ଗଠନ କଲେ । ଗଭୀର ଅନୁଧ୍ୟାନ ପୂର୍ବକ କମିଟି ପ୍ରସ୍ତାବ ଦେଲେ ଯେ ଯେଉଁ ପତାକାର ପ୍ରେରଣା ଲାଭକରି ଓ ଯେଉଁ ପତାକା ପାଇଁ ଅସୀମ ତ୍ୟାଗ ଭାରତବାସୀ ସ୍ୱୀକାର କରିଛନ୍ତି ସେହି କେଶରୀ, ଶ୍ୱେତ ଓ ସବୁଜ ରଙ୍ଗର ତ୍ରିରଙ୍ଗ ପତାକା ସ୍ୱାଧୀନ ଭାରତର ରାଷ୍ଟ୍ରୀୟ ନିଶାଣ ହୋଇ ରହିବ । କେବଳ ଚରଖାର ପୂର୍ଣ୍ଣାବୟବ ଚିତ୍ର ବଦଳରେ ଚକ୍ରଟିକୁ ରଖି ଅବଶିଷ୍ଟାଂଶକୁ ବାଦ୍ ଦିଆଯିବ । ଏହି ପରିବର୍ତ୍ତନକୁ ବୁଝାଇବାକୁ ଯାଇ କମିଟି ମତବ୍ୟକ୍ତ କଲେ ଯେ ପୂର୍ଣ୍ଣାବୟବ ଚରଖା ଚିହ୍ନିତ ପତାକା ଉଡୁଥିବାବେଳେ ବାୟୁରେ ଆନ୍ଦୋଳିତ ହୋଇ ଚରଖାର ଚକ୍ରଟି ଦର୍ଶକଙ୍କୁ କେତେବେଳେ ବାମପଟେ ଓ କେତେବେଳେ ଡାହାଣ ପଟେ ଦୃଷ୍ଟ ହୁଏ । ଏହା ଚିତ୍ରର ବିକଳ୍ପ ମାର୍ଗ ଦର୍ଶନ କଳା ଦୃଷ୍ଟିର ବିରୋଧୀ । ଏହି ବିରୋଧଭାବ ସୃଷ୍ଟି କରୁଥିବା ବେଣ୍ଟ ଓ ମାଲ୍‌କୁ ତେଣୁ ବାଦ୍ ଦିଆଯାଇଛି । ପୁଣି ସତ୍ୟ ଅହିଂସାର ଅଦ୍ୱିତୀୟ ପ୍ରତୀକ ଭଗବାନ ବୁଦ୍ଧଙ୍କ ମହନୀୟ ସ୍ମୃତି ଜାତୀୟ ପତାକାରେ ସନ୍ନିବେଶ କରିବା ପାଇଁ ଅରଟର ଏହି ଚକ୍ରକୁ ୨୪ଟି ଅର ବିଶିଷ୍ଟ ସାରନାଥ ପୀଠରେ ଥିବା ଅଶୋକ ଚକ୍ରର ଅବିକଳ ରୂପ ଦିଆଯାଇଛି । ବନାରସଠୁ ୪ ମାଇଲ ଦୂରବର୍ତ୍ତୀ ସାରନାଥଠାରେ ଭଗବାନ ବୁଦ୍ଧ ସର୍ବ ପ୍ରଥମେ ତାଙ୍କର ଧର୍ମତତ୍ତ୍ୱ ପ୍ରଚାର କରିଥିଲେ । ଏହି ମହନୀୟ ସ୍ମୃତିର ପ୍ରଚାର କଳ୍ପେ ମହାମହିମ ଅଶୋକ ସେଠାରେ ଏକ ଧର୍ମସ୍ତମ୍ଭ ନିର୍ମାଣ କରି ତହିଁରେ ଚକ୍ରକୁ ସ୍ଥାନ ଦେଇଛନ୍ତି । ଅଶୋକ ଚକ୍ର ସତ୍ୟ, ଅହିଂସା, ମୈତ୍ରୀ, ସଦିଚ୍ଛା ଓ ପ୍ରୀତିର ସନ୍ଦେଶ ଯୁଗେ ଯୁଗେ ପ୍ରଚାର କରେ । ତେଣୁ ଅଶୋକ ଚକ୍ରକୁ ବକ୍ଷରେ ଧାରଣ କରି ସ୍ୱାଧୀନତା ସଂଗ୍ରାମକାଳୀନ ଅସୀମ ତ୍ୟାଗ ପୂତ ସେହି ତ୍ରିରଙ୍ଗା ପତାକାକୁ ସ୍ୱାଧୀନ ଭାରତର ରାଷ୍ଟ୍ରୀୟ ନିଶାଣ ରୂପେ ବରଣ ବା ଗ୍ରହଣ କରିବାରେ ଗୌରବ ରହିଛି ।

୧୯୪୭ ଜୁଲାଇ ୨୨ ତାରିଖରେ ପତାକା କମିଟିଙ୍କ ସୁପାରିଶକୁ ନିର୍ବିବାଦରେ ଗ୍ରହଣ କରି କହିଲେ ଯେ ସମାନ୍ତରାଳ ଓ ସମ ଆୟତନ ବିଶିଷ୍ଟ ଗାଢ଼ କେଶରୀ, ଶ୍ୱେତ ଓ ଗାଢ ସବୁଜ

ରଙ୍ଗର ଭ୍ରମାନ୍ୱୟ ସମାବେଶରେ ପ୍ରସ୍ତୁତ ତ୍ରିରଙ୍ଗ ଝଣ୍ଡା ଭାରତର ରାଷ୍ଟ୍ରୀୟ ନିଶାଣ ହେବ । ମଧ୍ୟଭାଗର କେନ୍ଦ୍ରରେ ଚରଖାର ପ୍ରତିନିଧି ସ୍ୱରୂପ ଗାଢନୀଳ କାଳିରେ ଏକ ଚକ୍ର ଚିତ୍ରିତ ହେବ । ସାରନାଥ ଅଶୋକ ସ୍ତମ୍ଭର ସିଂହ ମୁଦ୍ରାରେ ଯେଉଁ ଚକ୍ର ଖୋଦିତ ଅଛି ପତାକାର ଚକ୍ରର ରୂପ ଅବିକଳ ସେହିପରି ହେବ । ଶ୍ୱେତ ପ୍ରସ୍ଥର ପ୍ରସ୍ଥ ଯେତିକି ଚକ୍ରର ବ୍ୟାସ ପ୍ରାୟ ସେତିକି ରହିବ । ପତାକାର ଦୈର୍ଘ୍ୟ ୩ ହେଲେ ପ୍ରସ୍ଥ ୨ ରହିବ । ପତାକା ରେଶମ କିମ୍ବା ଖଦୀ କପଡାରେ ପ୍ରସ୍ତୁତ ହେବ ।

ପଣ୍ଡିତ ଜବାହରଲାଲଙ୍କର ଆଗତ ଏହି ପ୍ରସ୍ତାବକୁ ସଭା ସମର୍ଥନ ଜଣାଇବା ପରେ ଭାରତୀୟ ମୁସଲମାନଙ୍କ ତରଫରୁ ଚୌଧୁରୀ ଖଲୀକୁଜ୍‌ଜାମନ, ଦେଶୀୟ ରାଜ୍ୟ ସମୂହର ପ୍ରତିନିଧି ଶ୍ରୀ ମୋହନ ସିଂ ମେହେଟ୍ଟା, ଭାରତୀୟ ଖ୍ରୀଷ୍ଟିୟାନଙ୍କ ତରଫରୁ ଡଃ ଏଚ. ସି. ମୁଖାର୍ଜୀ, ଆଦିବାସୀ ପ୍ରତିନିଧି ଶ୍ରୀ ଜୟପାଳ ସିଂ, ଆଙ୍ଗ୍ଲୋ ଇଣ୍ଡିଆନଙ୍କ ପ୍ରତିନିଧି ଶ୍ରୀ ଫ୍ରାଙ୍କ୍ ଏଣ୍ଟୋନୀ, ଶିଖ ସମାଜ ତରଫରୁ ଜ୍ଞାନୀ ଗୁରୁମୁଖ ସିଂ, ଅନୁନ୍ନତ ସଂପ୍ରଦାୟର ପ୍ରତିନିଧି ଶ୍ରୀ ଖାଣ୍ଡେକର, ଓଡ଼ିଶାର ପ୍ରତିନିଧି ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଓ ପରିଶେଷରେ ବଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀମତୀ ସରୋଜିନୀ ନାଇଡୁ ଭାରତର ଏହି ରାଷ୍ଟ୍ରୀୟ ନିଶାଣ ପ୍ରତି ଆନୁଗତ୍ୟ ଜଣାଇ ଭାଷଣ ଦେବା ପରେ ପ୍ରସ୍ତାବଟି ନିର୍ବିବାଦରେ ଗୃହୀତ ହେଲା । ପୂଜ୍ୟ ବାପୁଜୀଙ୍କ ବଳିଷ୍ଠ ନେତୃତ୍ୱ ବଳରେ ନିପୀଡ଼ିତ ଭାରତ ଜାତି ସ୍ୱଳ୍ପକାଳ ମଧ୍ୟରେ ଦୀର୍ଘ ୨ଶତ ବର୍ଷର ପରାଧୀନତାରୁ ମୁକ୍ତିଲାଭ କରି ସ୍ୱାଧୀନ ରାଷ୍ଟ୍ରୀୟ ଝଣ୍ଡା ଉତ୍ତୋଳନର ସୁଯୋଗ ଲାଭକରି ଥିବାରୁ ତାଙ୍କପ୍ରତି କୃତଜ୍ଞତା ଜ୍ଞାପନ କରି ସଭା ଅନ୍ୟ ଏକ ପ୍ରସ୍ତାବ ଗ୍ରହଣ କଲେ । ସଭ୍ୟମାନେ ଅଧ ମିନିଟ୍ ନୀରବ ଦଣ୍ଡାୟମାନ ପୂର୍ବକ ସ୍ୱାଧୀନ ଭାରତୀୟମାନେ ଉଦ୍ଦିଷ୍ଟ ଜାତୀୟ ପତାକା ପ୍ରତି ସମ୍ମାନ ପ୍ରଦର୍ଶନ କଲେ । ଗୋଟିଏ ସିଲ୍କ ଓ ଅନ୍ୟଟି ଖଦୀ ବସ୍ତ୍ରରେ ପ୍ରସ୍ତୁତ ପତାକା ସ୍ୱାଧୀନତା ଲାଭର ଶୁଭ ମୁହୂର୍ତ୍ତରେ ବ୍ୟବହାର ପରେ ରାଷ୍ଟ୍ରୀୟ ମ୍ୟୁଜିଅମ୍‌ରେ ସମ୍ମାନ ସୁରକ୍ଷିତ ହେଲା ।

## ବିଜୟ ବୈଜୟନ୍ତୀ

୧୯୪୭ ଅଗଷ୍ଟ ୧୫ । ଭାରତ ଇତିହାସରେ ଏକ ଅବିସ୍ମରଣୀୟ ଦିବସ । ଆମ୍ଭମାନଙ୍କର ଚିର ଆକାଂକ୍ଷିତ ସ୍ୱାଧୀନତା ଏହି ପବିତ୍ର ଦିବସରେ ଆମେ ଲାଭକଲୁ । ୧୪ ତାରିଖ ମଧ୍ୟ ରାତ୍ରରେ ଏକ ସ୍ୱତନ୍ତ୍ର ଉତ୍ସବରେ ବ୍ରିଟିଶ ସରକାରଙ୍କ ପ୍ରତିନିଧି ଭାରତର ବଡଲାଟ ଲର୍ଡ ମାଉଣ୍ଟବ୍ୟାଟେନ ଭାରତୀୟ ନେତୃମଣ୍ଡଳୀଙ୍କୁ କ୍ଷମତା ହସ୍ତାନ୍ତର କଲେ । ପଣ୍ଡିତ ଜବାହରଲାଲ ନେହେରୁ ଭାରତର ସର୍ବସମ୍ମତ ପ୍ରତିନିଧି ରୂପେ ସ୍ୱାଧୀନତା ପ୍ରାପ୍ତି ସନନ୍ଦ ପତ୍ର ଗ୍ରହଣ କରି ବିଶ୍ୱବାସୀଙ୍କ ଉଦ୍ଦେଶ୍ୟରେ ଏକ ଆବେଗଭରା ବକ୍ତୃତାରେ କହିଲେ ଯେ ବିଶ୍ୱବାସୀ ଯେତେବେଳେ ସୁସୁପ୍ତ ଭାରତ ସ୍ୱାଧୀନତାର ପୁଣ୍ୟପୀଠରେ ଚିର ଜାଗ୍ରତ ଲାଭ କରୁଛି । "ଏଟ୍ ଦି ଷ୍ଟ୍ରୋକ୍ ଅଫ୍ ମିଡ୍‌ନାଇଟ୍ ଆୱାର ହୋଏନ୍ ଦି ୱାର୍ଲ୍ଡ ସ୍ଲୀପସ୍, ଇଣ୍ଡିଆ ଉଇଲ ଏୱାକ୍ ଟୁ ଲାଇଫ୍ ଆଣ୍ଡ ଫ୍ରିଡମ୍" । ୧୫ ତାରିଖ ପୁଣ୍ୟ ପ୍ରାକ୍‌କାଳରେ ସ୍ୱାଧୀନତାର ଶୁଭାରମ୍ଭ ଘୋଷଣା କରି ପଣ୍ଡିତ ନେହେରୁ ଲକ୍ଷ ଲକ୍ଷ ଲୋକଙ୍କ ସମାବେଶରେ ଇତିହାସ ପ୍ରସିଦ୍ଧ ଦିଲ୍ଲୀ ଲାଲକିଲ୍ଲାର ଶୀର୍ଷ ଦେଶରେ ଅଶୋକ ଚକ୍ର ଲାଞ୍ଛିତ ଭାରତର ସେହି ରାଷ୍ଟ୍ରୀୟ ନିଶାଣକୁ ସସମ୍ମାନ ଉତ୍ତୋଳନ କରି ଏକ ଆବେଗଭରା କଣ୍ଠରେ ଉଦ୍‌ବୋଧନ ଦେଲେ ଯେ ନେତାଜୀ ସୁଭାଷଚନ୍ଦ୍ରଙ୍କ ଅଭିଳଷ ଆଜି ପୂର୍ଣ୍ଣ ହୋଇଛି । ଭାରତର ଶେଷ ସ୍ୱାଧୀନ ମୋଗଲ ସମ୍ରାଟ ବାହାଦୁର ଶାହଙ୍କୁ ପ୍ରଥମ ଜାତୀୟ ଜାଗରଣ ବେଳେ ବନ୍ଦୀକରି ବିଦେଶୀ ସରକାର ଲାଲକିଲ୍ଲାରେ ରଖିଥିଲେ । ତେଣୁ ଭାରତର ସ୍ୱାଧୀନତା ରବି ଲାଲକିଲ୍ଲାରେ ଅସ୍ତମିତ ହୋଇଯାଇଛି ଅନୁଭବ କରି ସଶସ୍ତ୍ର ବିପ୍ଳବ ଦ୍ୱାରା ଭାରତକୁ ଇଂରେଜ ଶାସନ କବଳରୁ ମୁକ୍ତ କରିବା ଲକ୍ଷ୍ୟରେ ତାଙ୍କ ସଂଗଠିତ ଆଜାଦ୍ ହିନ୍ଦ ଫୌଜକୁ ନେତାଜୀ ଦିଲ୍ଲୀ ଚଲୋ ଆହ୍ୱାନ ଦେଇ ନିର୍ଦ୍ଦେଶ କରିଥିଲେ ଯେ ଲାଲକିଲ୍ଲାରେ ହିଁ ପ୍ରଥମ ବିଜୟ ବୈଜୟନ୍ତୀ ଉତ୍ତୋଳନ କରାଯିବ । ଆଜି ତାହାହିଁ ହୋଇଥିବାରୁ ଦେଶବାସୀ ଅପୂର୍ବ ବିଜୟୋଲ୍ଲାସ ଲାଭ କରିଥିଲେ । ସେଦିନ ପୁରପଲ୍ଲୀ, ସହର, ନଗର, ଦୋକାନ ବଜାର ଜାତୀୟ ପତାକା ଉତ୍ତୋଳନର ସୁସମାବେଶରେ ଯେଉଁ ବିଜୟୋଲ୍ଲାସ ଦେଖାଦେଇଥିଲା ତାହା ଅଭୂତ ପୂର୍ବ ।

## ପତାକାର ମର୍ଯ୍ୟାଦା ରକ୍ଷା

ରାଷ୍ଟ୍ରୀୟ ନିଶାଣର ଅପବ୍ୟବହାରକୁ ପ୍ରଶ୍ରୟ ନଦେବା ପାଇଁ ସରକାରୀ ସ୍ତରରେ ବହୁବିଧି ବ୍ୟବସ୍ଥା ପ୍ରଣୀତ ହୋଇଛି । ସକାଳେ ଉତ୍ତୋଳିତ ହୋଇ ସୂର୍ଯ୍ୟାସ୍ତ ପୂର୍ବରୁ ପତାକା ନମିତିକୃତ ହେବ । ଉତ୍ତୋଳିତ ପତାକା ଓ ପୀଠର ସୁରକ୍ଷା ଓ ମର୍ଯ୍ୟାଦା ପାଇଁ ସ୍ୱୟଂ ସେବକମାନେ ପହରା ଦେବେ । କେବଳ ଜାତୀୟ ଦିବସରେ ରାଷ୍ଟ୍ରୀୟ ପତାକା ଉତ୍ତୋଳିତ ହେବ । ଉଡ଼ିଲାବେଳେ ପତାକାର କେଶରୀ ଭାଗ ଉପରକୁ ରହିବ । ସ୍ତମ୍ଭ, ପତାକା ଓସାରର ୧୦ ଗୁଣ ହେବ । ସ୍ତମ୍ଭର ୧/୧୦ ମୋଟା ହେବ । ରଜ୍ଜୁ ଶ୍ୱେତ ସୂତାରେ ପ୍ରସ୍ତୁତ ହେବ ଓ ସ୍ତମ୍ଭର ୨ଗୁଣ ହେବ । ବର୍ଷା, ତୋଫାନ ଇତ୍ୟାଦି ପାଗରେ ପତାକା ଛିଡ଼ି ଉଡ଼ି ଯିବାର ଆଶଙ୍କା ଥିବାରୁ ବିଧି ରକ୍ଷା ପାଇଁ ଉତ୍ତୋଳନ ପରେ ନମିତକରଣ କରାଯିବ । କୌଣସି ରାଷ୍ଟ୍ରନାୟକଙ୍କ ବିୟୋଗରେ ରାଷ୍ଟ୍ରୀୟ ଶୋକ ସୂଚନା ସ୍ୱରୂପ ପତାକା ସ୍ତମ୍ଭର ଅଗ୍ରଭାଗରୁ କିଛି ଖସିଆସି ଉଡାଯାଏ । ଅନ୍ୟ ସମୟରେ ବାନ୍ଧିବା ଦୋଷରୁ ବେଳେବେଳେ ପତାକା ଓଲଟା ଉଡେ । ଏହା ଗୃହ ବିପ୍ଳବ (ସିଭିଲ ୱାର)ର ସୂଚକ ହୋଇଥିବାରୁ ସେଥିପ୍ରତି ସଦା ସତର୍କ ରହିବ । ସଭା ସମିତିରେ ସଭାପତି ମଞ୍ଚର ପୃଷ୍ଠ ଦେଶରେ ଡାହାଣ କଡକୁ ପତାକା ରହିବ । ସାଜସଜ୍ଜା ପାଇଁ ପତାକାର ଛବି ବ୍ୟବହାର ହେବ ନାହିଁ । ଶୋଭାଯାତ୍ରାରେ ଅଗ୍ରଣୀ ଡାହାଣ କାନ୍ଧରେ ପତାକା ଧରିବେ । ଛତା ତଳେ ପତାକା ଧରାଯିବନାହିଁ । ପତାକାକୁ ଟେବୁଲକନା ଓ ରୁମାଲ, ବ୍ୟାଗ, ପରଦା ଝାଡଣ ବା କୌଣସି ବସ୍ତୁର ଆଚ୍ଛାଦନ ରୂପେ, ବ୍ୟବସାୟ ବିଜ୍ଞାପନ ପାଇଁ ବା ଲୁଗାର ଧଡ଼ି ରୂପେ ବ୍ୟବହାର କରାଯିବ ନାହିଁ । ଜାତୀୟ ପତାକା ଥାଇ କୌଣସି ଶୋଭାଯାତ୍ରା ଆଗେଇ ଆସୁଥିବାର ଦେଖାଗଲେ ଅପର ମାର୍ଗରୁ ଆସୁଥିବା ନାଗରିକମାନେ ଛିଡା ହୋଇ ପତାକାକୁ ସମ୍ମାନ ପ୍ରଦର୍ଶନ କରିବେ । ଜାତୀୟ ପର୍ବ ଦିନମାନଙ୍କରେ ସର୍ବସାଧାରଣ ନିଜ ବାସ ଭବନରେ, ବ୍ୟବସାୟ ପ୍ରତିଷ୍ଠାନରେ ଓ ଯାନବାହାନରେ ପତାକା ଉଡାଇ ପାରିବେ । ସରକାରଙ୍କ ଅନୁମୋଦନ କ୍ରମେ ରାଷ୍ଟ୍ରପତି, ମନ୍ତ୍ରୀ ପ୍ରମୁଖଙ୍କ ବାସଭବନ, ସଚିବାଳୟ ଓ ସରକାରୀ ଦପ୍ତରମାନଙ୍କରେ ସବୁଦିନ ପତାକା ଉଡ଼ିପାରିବ । ପତାକା

ଓ ରଜ୍ଜୁକୁ ଭୂମି ସ୍ପର୍ଶ କରିବାକୁ ଦିଆଯିବନାହିଁ । ମିଳିତ ଜାତିସଂଘ ଦିବସ ଭଳି ଆନ୍ତର୍ଜାତିକ ଦିବସମାନଙ୍କରେ ବହୁ ବିଭିନ୍ନ ରାଷ୍ଟ୍ରର ପତାକା ଗୋଟିଏ ରଜ୍ଜୁରେ ତଳକୁ ତଳ କିମ୍ବା ଗୋଟିଏ ଧାଡ଼ିରେ ଆଗପଛ ହୋଇ ଉତ୍ତୋଳିତ ହୋଇଥାଏ । ଏହି ବିଶେଷ ଅବସର ମାନଙ୍କରେ ନିଜ ଦେଶର ପତାକାକୁ ଆଗରେ ରଖିବାର ବିଧାନ ରହିଛି । ଦୀର୍ଘଦିନ ବ୍ୟବହାର ପରେ ପତାକା ଛିନ୍ନ, ବିବର୍ଣ୍ଣ ହୋଇ ପଡ଼ିଲେ ତାହାକୁ ଆଉ ବ୍ୟବହାର ନକରି ଶବସଂସ୍କାର କଲାପରି ସସମ୍ମାନ ଭସ୍ମ କରିବ ବା ସମାଧି ଦେବ ।

## କର୍ତ୍ତବ୍ୟବୋଧ

ଜାତୀୟ ପତାକା ଯେଉଁସବୁ ସଦ୍‌ଗୁଣର ପ୍ରତୀକ ତାହା ପୂର୍ବରୁ କୁହାଯାଇଛି । ବିଶେଷତଃ ପତାକାରେ ଅଶୋକ ଚକ୍ରର ସନ୍ନିବେଶ ଆମ ପତାକାର ମହତ୍ୱକୁ ଅଧିକ ମହତ୍ୱ ମଣ୍ଡିତ କରିଛି । ଚରଖାର ପ୍ରତିନିଧି ରୂପେ ଅଶୋକଚକ୍ର ସ୍ୱାଶ୍ରୟୀତା ଶିକ୍ଷା ଦିଏ । ସୁଦର୍ଶନଚକ୍ର ପରି ଅଶୋକଚକ୍ର ଅନ୍ୟାୟର ସଂହାର କରେ । ସେଥିରେ ଥିବା ୨୪ଟି ରେଖା ଅହରାତ୍ର (୨୪ ଘଣ୍ଟା) ଜୀବନର ସୂଚକ । କର୍ମଶୀଳତାହିଁ ଜୀବନ ଓ ତହିଁର ଗତିରୋଧରେ ମୃତ୍ୟୁ—ଏହି ତତ୍ତ୍ୱ ଶିକ୍ଷା ଦିଏ । ସୁଖର ଆତିଶଯ୍ୟରେ ଓ ଦୁଃଖଭାରରେ ଅଧିର ନ ହେବା ପାଇଁ ଚକ୍ର ଶିକ୍ଷା ଦିଏ । ସୃଷ୍ଟିର ପ୍ରାଣକେନ୍ଦ୍ର ସୂର୍ଯ୍ୟଙ୍କପରି ଦୀପ୍ତିମନ୍ତ ହେବାକୁ ଓ ସୃଷ୍ଟିର ନିୟମ ଲଂଘନ ନ କରିବାକୁ ଶିଖାଏ । ଯାନ୍ତ୍ରିକ ଚକ୍ରପରି ଏହା ଯନ୍ତ୍ର ଶିଳ୍ପ ଓ ବିଜ୍ଞାନକୁ ସମର୍ଥନ କରେ । ପ୍ରାଗ୍ ଐତିହାସିକ ଯୁଗ ସୈନ୍ଧବ ସଭ୍ୟତାରୁ ସୌର ଚକ୍ରର ପ୍ରମାଣ ମିଳୁଥିବାରୁ ଓ ଭାରତ, ପାରସ୍ୟ, ମିଶର ଓ ଗ୍ରୀକ୍ ଦେଶରେ ଅତି ପ୍ରାଚୀନ କାଳରୁ ସୌର ପୂଜାର ପ୍ରମାଣ ପାଇ ଐତିହାସିକମାନେ ଚକ୍ର ସହିତ ପଞ୍ଚସହସ୍ର ବର୍ଷର ପ୍ରାଚୀନତା ଆରୋପ କରନ୍ତି ।

ଆମ୍ଭେମାନେ ଜାତୀୟ ଦିବସମାନଙ୍କରେ ଯେ କୌଣସି-ମତେ ପତାକାଟିକୁ ଉଡ଼ାଇ ଦେଇ କର୍ତ୍ତବ୍ୟ ସାଙ୍ଗ କରୁଛୁ । ସଚେତନ ନାଗରିକ ଭାବରେ ଏତିକି ଆମର କର୍ତ୍ତବ୍ୟ ନୁହେଁ । ଆମ ଜାତୀୟ ପତାକା ଯେଉଁସବୁ ତ୍ୟାଗପୂତ ଜୀବନର ବାର୍ତ୍ତାବହ ଓ ତହିଁରେ ଯେଉଁ ସଦ୍‌ଗୁଣରାଜିର ସୂଚନା ଦିଆଯାଇଛି, ସେଥିପ୍ରତି ଆମ୍ଭେମାନେ ଭାଜନ ନ ହେଲେ ପତାକା ଉଡ଼ାଇବା ବୃଥା । ପତାକାର ମର୍ଯ୍ୟାଦା ରକ୍ଷା ପ୍ରତି ଯେଉଁସବୁ ବିଧିବିଧାନ ପ୍ରଣୀତ ହୋଇଛି ତାହାକୁ ଅକ୍ଷରେ ଅକ୍ଷରେ ମାନି ଚଳିବା ଆମ୍ଭମାନଙ୍କର ପରମ କର୍ତ୍ତବ୍ୟ ।

## ଚରଖା ପତାକା ସମସ୍ତଙ୍କର

ଅଶୋକ ଚକ୍ର ଲାଞ୍ଛିତ ତ୍ରିରଙ୍ଗା ପତାକା ରାଷ୍ଟ୍ରୀୟ ନିଶାଣ ରୂପେ ଗୃହୀତ ହୋଇଥିବାରୁ ତାହାର ବ୍ୟବହାର ସୀମାବଦ୍ଧ । ରାଷ୍ଟ୍ରୀୟ ନିଶାଣ କୌଣସି ଦଳୀୟ ସଙ୍କେତ ନୁହେଁ । ତାହା ସମସ୍ତଙ୍କର । ସେହିପରି ସ୍ୱାଧୀନତା ସଂଗ୍ରାମ ବେଳର ଚରଖା ଚିତ୍ରିତ ପତାକା ଦଳୀୟ ପତାକା ହେବା ଉଚିତ ନୁହେଁ । ଏହା ସବୁ ଦଳର । ଆଗାମୀ ୧୯୮୫ ମସିହାରେ ଜାତୀୟ କଂଗ୍ରେସର ଶତବାର୍ଷିକୀ ପାଳିତ ହେବ । ଦଳ ମତ ନିର୍ବିଶେଷରେ ସମସ୍ତେ ସେତେବେଳେ ସ୍ୱାଧୀନତା ସଂଗ୍ରାମର ପ୍ରତୀକ ଚରଖା ଚିହ୍ନିତ ତ୍ରିରଙ୍ଗା ଝଣ୍ଡା ସସମ୍ମାନ ଉତ୍ତୋଳନ କରି ନିଜକୁ ଗୌରବାନ୍ୱିତ ମନେ କରିବା ଉଚିତ । ଏଥିରେ ବାଦ ବିସମ୍ବାଦ ନରହୁ । କେବଳ ସେତିକି ନୁହେଁ, ତ୍ରିରଙ୍ଗା ପତାକାର ଜନ୍ମ ପରିଗ୍ରହପରେ ଯେଉଁସବୁ ରୂପାନ୍ତର ଘଟିଛି ସେଗୁଡ଼ିକ ଜାତୀୟ ସଂଗ୍ରାହାଳୟରେ ସୁରକ୍ଷିତ ହେବା ଉଚିତ ।

## ଶେଷକଥା

ଆମ ଜାତୀୟ ପତାକା ଆମ ମାତୃଭୂମିର ଜଳନ୍ତି ପ୍ରତିମା ! ଏହା ଏକ ଦେଶଦର୍ଶୀ ନୁହେଁ । ଏହି ପତାକା ବିଶ୍ୱ-ବାସୀଙ୍କ ପାଇଁ ଶାନ୍ତି, ସଦିଚ୍ଛା ଓ ସହାବସ୍ଥାନର ବାର୍ତ୍ତାବହ । ବିଳମ୍ବରେ ହେଲେ ମଧ୍ୟ ଆମ ଭାରତ ସରକାର ଓ ଆମ ଦେଶର କୋଟି କୋଟି ସନ୍ତାନ ଜାତୀୟ ପତାକାର ଏହି ଅନବଦ୍ୟ ମହତ୍ୱ ଉପଲବ୍ଧି କରି ତଦନୁଯାୟୀ ତାଲିମପ୍ରାପ୍ତ, ଦୀକ୍ଷିତ ଓ ଅଭିମନ୍ତ୍ରିତ ଭାବରେ ନିଜକୁ ଗଢ଼ି ଦେଶ ବିଦେଶରେ ଆମ ରାଷ୍ଟ୍ରୀୟ ନିଶାଣର ଟେକ ରଖିବା ପାଇଁ ସଂକଳ୍ପବଦ୍ଧ ହୁଅନ୍ତୁ ।

ମାର୍କଣ୍ଡେଶ୍ୱର ସାହୁ
ଯମୁନା ରୋଡ଼, ପୁରୀ

ସ୍ୱଜାତି ଉନ୍ନତି
ଚିନ୍ତି ଦିନ ରାତି
ସାଧନେ ହୁଅ ତତ୍ପର,
ସ୍ୱଦେଶ ଗୌରବ
କରି ଅନୁଭବ
ଜନମ ସାର୍ଥକ କର ।

କର୍ମବୀର ଗୋବନ୍ଦ ରଥ

# ଭାରତର ସ୍ୱାଧୀନତା ସଂଗ୍ରାମ

## (୨)

ଡକ୍ଟର କତଣାରୀ ମୋହନ ପାତ୍ର

ପ୍ରଥମ ବିଶ୍ୱଯୁଦ୍ଧର ଅବସାନପରେ ୧୯୧୯ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ-ମାସରେ ଇଂରେଜ ସରକାର ଭାରତୀୟ ଆନ୍ଦୋଳନକାରୀ-ମାନଙ୍କୁ କଠୋର ହସ୍ତରେ ଦମନ କରିବା ପାଇଁ କୁଖ୍ୟାତ ରାଓ-ଲଟ୍ ଆଇନ ପ୍ରଣୟନ କରିଥିଲେ । ଏହି ଆଇନ ବିରୁଦ୍ଧରେ ସାରାଦେଶରେ ବହୁ ପ୍ରତିବାଦ ସଭା ଅନୁଷ୍ଠିତ ହୋଇଥିଲା । ଏହି ସମୟରେ ଭାରତର ସ୍ୱାଧୀନତା ସଂଗ୍ରାମର ନେତୃତ୍ୱ ନେବାପାଇଁ ଜଣେ ଅନନ୍ୟସାଧାରଣ ଦେଶପ୍ରେମୀ ଓ ମହାପୁରୁଷଙ୍କର ଆବିର୍ଭାବ ଘଟିଥିଲା । ସେ ହେଉଛନ୍ତି, ମୋହନ ଦାସ କରମଚାନ୍ଦ ଗାନ୍ଧୀ । ମହାତ୍ମା ଗାନ୍ଧୀ ନାମରେ ଭାରତ ଇତିହାସରେ ସେ ଏକ ନୂତନ ଯୁଗ ସୃଷ୍ଟି କରି ଯାଇଛନ୍ତି । ତାହାଙ୍କ ଆବିର୍ଭାବ ଫଳରେ ଭାରତର ସ୍ୱାଧୀନତା ସଂଗ୍ରାମର ଦ୍ୱିତୀୟ ଓ ଶେଷ ପର୍ବ ଆରମ୍ଭ ହେଲା । ଏହା ସାଧାରଣତଃ ଗାନ୍ଧୀ ଯୁଗ ନାମରେ ଖ୍ୟାତ ।

ଦକ୍ଷିଣ ଆଫ୍ରିକାରେ ସତ୍ୟାଗ୍ରହ ଆନ୍ଦୋଳନ ପରିଚାଳନା କରି ଗାନ୍ଧିଜୀଙ୍କର ଯଥେଷ୍ଟ ଅଭିଜ୍ଞତା ହୋଇଥିଲା । ସେହି ପନ୍ଥା ଅନୁସରଣ କଲେ ଭାରତୀୟମାନଙ୍କ ଅବସ୍ଥାର ପରିବର୍ତ୍ତନ ଘଟିବ ବୋଲି ତାହାଙ୍କର ଦୃଢ଼ ବିଶ୍ୱାସ ହେଲା । ୧୯୧୯ ଖ୍ରୀଷ୍ଟାବ୍ଦରେ ଜାତୀୟ ସ୍ୱାର୍ଥ ବିରୋଧୀ ରାଓଲଟ୍ ଆଇନ ବିରୁଦ୍ଧରେ ସାରାଦେଶରେ ସେ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କରିବାର ପରିକଳ୍ପନା କରିଥିଲେ । ବାସ୍ତବରେ ଗାନ୍ଧିଜୀଙ୍କ ନେତୃତ୍ୱରେ ପରିଚାଳିତ ଭାରତର ସ୍ୱାଧୀନତା ସଂଗ୍ରାମରେ ସତ୍ୟାଗ୍ରହ ଆନ୍ଦୋଳନ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ସତ୍ୟାଗ୍ରହର ଲକ୍ଷ୍ୟ ହେଲା ନିଜେ ସମସ୍ତ କଷ୍ଟ ଯନ୍ତ୍ରଣା ଭୋଗକରି ଏବଂ ହିଂସାତ୍ମକ ମନବୃତ୍ତି ପରିତ୍ୟାଗକରି ଶତ୍ରୁର ହୃଦୟ ପରିବର୍ତ୍ତନ କରିବା । ପ୍ରେମ ଓ ଅହିଂସାହିଁ ହେଲା ସତ୍ୟାଗ୍ରହର ମୂଳମନ୍ତ୍ର । ଶତ୍ରୁ ଯେତେ ବଳଶାଳୀ ହେଉନା କାହିଁକି ନିଜେ ଶୁଦ୍ଧପୂତ ଭାବରେ ସତ୍ୟପ୍ରତି ଆସ୍ଥା ସ୍ଥାପନ କରି ଅହିଂସା ପନ୍ଥା ଅବଲମ୍ବନ କଲେ ବିଜୟ ଅନିବାର୍ଯ୍ୟ ବୋଲି ତାହାଙ୍କର ଦୃଢ଼ ଧାରଣା ଥିଲା । ଭାରତର ସ୍ୱାଧୀନତା ହାସଲ ପାଇଁ ସତ୍ୟାଗ୍ରହ ସର୍ବୋତ୍କୃଷ୍ଟ ଉପାୟ ବୋଲି ଗାନ୍ଧିଜୀ ସିଦ୍ଧାନ୍ତ କରିଥିଲେ ଏବଂ ସେହି ନୀତି ଅନୁସାରେ ସ୍ୱାଧୀନତା ଆନ୍ଦୋଳନର ନେତୃତ୍ୱ ନେଇଥିଲେ ।

ଭାରତର ଜାତୀୟ ଆନ୍ଦୋଳନକୁ ଦମନ କରିବା ପାଇଁ ଇଂରେଜ ସରକାର ମୁଖ୍ୟତଃ ଦୁଇଟି ଉପାୟ ଅବଲମ୍ବନ କରୁଥିଲେ । ପ୍ରଥମଟି ହେଉଛି ଆନ୍ଦୋଳନକାରୀମାନଙ୍କୁ କଠୋର ଶାସ୍ତି ବିଧାନ ଏବଂ ଅନ୍ୟଟି ହେଉଛି ଭାରତୀୟ ଜନସାଧାରଣଙ୍କୁ ସନ୍ତୁଷ୍ଟ କରିବା ପାଇଁ କିଛି ଶାସନଗତ ସୁବିଧା ସୁଯୋଗ ପ୍ରଦାନ । ରାଓଲଟ୍ ଆଇନ ବିରୁଦ୍ଧରେ ଯେତେବେଳେ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ ହେଲା, ଇଂରେଜ ସରକାର ତାହା ଦୃଢ଼ ହସ୍ତରେ ଦମନ କଲେ । ପଞ୍ଜାବର ଅମୃତସରର ଜାଲିଆନାୱାଲାବାଗ ଠାରେ ୧୯୧୯ ଖ୍ରୀଷ୍ଟାବ୍ଦ ଏପ୍ରିଲ ୧୩ ତାରିଖ ଦିନ ଏକ ଅମାନୁଷିକ ହତ୍ୟାକାଣ୍ଡ ଫଳରେ ବହୁଲୋକ ହତାହତ ହେଲେ । ଅପର ପକ୍ଷରେ ସେହି ବର୍ଷ ଶେଷ ବେଳକୁ ଭାରତରେ ନୂତନ ଶାସନ ବ୍ୟବସ୍ଥା ପ୍ରଚଳନ ନିମନ୍ତେ ଏକ ଆଇନ ପ୍ରଣୟନ କରାଯାଇଥିଲା । ଇଂରେଜ ସରକାର ଏହି ନୂତନ ଶାସନ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରିବାପାଇଁ ଦେଶବାସୀଙ୍କର ସହଯୋଗ କାମନା କଲାବେଳେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା ।

### ଅସହଯୋଗ ଓ ଖିଲାଫତ୍ ଆନ୍ଦୋଳନ (୧୯୨୦--୨୨)

ଭାରତୀୟ ମୁସଲମାନ ସମ୍ପ୍ରଦାୟ ମଧ୍ୟରେ ସେହି ସମୟରେ ଏକ ଉତ୍ତେଜନାମୂଳକ ସମସ୍ୟା ଦେଖାଦେଲା । ୧୯୨୦ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ଇଉରୋପରେ ଏକ ଚୁକ୍ତି ସ୍ୱାକ୍ଷରିତହୋଇ ମୁସଲମାନ ମାନଙ୍କର ଧର୍ମଗୁରୁ ତୁର୍କର ସୁଲତାନ ବା ଖଲିଫାଙ୍କ ପ୍ରତି କଠୋର ନୀତି ଗ୍ରହଣ କରାଗଲା । ଇଉରୋପୀୟ ଶକ୍ତିମାନେ ତୁର୍କୀ ସାମ୍ରାଜ୍ୟକୁ ଖଣ୍ଡ ବିଖଣ୍ଡ କରିଦେବା ସଙ୍ଗେ ସଙ୍ଗେ ସୁଲତାନଙ୍କର ଶକ୍ତିକୁ ଲୋପ କରିଦେବା ଯୋଜନା କରିଥିଲେ । ଏହା ଭାରତୀୟ ମୁସଲମାନ ସମ୍ପ୍ରଦାୟକୁ ବିଶେଷ ଉତ୍ତେଜିତ କଲା । ଏହି ସମସ୍ୟାର ଯଥା ଯଥ ସମାଧାନ ପାଇଁ କର୍ତ୍ତୃପକ୍ଷଙ୍କ ସହିତ କଥାବାର୍ତ୍ତା କରି ସେମାନେ ବିଫଳ ହେଲେ । ତେଣୁ ସେମାନେ ଆନ୍ଦୋଳନ କରିବାପାଇଁ ସ୍ଥିର କଲେ । ଏହା ଖିଲାଫତ୍ ଆନ୍ଦୋଳନ ନାମରେ ପରିଚିତ ।

ଗାନ୍ଧିଜୀ ଏହାକୁ ଦୃଢ଼ ସମର୍ଥନ ଜଣାଇଲେ ଏବଂ ଏହାର ପରିସର ବୃଦ୍ଧିକରି ଇଂରେଜ ଶାସନ ବିରୁଦ୍ଧରେ ଦେଶବ୍ୟାପୀ ଅସହଯୋଗ ଆନ୍ଦୋଳନ କରିବାକୁ ସ୍ଥିର କଲେ । ପଞ୍ଜାବର ଦୁଃଖଦାୟକ ଘଟଣା, ହତାଶାଜନକ ଶାସନ ସଂସ୍କାର ଓ ଖିଲାଫତ୍ ସମସ୍ୟା ଏହି ଆନ୍ଦୋଳନର ମୁଖ୍ୟ କାରଣ ବୋଲି ଧରାଯାଏ । ଭାରତୀୟ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନ ୧୯୨୦ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ ନାଗପୁରଠାରେ ବସି ଗାନ୍ଧିଜୀଙ୍କ ଅସହଯୋଗ ପ୍ରସ୍ତାବକୁ ବିପୁଳ ଭୋଟରେ ଅନୁମୋଦନ କଲା । ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ ।

ଗାନ୍ଧିଜୀଙ୍କ ଆହ୍ୱାନରେ ସାରାଦେଶରେ ଲୋକେ ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ । କ୍ରମେ ଏହା ଏକ ଗଣ ଆନ୍ଦୋଳନରେ ପରିଣତ ହେଲା । କଂଗ୍ରେସ କାର୍ଯ୍ୟକ୍ରମରେ ତିନି ପ୍ରକାର 'ବୟକଟ୍' ନୀତିକୁ ଗୁରୁତ୍ୱ ଦିଆଗଲା, ଯଥା:—କାଉନ୍‌ସିଲ ବର୍ଜନ, କୋର୍ଟ ଓ କଚେରୀ ବର୍ଜନ ଏବଂ ସ୍କୁଲ ଓ କଲେଜ ବର୍ଜନ । ବହୁ ସଂଖ୍ୟାରେ ସ୍କୁଲ ଓ କଲେଜ ଛାତ୍ର ସେମାନଙ୍କର ଶିକ୍ଷାନୁଷ୍ଠାନ ଗୁଡ଼ିକ ବର୍ଜନ କରି ଏହି ଆନ୍ଦୋଳନରେ ଭାଗ ନେବାପାଇଁ ଆଗେଇ ଆସିଲେ । କେତେକ ଶିକ୍ଷିତ ଭାରତୀୟ ସେମାନଙ୍କର ଉଚ୍ଚ ପଦବୀ ଆଦି ଏବଂ ଓକିଲମାନେ ସରକାରୀ କୋର୍ଟ କଚେରୀ ପ୍ରଭୃତି ପରିତ୍ୟାଗ କରି ଆନ୍ଦୋଳନରେ ଯୋଗ ଦେଲେ । କଂଗ୍ରେସ ଓ ଖିଲାଫତ ସ୍ୱେଚ୍ଛାସେବକମାନେ ବିଦେଶୀଲୁଗା ଓ ମଦ ଦୋକାନ ପ୍ରଭୃତି ଆଗରେ ପିକେଟିଂ କରି ଦେଶ-ବାସୀଙ୍କୁ ତାହା ବର୍ଜନ କରିବାକୁ ପ୍ରବର୍ତ୍ତାଇଲେ ।

ସାରା ଦେଶରେ ଅସହଯୋଗ ଆନ୍ଦୋଳନର ଦ୍ରୁତ ପ୍ରସାର ଘଟିଲା । ସେଥିପାଇଁ ଏହାକୁ ଦମନ କରିବା ନିମନ୍ତେ ଇଂରେଜ ସରକାର କଠୋର ବ୍ୟବସ୍ଥାମାନ ଗ୍ରହଣ କରିଥିଲେ ! ସତ୍ୟାଗ୍ରହରେ ଅଂଶ ଗ୍ରହଣ କରିଥିବା ବହୁ ଲୋକ ତଥା ନେତୃବୃନ୍ଦ କାରାରୁଦ୍ଧ ହେଲେ । ମୋତିଲାଲ ନେହେରୁ, ଚିତ୍ତରଞ୍ଜନଦାସ, ଆବୁଲ କାଲାମ୍ ଆଜାଦ, ଲାଲା ଲଜପତ୍ ରାୟ, ଜବାହରଲାଲ ନେହେରୁ, ସୁବାଷଚନ୍ଦ୍ର ବୋଷ ପ୍ରମୁଖ ନେତାମାନେ କାରାବରଣ କରିଥିଲେ । ପ୍ରାୟ ପଚାଶ ହଜାର ପର୍ଯ୍ୟନ୍ତ ଲୋକ ଜେଲଦଣ୍ଡ ଭୋଗିଥିଲେ ବୋଲି ଜଣାଯାଏ । ମାତ୍ର ଲୋକଙ୍କର ଅଦମ୍ୟ ଉତ୍ସାହ ଫଳରେ ଆନ୍ଦୋଳନ ଅବ୍ୟାହତ ରହିଲା । ଏହି ସମୟରେ ୧୯୨୨ ଖ୍ରୀଷ୍ଟାବ୍ଦ ଫେବୃଆରୀ ୫ ତାରିଖରେ ଗୋରଖପୁର ଜିଲ୍ଲାର ଚୌରି ଚୌରା ନାମକ ଏକ କ୍ଷୁଦ୍ର ସହରରେ ଉତ୍ତ୍ୟକ୍ତ ଜନତା ଗୋଟିଏ ପୋଲିସ ଥାନା ଆକ୍ରମଣ କରି ଅଗ୍ନି ସଂଯୋଗ କରିବା ଯୋଗୁଁ ୨୨ଜଣ ପୋଲିସ କର୍ମଚାରୀ ନିହତ ହୋଇଥିଲେ । ଏହି ହିଂସାକାଣ୍ଡର ଦୁଃସମ୍ବାଦ ଗାନ୍ଧିଜୀଙ୍କୁ ଘୋର ବ୍ୟଥିତ କରିଥିଲା । ଜନସାଧାରଣଙ୍କୁ ଉଚିତ ଶିକ୍ଷା ଦେବାପାଇଁ ସେ ଅସହଯୋଗ ଆନ୍ଦୋଳନକୁ ଅନିର୍ଦ୍ଦିଷ୍ଟକାଳ ପାଇଁ ବନ୍ଦ କରିଦେଲେ । ତୁର୍କୀ ସମସ୍ୟାକୁ କେନ୍ଦ୍ର କରି ଯେଉଁ ଖିଲାଫତ୍ ଆନ୍ଦୋଳନ ଚାଲିଥିଲା, ଅବସ୍ଥାଚକ୍ରରେ ତାହା ବ୍ୟର୍ଥ ହୋଇଗଲା । ପ୍ରାୟ ୯ ବର୍ଷ ପରେ ଗାନ୍ଧିଜୀ ପୁଣି ଥରେ ଏକ ଆନ୍ଦୋଳନର ନେତୃତ୍ୱନେଲେ ।

## ଆଇନଅମାନ୍ୟ ଆନ୍ଦୋଳନ (୧୯୩୦--୩୨)

୧୯୨୭ ଖ୍ରୀଷ୍ଟାବ୍ଦର ଶେଷ ଭାଗରେ ଇଂରେଜ ସରକାର ଭାରତୀୟ ଶାସନ ବ୍ୟବସ୍ଥାର ଆବଶ୍ୟକ ପରିବର୍ତ୍ତନପାଇଁ ସୁପାରିଶ କରିବା ନିମନ୍ତେ ଏକ କମିଶନ୍ ବସାଇଲେ । ସାର୍‌ଜନ୍ ସାଇମନ୍ ଏହାର ନେତୃତ୍ୱ ନେଇଥିବାରୁ ଏହାକୁ ସାଇମନ୍ କମିଶନ ବୋଲି କୁହାଯାଏ । ଏଥିରେ ଜଣେ ସୁଦ୍ଧା ଭାରତୀୟ ନଥିବାରୁ ଲୋକେ ଏହାକୁ ଘୋର ଅପମାନ ବୋଲି ଭାବିଥିଲେ । 'ସାଇମନ୍ ଫେରିଯାଅ' ଧ୍ୱନିରେ ଭାରତର ରାଜନୀତିକ ବାତାବରଣ ସରଗରମ ହୋଇ ଉଠିଲା । ଇଂରେଜ ସରକାର ବିଲାତରେ ଏକ ଗୋଲଟେବୁଲ ବୈଠକ ଡକାଇ ଭାରତୀୟ ସମସ୍ୟାର ସମାଧାନ କରିବା ପାଇଁ ସୂଚନା ଦେଲେ, ମାତ୍ର କଂଗ୍ରେସ ତାହା ଗ୍ରହଣ କଲା ନାହିଁ । ଜବାହରଲାଲ ନେହରୁଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଲାହୋର କଂଗ୍ରେସରେ ଔପନିବେଶିକ ସ୍ୱାଧୀନତା ପରିବର୍ତ୍ତେ ପୂର୍ଣ୍ଣ ସ୍ୱାଧୀନତା ଭାରତୀୟମାନଙ୍କର ଲକ୍ଷ୍ୟ ବୋଲି ଘୋଷିତ ହେଲା । ୧୯୩୦ ଜାନୁୟାରୀ ୨୬ ତାରିଖରେ ପ୍ରଥମଥର ଭାରତର ସର୍ବତ୍ର ସ୍ୱାଧୀନତା ଦିବସ ପାଳିତ ହୋଇ ମୁକ୍ତି ସଂଗ୍ରାମପାଇଁ ଆଗ୍ନେୟ ଶପଥ ଗ୍ରହଣ କରାଗଲା ।

୧୯୩୦ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ଭାରତବ୍ୟାପୀ ଯେଉଁ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହେଲା, ତାହା ଆଇନ ଅମାନ୍ୟ ଆନ୍ଦୋଳନ ନାମରେ ଖ୍ୟାତ । ମହାତ୍ମା ଗାନ୍ଧୀ ଏହାର ନେତୃତ୍ୱ ନେଲେ ଏବଂ ଶାନ୍ତିପୂର୍ଣ୍ଣ ଓ ଅହିଂସା ପନ୍ଥାରେ ସରକାରଙ୍କର ଆଇନକୁ ଅମାନ୍ୟ କରିବାପାଇଁ ଦେଶବାସୀଙ୍କୁ ନିର୍ଦ୍ଦେଶ ଦେଲେ । ସେ ନିଜେ ସରକାରଙ୍କର ଅତି ନିନ୍ଦନୀୟ ଲବଣ ଆଇନ ଅମାନ୍ୟ କରିବା ସିଦ୍ଧାନ୍ତ କରି ଗୁଜୁରାଟ ସମୁଦ୍ର ଉପକୂଳରେ ଅବସ୍ଥିତ ଦାଣ୍ଡି ନାମକ ସ୍ଥାନକୁ ସାବରମତୀ ଆଶ୍ରମରୁ ମାର୍ଚ୍ଚ ୧୨ ତାରିଖରେ ଯାତ୍ରା ଆରମ୍ଭ କଲେ । ପ୍ରାୟ ଦୁଇଶହ ମାଇଲ ଦୀର୍ଘପଥ ପଦଯାତ୍ରା କରି ସେଠାରେ ପହଞ୍ଚିବାକୁ ୨୪ ଦିନ ଲାଗିଥିଲା । ତାହା ମଧ୍ୟରେ ସାରା ଦେଶରେ ଆଇନଅମାନ୍ୟ ଆନ୍ଦୋଳନର ବାର୍ତ୍ତା ଖେଳିଗଲା । ଏପ୍ରିଲ ୬ ତାରିଖ ଦିନ ଗାନ୍ଧିଜୀ ଲବଣ ଆଇନ ଭଙ୍ଗ କରି ଏହି ନୂତନ ଆନ୍ଦୋଳନର ଶୁଭ ଦେଲେ । ଦେଶର ବହୁ ସ୍ଥାନରେ ଏହି ଆଇନ ଭଙ୍ଗ କରାଗଲା ଏବଂ ଏହା ଲବଣ ସତ୍ୟାଗ୍ରହ ନାମରେ ପ୍ରସିଦ୍ଧ ।

ଏତଦ୍‌ବ୍ୟତୀତ ଗାନ୍ଧିଜୀ ସରକାରୀ କର୍ମଚାରୀମାନଙ୍କୁ ସେମାନଙ୍କର ଚାକିରୀ ଏବଂ ଛାତ୍ରମାନଙ୍କୁ ସରକାରୀ ସ୍କୁଲ, କଲେଜ ଆଦି ପରିତ୍ୟାଗ କରିବାପାଇଁ ଆହ୍ୱାନ କରିଥିଲେ । ବିଦେଶୀ ବସ୍ତ୍ର ବର୍ଜନ, ମଦ ଦୋକାନ ଇତ୍ୟାଦି ଆଗରେ ସତ୍ୟାଗ୍ରହ ଓ ଅବଶେଷରେ ଖଜଣାବନ୍ଦ ପ୍ରଭୃତି କାର୍ଯ୍ୟପନ୍ଥାର ଅନ୍ତର୍ଭୁକ୍ତ ଥିଲା । ସାରାଦେଶରେ ଆନ୍ଦୋଳନ ପ୍ରବଳ ଆକାର ଧାରଣ କଲା । ବହୁ ସଂଖ୍ୟାରେ ସ୍ତ୍ରୀଲୋକ ମଧ୍ୟ ଏଥିରେ ଯୋଗଦାନ କଲେ । ସରକାର ଆନ୍ଦୋଳନ ଦମନ କରିବାପାଇଁ ସମସ୍ତ ଉପାୟ ଅବଲମ୍ବନ କରିଥିଲେ । ଶୋଭାଯାତ୍ରା ଭଙ୍ଗକରିବା ଓ ଆନ୍ଦୋଳନକାରୀମାନଙ୍କୁ ଲାଠି ମାଡ ଦେବା ଏକ ସାଧାରଣ ଘଟଣାରେ ପରିଣତ ହୋଇଥିଲା । କଂଗ୍ରେସ ଅନୁଷ୍ଠାନକୁ ବେଆଇନ ବୋଲି ଘୋଷଣା କରାଗଲା । ଗୋଟିଏ ବର୍ଷ ମଧ୍ୟରେ ୯୦ ହଜାରରୁ ଅଧିକ ସତ୍ୟାଗ୍ରହୀ ଜେଲବରଣ

ହୋଇଥିଲେ । ମହାତ୍ମାଗାନ୍ଧୀ ପ୍ରମୁଖ ନେତୃବୃନ୍ଦ ମଧ୍ୟ ଜେଲ ମଧ୍ୟରେ ଆବଦ୍ଧ ହୋଇ ରହିଲେ, ମାତ୍ର ସେମାନେ ସରକାରଙ୍କର ଦମନଲୀଳାରେ ଭୟଭୀତ ନ ହୋଇ ଆନ୍ଦୋଳନ ଅବ୍ୟାହତ ରଖିଥିଲେ । ୧୯୩୧ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୫ ତାରିଖରେ ଭାରତର ବଡ଼ଲାଟ ଲର୍ଡ୍ ଇରଉଇନ୍ ଗାନ୍ଧିଜୀଙ୍କ ସହିତ ଏକ ଚୁକ୍ତି ସ୍ୱାକ୍ଷର କଲେ । ଏହି ଗାନ୍ଧି-ଇରଉଇନ୍ ଚୁକ୍ତି ଫଳରେ କଂଗ୍ରେସ ଆଇନ ଅମାନ୍ୟ ଆନ୍ଦୋଳନ ସ୍ଥଗିତ ରଖିଲା । ସରକାର ବନ୍ଦୀମାନଙ୍କୁ ଜେଲରୁ ମୁକ୍ତ କରିଦେଲେ ଏବଂ ଗାନ୍ଧିଜୀ କଂଗ୍ରେସର ଏକମାତ୍ର ପ୍ରତିନିଧି ହିସାବରେ ଦ୍ୱିତୀୟ ଗୋଲ ଟେବୁଲ ବୈଠକରେ ଯୋଗ ଦେଲେ ।

ଗାନ୍ଧିଜୀଙ୍କ ମତାମତ ଗୃହୀତ ନ ହେବାରୁ ସେ ନିରାଶ ହୋଇ ଭାରତକୁ ଫେରିଲେ ଏବଂ ପୁଣି ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିଦେଲେ । ସାରା ଦେଶରେ ପ୍ରବଳ ଉତ୍ତେଜନା ସୃଷ୍ଟି ହେଲା । ଆନ୍ଦୋଳନ ତୀବ୍ର ଆକାର ଧାରଣ କରିବାରୁ ସରକାର କଠୋର ଦମନନୀତି ପ୍ରୟୋଗ କରି କଂଗ୍ରେସ ଓ ତାହାର ସମସ୍ତ ସହଯୋଗୀ ଅନୁଷ୍ଠାନକୁ ବେଆଇନ ଘୋଷଣା କରିବା ସଙ୍ଗେ ସଙ୍ଗେ ତାହାର ସମସ୍ତ ଅଫିସ ମଧ୍ୟ ସରକାର ଅଧିକାର କରିନେଲେ । ଜାତୀୟ ସଂଗ୍ରାମକୁ ସମର୍ଥନ କରୁଥିବା ସମ୍ବାଦପତ୍ର ଗୁଡ଼ିକ ଉପରେ ବିଶେଷ କଟକଣା ଜାରିହେଲା ଏବଂ ତାହା ଫଳରେ ସେଗୁଡ଼ିକ ବନ୍ଦ ହୋଇଗଲା । କେତେକ କ୍ଷେତ୍ରରେ ଆନ୍ଦୋଳନକାରୀମାନଙ୍କ ସମ୍ପତ୍ତି ବାଜ୍ୟାପ୍ତ କରାଗଲା ଓ ଲୋକମାନଙ୍କୁ ଆନ୍ଦୋଳନରୁ କ୍ଷାନ୍ତ କରିବାପାଇଁ ସମୂହ ଅର୍ଥଦଣ୍ଡ ମଧ୍ୟ ଦିଆଗଲା । ସରକାରଙ୍କର ଅମାନୁଷିକ ଉତ୍ପୀଡ଼ନରେ ଆନ୍ଦୋଳନ କ୍ରମେ ଶିଥିଳ ହୋଇ ଆସିଲା ଏବଂ ଗାନ୍ଧିଜୀ ୧୯୩୪ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସରେ ଏହାକୁ ସମ୍ପୂର୍ଣ୍ଣ ବନ୍ଦ କରିଦେଲେ । ଏହିପରି ଆଇନ ଅମାନ୍ୟ ଆନ୍ଦୋଳନର ପରିସମାପ୍ତି ଘଟିଲା ।

୧୯୩୫ ଖ୍ରୀଷ୍ଟାବ୍ଦରେ ଇଂରେଜ ସରକାର ଏକ ନୂତନ ଆଇନ ପ୍ରଣୟନ କରି ଭାରତର ୧୧ଟି ପ୍ରଦେଶକୁ ଆଂଶିକ ସ୍ୱତନ୍ତ୍ରତା ପ୍ରଦାନ କଲେ । ନିର୍ବାଚନରେ ବିଜୟଲାଭ କରି ୧୯୩୭ରେ କଂଗ୍ରେସ ଆଠଟି ରାଜ୍ୟରେ ମନ୍ତ୍ରୀମଣ୍ଡଳ ଗଠନ କରି ଶାସନ ଭାର ଗ୍ରହଣ କରିଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରାରମ୍ଭରେ ଅର୍ଥାତ୍ ୧୯୩୯ର ଶେଷ ଭାଗରେ ସରକାରଙ୍କର ଯୁଦ୍ଧ ନୀତିର ପ୍ରତିବାଦ କରି ସେହି ସବୁ କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଇଥିଲେ । ପ୍ରାୟ ୨୮ ମାସ ଶାସନ କାଳ ମଧ୍ୟରେ ସେମାନେ ବହୁ ଲୋକହିତକର କାର୍ଯ୍ୟ କରି ଦେଶର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ କ୍ଷମତାରୁ ଅପସରିଗଲେ ।

୧୯୪୦ ଖ୍ରୀଷ୍ଟାବ୍ଦରୁ ଭାରତର ରାଜନୀତିରେ ଦ୍ରୁତ ପରିବର୍ତ୍ତନ ଘଟିଲା । ବିଶ୍ୱଯୁଦ୍ଧର ପରିପ୍ରେକ୍ଷୀରେ କଂଗ୍ରେସର ଦୁଇଟି ପ୍ରଧାନ ଦାବୀ ହେଲା ଯୁଦ୍ଧ ପରେ ଭାରତକୁ ପୂର୍ଣ୍ଣ ସ୍ୱାଧୀନତା ଦେବା ଘୋଷଣା ଏବଂ ଆପାତତଃ କେନ୍ଦ୍ରରେ ଏକ ଜାତୀୟ ସରକାର ପ୍ରତିଷ୍ଠା । ଏହି ଅବସରରେ ଭାରତୀୟ ମୁସଲିମ୍ ଲିଗ ୧୯୪୦ ମାର୍ଚ୍ଚ ମାସରେ ମୁସଲମାନ ବହୁଳ ଅଞ୍ଚଳକୁ ନେଇ ଏକ ନୂତନ ରାଷ୍ଟ୍ର ଗଠନ ଦାବୀ ଉପସ୍ଥାପିତ କଲେ । ଏହା 'ପାକିସ୍ଥାନ ଦାବୀ' ନାମରେ ପରିଚିତ । ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ନେତୃତ୍ୱରେ ଲିଗ୍ ଭାରତର ସ୍ୱାଧୀନତା ହାସଲ କଲା ପର୍ଯ୍ୟନ୍ତ ଏହି ନୀତିରେ ଅଟଳ ରହିଥିଲା । ୧୯୪୧ରେ ଜାପାନ ନାଟକୀୟ ଭାବରେ ବିଶ୍ୱଯୁଦ୍ଧରେ ଯୋଗ ଦେଲା ଏବଂ ଅଚିରେ ପ୍ରାଚ୍ୟ ରଣଭୂମିରେ ଅଭୂତପୂର୍ବ ପରିସ୍ଥିତି ସୃଷ୍ଟି ହେଲା । ଜାପାନର ସୈନ୍ୟମାନେ ବ୍ରହ୍ମଦେଶରେ ଉପସ୍ଥିତ ହେବାରୁ ଇଂରେଜ ସରକାର ଖୁବ୍ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ । ୧୯୪୨ ମସିହା ମାର୍ଚ୍ଚ ମାସରେ ଇଂରେଜ ସରକାର ସାର ଷ୍ଟାଫୋର୍ଡ କ୍ରିପ୍ସ ନାମକ ଜଣେ ମନ୍ତ୍ରୀଙ୍କୁ ଭାରତୀୟ ସମସ୍ୟାର ସମାଧାନ କରିବା ପାଇଁ ଏ ଦେଶକୁ ପଠାଇଲେ । ମାତ୍ର କ୍ରିପସ୍ ମିଶନ ବିଫଳ ହେଲା । ଭାରତୀୟମାନଙ୍କୁ ପ୍ରକୃତ କ୍ଷମତା ହସ୍ତାନ୍ତର କରିବାରେ ଇଂରେଜ ଶାସକମାନଙ୍କର ଆଦୌ ଆନ୍ତରିକତା ନାହିଁ ବୋଲି ସ୍ପଷ୍ଟ ଧାରଣା ହେଲା । ସେଥିପାଇଁ କଂଗ୍ରେସ ଏକ ସକ୍ରିୟ ଆନ୍ଦୋଳନ ଦ୍ୱାରା ଇଂରେଜମାନଙ୍କୁ ଏ ଦେଶରୁ ବିତାଡ଼ିତ କରି ସ୍ୱାଧୀନତା ହାସଲ ପାଇଁ ବଦ୍ଧ ପରିକର ହେଲା । ଗାନ୍ଧିଜୀ ଇଂରେଜମାନଙ୍କୁ 'ଭାରତ ଛାଡ଼' ଆହ୍ୱାନ ଦେବା ଲାଗି ସ୍ଥିର କଲେ ।

## 'ଭାରତ ଛାଡ଼' ଆନ୍ଦୋଳନ (୧୯୪୨)

୧୯୪୧ ଖ୍ରୀଷ୍ଟାବ୍ଦ ଅଗଷ୍ଟମାସ ୮ ତାରିଖରେ ବମ୍ବେଠାରେ ନିଖିଳ ଭାରତୀୟ କଂଗ୍ରେସ କମିଟିର ଏକ ବୈଠକରେ ଐତିହାସିକ 'ଭାରତ ଛାଡ଼' ପ୍ରସ୍ତାବ ଗୃହୀତ ହେଲା ଏବଂ ତହିଁ ପରଦିନ ଅର୍ଥାତ୍ ଅଗଷ୍ଟ ୯ ତାରିଖରୁ ସାରା ଦେଶରେ ବିପ୍ଳବର ବହ୍ନି ଜଳି ଉଠିଲା । 'ଭାରତ ଛାଡ଼' ଆନ୍ଦୋଳନ ହେଉଛି ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଶେଷ ଗଣ ଆନ୍ଦୋଳନ ଏବଂ ଏହା ଅତି ଭୟଙ୍କର ଆକାର ଧାରଣ କରିଥିଲା । ଅହିଂସା ପନ୍ଥାରେ ପ୍ରକାଶ୍ୟ ଭାବରେ ବିପ୍ଳବ କରି ଭାରତର ସ୍ୱାଧୀନତା ହାସଲ କରିବା ପାଇଁ ମହାତ୍ମା ଗାନ୍ଧୀ ଦେଶବାସୀଙ୍କୁ ଆହ୍ୱାନ ଜଣାଇଥିଲେ । ୯ ତାରିଖ ଦିନ ସକାଳେ ଇଂରେଜ ସରକାର ମହାତ୍ମାଗାନ୍ଧୀ, ଜବାହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ ପ୍ରଭୃତି କଂଗ୍ରେସର ତୁଙ୍ଗ ନେତୃବୃନ୍ଦଙ୍କୁ ବନ୍ଦୀ କରିଥିଲେ । ମାତ୍ର ଅଳ୍ପକାଳ ମଧ୍ୟରେ ସାରା ଦେଶରେ ଅଭୂତପୂର୍ବ ଜାଗରଣ ଦେଖାଦେଲା । ଏଣେ ଇଂରେଜ ସରକାର କଂଗ୍ରେସକୁ ବେଆଇନ ଘୋଷଣା କରି କଂଗ୍ରେସ ସହିତ ସମ୍ପୃକ୍ତ ବହୁ ଲୋକଙ୍କୁ କାରାରୁଦ୍ଧ କରାଯାଇଥିଲା । ଏ ସବୁ ସତ୍ତ୍ୱେ ପ୍ରକାଶ୍ୟ ବିଦ୍ରୋହ ଘୋଷିତ ହୋଇ ଭାରତର କେତେକ ସ୍ଥାନରେ ଜାତୀୟ ସରକାର ପ୍ରତିଷ୍ଠା କରାଯାଇଥିଲା । ବହୁ ସ୍ଥାନରେ ଶ୍ରମିକମାନେ ଧର୍ମଘଟ କଲେ ଏବଂ କେତେକ ସ୍ଥାନରେ ହିଂସାକାଣ୍ଡ ମାନ ଘଟିଗଲା । ଅନେକ ସ୍ଥାନରେ ରେଲପଥ ଉଠାଇ ଦିଆଗଲା ଏବଂ କେତେକ ରେଲ ଷ୍ଟେସନ ପୋଡ଼ି ଦିଆଗଲା । ଟେଲିଗ୍ରାଫ ଓ ଟେଲିଫୋନ ତାରମାନ କାଟି ଦିଆ ଯାଇଥିଲା ଏବଂ ପୋଷ୍ଟ ଅଫିସମାନ ଧ୍ୱଂସ କରି ଦିଆଗଲା । ସର୍ବଶ୍ରୀ ଜୟପ୍ରକାଶ ନାରାୟଣ, ରାମ ମନୋହର ଲୋହିଆ ଓ ଅରୁଣା ଆସଫ୍ ଆଲ୍ଲୀ ପ୍ରମୁଖ କେତେକ ନେତା ଆତ୍ମଗୋପନ କରି ବିପ୍ଳବ ପରିଚାଳନା କରୁଥିଲେ । ପୁନାର ଆଗାଖାଁ ପ୍ରସାଦରେ ବନ୍ଦୀ ଗାନ୍ଧିଜୀ ଜନସାଧାରଣଙ୍କର ହିଂସାକାଣ୍ଡ ଓ ସରକାରଙ୍କର ଅମାନୁଷିକ ଅତ୍ୟାଚାରରେ

ବ୍ୟଥିତ ହୋଇ ଜେଲରେ ୨୧ ଦିନ ଅନଶନ କରି ଦେଶବାସୀ ତଥା ସରକାରଙ୍କୁ ସଂଯତ ହେବା ପାଇଁ ନିବେଦନ କରିଥିଲେ । ସାମରିକ ଶକ୍ତି ପ୍ରୟୋଗ କରି 'ଭାରତ ଛାଡ଼' ଆନ୍ଦୋଳନକୁ ସରକାର ଦମନ କରିଥିଲେ ସୁଦ୍ଧା ଶାନ୍ତି ଶୃଂଖଳା ପ୍ରତିଷ୍ଠା ସହଜରେ ସମ୍ଭବ ହେଲା ନାହିଁ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଅନ୍ୟ ଏକ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଭାରତରୁ ପଳାୟନ ଓ ଏକ ଜାତୀୟ ସୈନ୍ୟବାହିନୀ ଗଠନ କରି ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା । ଭାରତୀୟ ଯୁଦ୍ଧ ବନ୍ଦୀ ଓ ପ୍ରବାସୀ ଭାରତୀୟମାନଙ୍କୁ ନେଇ ଦକ୍ଷିଣପୂର୍ବ ଏସିଆରେ 'ଆଜାଦ୍ ହିନ୍ଦ ଫୌଜ' ବା ଭାରତୀୟ ଜାତୀୟ ବାହିନୀ ଗଠିତ ହେଲା । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଏହାର ନେତୃତ୍ୱ ନେଇ ଭାରତ ସୀମାନ୍ତ ଅଭିମୁଖେ ଯୁଦ୍ଧଯାତ୍ରା ଆରମ୍ଭ କରିଥିଲେ । 'ଦିଲ୍ଲୀଚଲୋ' ତାହାଙ୍କର ଧ୍ୱନି ହେଲା । ଦିଲ୍ଲୀର ଲାଲକିଲ୍ଲାରେ ଭାରତର ଜାତୀୟ ପତାକା ଉତ୍ତୋଳନ କରିବାକୁ ସଂକଳ୍ପ କରିଥିଲେ । ୧୯୪୪ ଖ୍ରୀଷ୍ଟାବ୍ଦର ମଧ୍ୟ ଭାଗରେ ନେତାଜୀଙ୍କ ବାହିନୀ ବର୍ମା ଅତିକ୍ରମ କରି ଭାରତର ପୂର୍ବ ସୀମାନ୍ତରେ ଅବସ୍ଥିତ କୋହିମାଠାରେ ଉପନୀତ ହୋଇଥିଲେ । ସେଠାରେ ଭାରତର ଜାତୀୟ ପତାକା ଉତ୍ତୋଳନ ହେଲା । ମାତ୍ର ୧୯୪୫ ଖ୍ରୀଷ୍ଟାବ୍ଦରେ ମହାଯୁଦ୍ଧର ଗତି ବଦଳିଗଲା । ଜର୍ମାନୀ ଓ ଜାପାନ ପ୍ରଭୃତି ଶକ୍ତିମାନେ ପରାଜିତ ହେଲେ ଏବଂ ବିଶ୍ୱଯୁଦ୍ଧର ପରିସମାପ୍ତି ଘଟିଲା । ନେତାଜୀଙ୍କର ସୈନ୍ୟ ଓ ସେନାପତିମାନେ ଇଂରେଜ ହାତରେ ବନ୍ଦୀ ହେଲେ । ଆଜାଦ୍ ହିନ୍ଦ ସରକାର ଲୋପ ପାଇଲା । ନେତାଜୀ ଏକ ବିମାନ ଦୁର୍ଘଟଣାରେ ପ୍ରାଣ ହରାଇଲେ ବୋଲି ବିଶ୍ୱାସ କରାଯାଏ ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବସାନ ପରେ ବିଲାତର ରାଜନୀତିରେ ଏକ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ସଂଘଟିତ ହେଲା । ୧୯୪୫ ଖ୍ରୀଷ୍ଟାବ୍ଦରେ ବିଲାତର ସାଧାରଣ ନିର୍ବାଚନରେ ଚର୍ଚ୍ଚିଲଙ୍କ ଜାତୀୟ ଦଳ ପରାଜିତ ହେଲେ ଏବଂ ଶ୍ରମିକଦଳ ବିଜୟ ହାସଲ କଲେ । ସେହି ଦଳର ନେତା କ୍ଲେମେଣ୍ଟ ଆଟଲି ନୂତନ ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ଭାରତୀୟମାନଙ୍କର ଦାବୀର ସମାଧାନ ପାଇଁ ତାହାଙ୍କର ସରକାର ଆନ୍ତରିକ ପ୍ରଚେଷ୍ଟା କଲେ ;

୧୯୪୬ ଖ୍ରୀଷ୍ଟାବ୍ଦ ଫେବୃୟାରୀ ମାସରେ ଆଟଲି କାବିନେଟ ବା ମନ୍ତ୍ରୀମଣ୍ଡଳର ୩ ଜଣ ସଦସ୍ୟଙ୍କୁ ଭାରତର ସମସ୍ୟା ସମାଧାନ ପାଇଁ ପ୍ରେରଣ କଲେ । ସେମାନେ ମେ ମାସରେ ଏକ ସୁଚିନ୍ତିତ ଯୋଜନା ପ୍ରକାଶ କଲେ । ମାତ୍ର ଏହି ପ୍ରସ୍ତାବରେ ଉଭୟ କଂଗ୍ରେସ ଓ ମୁସଲିମ୍ ଲିଗର ନେତାମାନେ ସନ୍ତୁଷ୍ଟ ହେଲେ ନାହିଁ । କିନ୍ତୁ ବହୁ ଆଲୋଚନା ପରେ କଂଗ୍ରେସ ମଧ୍ୟବର୍ତ୍ତୀ କାଳୀନ ସରକାରରେ ଯୋଗ ଦେବାପାଇଁ ସ୍ଥିରକଲା । ଇତି ମଧ୍ୟରେ ସମ୍ବିଧାନ ପ୍ରସ୍ତୁତ ନିମନ୍ତେ ସାମ୍ବିଧାନିକ ସଭା ମଧ୍ୟ ଗଠିତ ହେଲା । ଜିନ୍ନା ଓ ମୁସଲିମ୍ ଲିଗର ନେତାମାନେ କେଉଁଥିରେ ଯୋଗ ନ ଦେଇ ପାକିସ୍ଥାନ ଗଠନପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ କଲେ । ସାରା ଦେଶରେ ଘୋର ସାମ୍ପ୍ରଦାୟିକ ସଂଘର୍ଷ ଘଟିବାରୁ ବ୍ରିଟିଶ୍ ସରକାର ୧୯୪୮ ଖ୍ରୀଷ୍ଟାବ୍ଦ ଜୁନମାସ ପୂର୍ବରୁ ଭାରତୀୟମାନଂକୁ କ୍ଷମତା ହସ୍ତାନ୍ତର କରିଦେବ ବୋଲି ଘୋଷଣା କଲେ । ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଲର୍ଡ ମାଉଣ୍ଟ ବ୍ୟାଟେନ୍ ଭାରତର ବଡ଼ଲାଟଭାବରେ ନିଯୁକ୍ତ ହେଲେ ।

## ଭାରତର ବିଭାଜନ ଓ ସ୍ୱାଧୀନତା ଲାଭ

ଲର୍ଡ ମାଉଣ୍ଟ ବ୍ୟାଟେନ୍ ଭାରତୀୟ ସମସ୍ୟାକୁ ବାସ୍ତବ ଦୃଷ୍ଟି କୋଣରୁ ବିଚାର କରି ଦେଖିଲେ ଯେ, ଦେଶକୁ ଦୁଇଭାଗ କରିବା ଛଡ଼ା ଅନ୍ୟ କୌଣସି ଉପାୟ ନାହିଁ । ମୁସଲମାନମାନଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ସେ ଅନ୍ୟ କୌଣସି ପନ୍ଥାର ସନ୍ଧାନ ପାଇଲେ ନାହିଁ । ଅତି ଚତୁରତାର ସହିତ କଂଗ୍ରେସ ନେତୃବୃନ୍ଦଙ୍କୁ ତାହାଙ୍କ ଯୋଜନା ମାନିନେବା ପାଇଁ ପ୍ରବର୍ତ୍ତାଇଲେ । ପଣ୍ଡିତ ନେହେରୁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ମୌଲାନା ଅବୁଲ କାଲାମ ଆଜାଦ୍, ରାଜେନ୍ଦ୍ର ପ୍ରସାଦ ଓ ରାଜଗୋପାଳାଚାରୀ ପ୍ରଭୃତି ତୁଙ୍ଗ ନେତାମାନେ ବାଧ୍ୟ ହୋଇ ତାହାଙ୍କ ଯୋଜନାକୁ ଗ୍ରହଣ କରିନେବା ପାଇଁ ରାଜି ହେଲେ । ଏକ କ୍ଷୁଦ୍ର ପାକିସ୍ଥାନ ରାଜ୍ୟ ଗଠନରେ ଜିନ୍ନା ଅସନ୍ତୁଷ୍ଟ ହେଲେ ମଧ୍ୟ ତାହା ସେ ଗ୍ରହଣ କଲେ । ଅବଶେଷରେ ୧୯୪୭ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ ବିଲାତ ପାର୍ଲିଆମେଣ୍ଟରେ ଭାରତ ସ୍ୱାଧୀନତା ଆଇନ୍ ପାଶ ହେଲା ଏବଂ ଏହି ଆଇନ୍ ବଳରେ ଅଗଷ୍ଟ ମାସ ୧୫ ତାରିଖରେ ଭାରତ ଓ ପାକିସ୍ଥାନ ଦୁଇଟି ସାର୍ବଭୌମ ରାଷ୍ଟ୍ର ହିସାବରେ ବ୍ରିଟିଶ୍‌ମାନଙ୍କ ଶାସନରୁ ମୁକ୍ତିଲାଭ କଲେ । ଏହିପରି ଭାବରେ ଦୀର୍ଘକାଳ ସଂଗ୍ରାମ ପରେ ଭାରତୀୟ ଜାତୀୟ କଂଗ୍ରେସର ଅକ୍ଳାନ୍ତ ପରିଶ୍ରମ ଫଳରେ ଏବଂ ମହାତ୍ମାଗାନ୍ଧୀଙ୍କ ଅସାଧାରଣ ନେତୃତ୍ୱ ଦ୍ୱାରା ଭାରତରୁ ବିଦେଶୀ ଶାସନ ଲୋପ ପାଇଲା । ଇତିହାସରେ ଏକ ନୂତନ ଯୁଗର ଅଭ୍ୟୁଦୟ ଘଟିଲା ।

ପ୍ରଫେସର, ଇତିହାସ ବିଭାଗ
ବାଣୀବିହାର ।

ଭାଷାହିଁ ଜୀବନୀ ଶକ୍ତି ଜାତିମାନଙ୍କର
ଯେଉଁ ଜାତି ଭାଷାହୀନ ସେ ଜାତି ବର୍ବର

ବ୍ୟାସକବି ଫକୀରମୋହନ

# କସ୍ତୁରବା ମାତୃନିକେତନର ବଡ଼ ମା

**ଶ୍ରୀ ଦିଗମ୍ବର ଶତପଥୀ**

ସମ୍ବଲପୁର ଜିଲ୍ଲାର ପାଇକମାଳ ବ୍ଲକ ସଦରମହକୁମାରୁ ପ୍ରାୟ କିଲୋମିଟରଟିଏ ଦୂରରେ ଗନ୍ଧମାର୍ଦ୍ଦନ ପର୍ବତ ପାଦଦେଶରେ କସ୍ତୁରବା ଗାନ୍ଧୀ ମାତୃ ନିକେତନ । ପ୍ରସିଦ୍ଧ ନୃସିଂହନାଥ ମନ୍ଦିର ଅତି ନିକଟରେ । ଚାଳଧର, ଭୀମଧର, କପିଳଧର ଆଦି ଜଳପ୍ରପାତ ଗୁଡ଼ିକର ରମଣୀୟ ଦୃଶ୍ୟ ଓ ଗନ୍ଧମାର୍ଦ୍ଦନର ଶୋଭା ଅତୀବ ରମଣୀୟ । ମାତୃନିକେତନ ଭିତରେ ଥରେ ପଶିଗଲେ ଅନେକ ଶିଶୁ, ବାଳକ, ବାଳିକା, ଯୁବକ, ଯୁବତୀଙ୍କୁ କାମରେ ଲାଗିଥିବାର ଦେଖିବାକୁ ମିଳେ । ଛୋଟ ପିଲେ ସମସ୍ତେ ଅଳି କରନ୍ତି ବଡ ମା'ଙ୍କ ପାଖରେ । କିଏ ଏଇ ବଡ଼ ମା' ? ସେ ହେଉଛନ୍ତି ପାର୍ବତୀ ନାନୀ । ସେବାର ଏକ ମୂର୍ତ୍ତିମନ୍ତ ଅବତାର । ଏଇ ମାର୍ଚ୍ଚ ୯ ତାରିଖରେ ତାଙ୍କୁ ରାଷ୍ଟ୍ରପତି ଶିଶୁ କଲ୍ୟାଣ କାର୍ଯ୍ୟପାଇଁ ଜାତୀୟ ପୁରସ୍କାର ଦେଇଛନ୍ତି । ପୁରସ୍କାର ଅର୍ଥ ୨୦ ହଜାର ଟଙ୍କାକୁ ମଧ୍ୟ ସେ ସେବା କାର୍ଯ୍ୟରେ ଲଗାଇବା ପାଇଁ ମନସ୍ଥ କରିଛନ୍ତି । ପୁରସ୍କାର ପାଇଁ ଦିଲ୍ଲୀ ଯିବା ପୂର୍ବରୁ ଥରେ ଭେଟି ପଚାରିଲି ପୁରସ୍କାର ପାଇଲେ ଆପଣ କ'ଣ ଅଧିକ କାମ କରିବେ ? କହିଲେ—ସେବାକୁ କ'ଣ ଟଙ୍କ ଦେଇ କିଣି ହେବ ? ପୁରସ୍କାର ଦେଇ ତାକୁ କ'ଣ ତ୍ୱରାନ୍ୱିତ କରାଯାଇ ପାରିବ ?

ଜଣେ ଅଦ୍ଭୁତ ମହିଳା । ନାହିଁ ବିଳାସ, ବ୍ୟସନ, ଆଡ଼ମ୍ବର । ଖଦୀ ଶାଢୀ ଖଣ୍ଡିକ ତାଙ୍କର ଭୂଷଣ । ତାଙ୍କର ଚାଲି, ଚଳନ, ଆଚାର, ବ୍ୟବହାର ସବୁ ଆଧୁନିକତାରୁ ଅଲଗା । ଜୀବନସାରା ସାଧନା । ସାଧା ବାଟରେ ନଯାଇ ଅରଣା ବାଟରେ ଚାଲି ନୂତନ ଅନୁଭୂତି ଅର୍ଜନ କରିବାର ପ୍ରବଳ ଇଚ୍ଛା ନୂତନ ସମସ୍ୟାର ସମ୍ମୁଖୀନ ହୋଇ ତା'ର ସମାଧାନ କରିବାଲାଗି ନିରଳସ ଉଦ୍ୟମ । ଇଚ୍ଛାଥିଲେ ଉପାୟ ଆପେ ଆପେ ଆସେ । ଅନେକ ଉପାୟ କରି ସେ ଆଜି ନୃସିଂହନାଥ କସ୍ତୁରବା ମାତୃନିକେତନର ୮୨ ଏବଂ ବୀରସିଂହଗଡ଼ସ୍ଥ ଠାକର ବାପା ବାଳନିକେତନର ୫୨ ଜଣ ବାଳକ ବାଳିକାଙ୍କର ବଡ ମା' ହୋଇ ପାରିଛନ୍ତି । କେବଳ ସେତିକି ନୁହେଁ, ନାରୀ ସମାଜକୁ ଜୀବନ ପଥରେ ଆଗେଇ ନେବା ପାଇଁ ସେ ଆଶ୍ରମରେ ଆରମ୍ଭ କରିଛନ୍ତି ବିଭିନ୍ନ ତାଲିମ କାର୍ଯ୍ୟକ୍ରମ । ପିଲମାନଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ସେ ଆଶ୍ରମରେ ଆରମ୍ଭ କରିଛନ୍ତି ବଢେଇକାମ, ସିଲେଇ, ବଗିଚା, ଚାଷ ଓ ହାତକାମ । ଏଠାରେ ସମସ୍ତେ ସ୍ୱାବଲମ୍ବୀ ହୋଇ ଗଢ଼ି ଉଠନ୍ତୁ, ତାଙ୍କର ଇଚ୍ଛା ।

ଏ ସବୁ କାର୍ଯ୍ୟକ୍ରମ ତାଙ୍କ ନିଜ ଜୀବନର ପ୍ରତିଫଳନ ମାତ୍ର ୧୯୨୬ ଜାନୁୟାରୀ ୧୯ ତାରିଖରେ ତାଙ୍କର ଜନ୍ମ ସମ୍ବଲପୁର ଜିଲ୍ଲାର ସମଲେଇ ପଦର ଗ୍ରାମରେ । ବାପା ଧନଞ୍ଜୟ ଗିରି ଥିଲେ ଗାଁ ଗୌନ୍ତିଆ ଏବଂ ମା ଶ୍ରୀମତୀ ଦେବୀ ଜଣେ ସୁଗୃହିଣୀ । ସେମାନଙ୍କର ଚାରୋଟି ସନ୍ତାନ । ଦୁଇଟି ଝିଅ ଓ ଦୁଇଟି ପୁଅ । ପାର୍ବତୀ ପିଲାଦିନେ ଅଳିଅଳ ହୋଇ ବଢିଥିଲେ ମଧ୍ୟ ସେତେବେଳର ସମାଜର ଚାଲିଚଳନ ତାଙ୍କୁ ଘରଠାରୁ ଦୂରେଇ ନେଇଥିଲା । ୧୯୩୮ରେ ମାତ୍ର ୧୨ ବର୍ଷ ବୟସରେ ସେ ସେବା କାମ ଆରମ୍ଭ କରିଥିଲେ । ମହିଳାମାନଙ୍କ ପାଇଁ ଥିବା ସମାଜର କଟକଣା ଏବଂ ଅସହାୟ ଶିଶୁମାନଙ୍କର ଯନ୍ତ୍ରଣା ତାଙ୍କ ମନରେ ରେଖାପାତ କରିଥିଲା । ସେତେବେଳକୁ ସ୍ୱାଧୀନତା ଆନ୍ଦୋଳନର ନିଆଁ ଚାରିଆଡେ ଜଳୁଥାଏ । ସେଇ ନିଆଁକୁ ସେ ଡେଇଁ ପଡ଼ିଲେ । ମାଡ ଖାଇଲେ । ପୁଲିସ ଦ୍ୱାରା ବନ୍ଦୀ ହୋଇ ଜେଲ ଗଲେ । ୧୯୩୮ରୁ ୪୧ ତିନିବର୍ଷ ସେ ରମାଦେବୀ ଓ ମାଳତୀ ଦେବୀଙ୍କ ଗହଣରେ ବରୀ ଆଶ୍ରମରେ ରହିଲେ । ତାପରେ ସେ ଗାଁ-ଗହଳିରେ ସଙ୍ଗଠନ ଓ ସେବା କାର୍ଯ୍ୟରେ ଲାଗିଗଲେ । ୧୯୪୬-୪୭ ବେଳକୁ ସେ ଥିଲେ ଓ୍ୱାର୍ଦ୍ଧାରେ । ସେଠାରୁ ସେ ପୌନାର ଆଶ୍ରମକୁ ମଧ୍ୟ ଯିବା ଆସିବା କରୁଥିଲେ । ଆଶ୍ରମ ଜୀବନର କଠୋରତାରେ ସେ ପାଇଲେ ଜୀବନର ସ୍ୱାଦ । ସତେ ଯେମିତି ଦେବୀ ପାର୍ବତୀଙ୍କର ତପସ୍ୟା । ବରଂ ତାଙ୍କର ଥିଲା ସକାମ ଯୋଗ । କିନ୍ତୁ ପାର୍ବତୀ ଗିରିଙ୍କର ନିଷ୍କାମ ସାଧନା ତାଙ୍କୁ ଜଣେ ମହୀୟସୀ ମହିଳାରୂପେ ଗଢି ତୋଳିଲା ।

ଦେଶ ସ୍ୱାଧୀନ ହେଲା । ଓ୍ୱାର୍ଦ୍ଧାରେ ସେ ସ୍ୱାଧୀନତା ଉତ୍ସବ ପାଳନ କଲେ । ୧୯୪୯ରେ ପ୍ରୟାଗ ମହିଳା ବିଦ୍ୟାପୀଠ, ଆହ୍ଲାବାଦରେ ସେ ୪/୫ ବର୍ଷ ପାଠ ପଢିଲେ । ତାପରେ ପୁଣି ଗାଁ ଗହଳକୁ ଫେରି ଆସି ବିଭିନ୍ନ ଯୋଜନାର କାର୍ଯ୍ୟକାରିତା ଲୋକଙ୍କୁ ବୁଝାଇଲେ । ୧୯୬୫ ଯାଏ ଏଣେ ତେଣେ ବୁଲି ସେବା କାମ ଚାଲିଲା । ହେଲେ ତାଙ୍କର ମନ ଏଥିରେ ସନ୍ତୁଷ୍ଟ ନଥିଲା । ୧୯୬୫ରେ ସେ ପାଇକମାଳରେ ଆଶ୍ରମଟିଏ ପ୍ରତିଷ୍ଠା କରିବା କାମରେ ଲାଗିଲେ । ମରୁଡ଼ି ପ୍ରପୀଡ଼ିତ ଏହି ଅଞ୍ଚଳର ଅନେକ ଶିଶୁ ଯେତେବେଳେ ଅନାହାରରେ ଏଣେ ତେଣେ ବୁଲୁଥିଲେ,

ସେତେବେଳେ ତାଙ୍କ ହୃଦୟ ଅଧୀର ହୋଇ ପଡ଼ିଲା । ପ୍ରଥମେ ଭଡ଼ାଘର ଆଶ୍ରମରେ ଏଇଭଳି ଶିଶୁଙ୍କୁ ଆଣି ରଖିଲେ । ଆଶ୍ରମ ସ୍କୁଲରେ ମଧ୍ୟ କିଛିଦିନ ସେମାନଙ୍କୁ ରଖି ସ୍ଥାନୀୟ ଡାକ୍ତରଙ୍କ ଦ୍ୱାରା ଚିକିତ୍ସା କରାଇଲେ । ସେତେବେଳେ ନିରୁପମା ମହାପାତ୍ର, ଚୁଡ଼ାମଣୀ ଡାଙ୍ଗି, ଫାତିମା ବିବି, ଚନ୍ଦ୍ରିକା ମହାପାତ୍ର, ସୈରିନ୍ଧ୍ରି ନାୟକ ଓ ପ୍ରମିଳା ମହାନ୍ତି ପ୍ରମୁଖ ତାଙ୍କୁ ଉତ୍ସାହିତ କରିଥିଲେ ।

ବର୍ତ୍ତମାନ ନୃସିଂହନାଥ ଠାକୁରଙ୍କ କୋଳରେ ଗଢ଼ି ଉଠିଛି, ୧୪ ଏକର ଜମିରେ ତାଙ୍କର ଆଶ୍ରମ । ସେଠାରେ ସେ ୮୨ ଜଣ ଅନାଥ ସନ୍ତାନଙ୍କର ବଡ଼ ମା' । ତା ପରେ ସେ ଆରମ୍ଭ କଲେ ବୀରସିଂହଗଡ଼ରେ ଡାକ୍ତର ଆଇଜାକ ସାନ୍ତା ବାଳ ନିକେତନ । ସେଠାରେ ମଧ୍ୟ ୫୨ ଜଣ ପିଲାଙ୍କୁ ରଖାଯାଇଛି । ବର୍ଷକରୁ ଆରମ୍ଭ କରି ଯୁବକ ପର୍ଯ୍ୟନ୍ତ ସବୁ ବୟସର ପିଲେ ବଡ଼ ମା'ଙ୍କ ପାଟିରୁ ଟିକିଏ ସ୍ନେହ ଭରା କଥା ପାଇଁ ଅନେଇ ରହନ୍ତି । କି[ଏ] ପିଠିରେ, କିଏ କାଖରେ, କିଏ କୋଳରେ । କାହାର ଔଷଧ ଦରକାର, କାହାର କ୍ଷୀର ଦରକାର ତ, କିଏ ନୃସିଂହନାଥ ମେଳା ଦେଖି ଯିବାପାଇଁ ବଡ଼ ମା' ପାଖରେ ଅଳି କରୁଛି । କିଏ ବାଜୁଛି, କିଏ ନାଚୁଛି, କିଏ ଗୀତ ଗାଉଛି । ଛ'ମାସିଆ ତାଲିମ[...] ଆସିଥିବା ଅନାଥ ଝିଅ ବୋହୂମାନେ ସିଲେଇ ବା ହାତ କାମରେ ଲାଗିଛନ୍ତି । ଦି ବର୍ଷରେ ମାଟ୍ରିକ ପାଠ ସାରିଦେବା ପାଇଁ ଆଉ କେତେ ଝିଅ ଆପ୍ରାଣ ଚେଷ୍ଟା ଚଳାଇଛନ୍ତି । ଆଶ୍ରମ କହୁଛି 'ମଣିଷ ସମାଜ ଏକ ପରିବାର' ।

କ୍ଷେତ୍ରପ୍ରଚାର ଅଫିସର,
ସମ୍ବଲପୁର ।



ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସମାବର୍ତ୍ତନ ଉତ୍ସବରେ ଶ୍ରୀ ଭେଙ୍କଟରମଣଙ୍କ ଦୀକ୍ଷାନ୍ତ ଭାଷଣ—୧୬।୨।୮୪

# ବେଜଲଗେଟ୍ ହତ୍ୟା ମୋକଦ୍ଦମାର ବିଚାର

ଶ୍ରୀ ମଦନ ମୋହନ ଦାଶ

୧୯୩୯ ମସିହା ଜାନୁୟାରୀ ମାସ ୫ ତାରିଖ ଦିନ ରଣପୁର ରାଜପଥ ଉପରେ ବେଜ୍‌ଲଗେଟଙ୍କୁ ହତ୍ୟା କରାଗଲା । ତାପରେ ୬ ତାରିଖ ଦିନ ସକାଳସୁଦ୍ଧା ରଣପୁର ଜନଶୂନ୍ୟ ହେଲା । ଲୋକେ ଆତଙ୍କ ମଣି ଘରଦ୍ୱାର ଗାଈ ଗୋରୁ, ଛେଳି ମେଣ୍ଢା ଧନ ସମ୍ପତ୍ତି ଓ ଧାନ ଗୃହଜର ଛାଡ଼ି ତ୍ୟାଗକରି ରାତି ରାତି ପିନ୍ଧିବା ଲୁଗା ଖଣ୍ଡି ଛଡା ଅନ୍ୟ କିଛି ନନେଇପାରି ଜୀବନ ରକ୍ଷାପାଇଁ ନିକଟବର୍ତ୍ତୀ ବ୍ରିଟିଶ ଏରିଆ ତଥା ଖୋର୍ଦ୍ଧା ଖାସ୍‌ମାହାଲର ଟାଙ୍ଗି ଥାନା, ବେଗୁନିଆ ଥାନା ଓ ବୋଲଗଡ ଥାନା ମାନଙ୍କର ବିଭିନ୍ନ ଗ୍ରାମରେ ଯାଇ ଶୀତ କାକରରେ ପଡ଼ି ରହିଲେ । ଏପରିକି ରଣପୁରର ବହୁ ଗର୍ଭିଣୀ ସ୍ତ୍ରୀ ରାସ୍ତାରେ ପ୍ରସବ କରି ଶିଶୁର ଯତ୍ନ ନନେଇ ପାରି ମୃତ ଶିଶୁକୁ ରାସ୍ତା କଡରେ ପକାଇ ଦେଇ ପଳାଇ ଯାଇଥିଲେ । ଉପରୋକ୍ତ ଥାନାମାନଙ୍କର ଗ୍ରାମବାସୀମାନେ ଚାଉଳ, ପଇସା ଚାନ୍ଦାକରି ବହୁଦିନ ଧରି ଅନ୍ନପାଣି ଯୋଗାଇବା ଫଳରେ ରଣପୁର ଲୋକେ ବଞ୍ଚିଯାଇଥିଲେ । କିନ୍ତୁ ସେତେବେଳେ ବ୍ରିଟିଶ ଏରିଆରେ ଥିବା ସରକାରୀ କର୍ମଚାରୀମାନେ କୌଣସି ପ୍ରକାର ସାହାଯ୍ୟ କରିନଥିଲେ । ବରଂ ସାହାଯ୍ୟ କରୁଥିବା ଲୋକମାନଙ୍କୁ ଭୟ ଦେଖାଇ କହୁଥିଲେ । "ସାହେବମରା ଲୋକମାନଙ୍କୁ କୌଣସି ସାହାଯ୍ୟ କରନାହିଁ ।"ତଥାପି ଲୋକମାନେ ବହୁ ସାହାଯ୍ୟକରି ରଣପୁର ଜନତାର ପ୍ରାଣରକ୍ଷା କରିଥିଲେ ।

ଲେଖକ ଆଜି ରଣପୁରବାସୀମାନଙ୍କ ପକ୍ଷରୁ ସେମାନଙ୍କ ନିକଟରେ କୃତଜ୍ଞ ।

ରଣପୁର ଜନଶୂନ୍ୟ ହୋଇଥିଲେ ମଧ୍ୟ ବ୍ରିଟିଶ ସରକାରଙ୍କ ନିର୍ଦ୍ଦେଶରେ ଗୁର୍ଖା ରେଜିମେଣ୍ଟ, ପଞ୍ଜାବ ରେଜିମେଣ୍ଟ ଶହ ଶହ ସଂଖ୍ୟାରେ ଆସି ରଣପୁର ଦାଣ୍ଡରେ ଓ ମଫସଲ ଅଞ୍ଚଳରେ ବୁଲି ବୁଲି ପଇଁତରା ମାରୁଥିଲେ । ପଦାରେ ବୁଲୁଥିବା ଗୋରୁଗାଈ ଛେଳି, ମେଣ୍ଢାମାନଙ୍କୁ ଧରିନେଇ ସେମାନଙ୍କର ମାଂସ ଖାଇ ଆନନ୍ଦରେ ମଜଲ୍ସ କରୁଥିଲେ ।

ସେତେବେଳେ ଓଡ଼ିଶାରେ ମାନ୍ୟବର ଶ୍ରୀ ବିଶ୍ୱନାଥ ଦାଶ, ଶ୍ରୀ ନିତ୍ୟାନନ୍ଦ କାନୁନଗୋ ଓ ବୁଧେରାମ ଦୁବେଙ୍କ ନେତୃତ୍ୱରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ ହୋଇ ସାରିଥାଏ । ଶ୍ରୀଯୁକ୍ତ ବିଶ୍ୱନାଥ ଦାଶ ପ୍ରଧାନ ମନ୍ତ୍ରୀ ଥାଆନ୍ତି । ଦୈବାତ୍ ଭାରତର ତତକାଳୀନ ବଡଲାଟ ଓଡ଼ିଶା ଗସ୍ତରେ ଆସିଥିଲେ । ପ୍ରଧାନ ମନ୍ତ୍ରୀ ମହୋଦୟ ବଡଲାଟଙ୍କୁ ବହୁତ ବୁଝାଇ କହିଥିଲେ ବେଜ୍‌ଲ-ଗେଟ ହତ୍ୟା ବିଚାର କରାଯାଇ ପ୍ରକୃତ ଦୋଷୀମାନଙ୍କୁ ଦଣ୍ଡ ଦିଆଯାଉ । ରଣପୁରର ସମସ୍ତ ଜନତା ଉପରେ ଆକ୍ରୋଶମୂଳକ କାର୍ଯ୍ୟ କଲେ ଓଡ଼ିଶାର ଲୋକେ ଏହା ବରଦାସ୍ତ କରି ପାରିବେ ନାହିଁ ।

ଏ ପ୍ରକାର ରାଜନୈତିକ ଅଭିସନ୍ଧି ମୂଳକ କଥାଶୁଣି ବଡଲାଟ ସ୍ୱୀକାର କଲେ, ଏବଂ ମୋକଦମା ବିଚାର କରାଯାଉ ବୋଲି ବିଚାର ବିଭାଗକୁ ନିର୍ଦ୍ଦେଶ ଦେଲେ ।

ଓଡ଼ିଶାର ତତ୍‌କାଳୀନ ଗୋଇନ୍ଦା ବିଭାଗ ଇନସ୍‌ପେକ୍ଟର ମନ୍ମଥ ପଣ୍ଡା ଓ ଦ୍ୱିବେଦୀ ଦୁଇଜଣଙ୍କୁ ସରକାର ପ୍ରଥମ ତଦନ୍ତ ପାଇଁ ରଣପୁରକୁ ପଠାଇଲେ । ସେତେବେଳେ ରଣପୁରରେ ଦୀନବନ୍ଧୁ ମହାନ୍ତି ନାମକ ଜଣେ ପୋଲିସ୍ ସବ୍-ଇନସ୍‌ପେକ୍ଟର ଏବଂ ଲିଙ୍ଗରାଜ ମହାପାତ୍ର ପ୍ରଭୃତି ୫ ଜଣ ଆସିଷ୍ଟାଣ୍ଟ୍ ସବ୍-ଇନସ୍‌ପେକ୍ଟରଙ୍କୁ ଧରି ରଣପୁରରେ ସେମାନେ ତଦନ୍ତ ଲୀଳା ଆରମ୍ଭ କଲେ ।

ଗୋଟିଏ ଗୁଳିରେ ଦୁଇଟି ଚଢ଼େଇ ମାରିବା ଲକ୍ଷ୍ୟ ରଖି ରଣପୁର ପୋଲିସ୍ ମନ୍ମଥ ବାବୁଙ୍କୁ ବଝାଇ ଦେଇଥିଲେ, ପ୍ରକୃତ ମାରିବା ଲୋକଙ୍କୁ ଧରିଲେ କିଛି ଲାଭ ହେବନାହିଁ । ବରଂ ପ୍ରଜାମଣ୍ଡଳର ନେତୃବୃନ୍ଦଙ୍କୁ ହତ୍ୟା ମୋକଦ୍ଦମାରେ ସଂପୃକ୍ତ କଲେ ବେଜ୍‌ଲଗେଟ ହତ୍ୟା ମୋକଦମା ବିଚାର ହେବ ଏବଂ ନେତାମାନେ ଫାସୀ ପାଇଲେ ରଣପୁରରୁ ସବୁଦିନପାଇଁ କଂଗ୍ରେସ ତଥା ପ୍ରଜାମଣ୍ଡଳ ଆନ୍ଦୋଳନ ଲୋପ ପାଇବ । ସେ ସଙ୍ଗେ ସଙ୍ଗେ ରଣପୁର ଲୋକଙ୍କ ଠାରୁ ପଇସାପତ୍ର ମଧ୍ୟ ଯଥେଷ୍ଟ ମିଳିବ ।

ସେହି ଅନୁସାରେ ରଣପୁର ଥାନା ଡାଏରିରେ ମୋକଦ୍ଦମାକୁ ଲିଖିକରି ମଦନ ମୋହନ ଦାଶ, ରଘୁନାଥ ମହାନ୍ତି, ଦିବାକର ପରିଡା ପ୍ରଭୃତି ନେତୃସ୍ଥାନୀୟ ଲୋକମାନଙ୍କ ନାମ ଉଲ୍ଲେଖ କରାଯାଇ ମର୍ଡର କେସ୍‌ରେ ସାମିଲ କରାଗଲା । କିନ୍ତୁ ପ୍ରଜାମଣ୍ଡଳର ସଭାପତି ଶ୍ରୀ ବନମାଳୀ ରାମ, ଉପସଭାପତି ଶ୍ରୀ କୃପାସିନ୍ଧୁ ମିଶ୍ର ପ୍ରଭୃତିଙ୍କୁ ମର୍ଡର କେସ୍‌ରେ ପକାଇ ପାରି ନଥିଲେ । ଯେହେତୁ ଆପଣ-

ମାନଙ୍କର ମନେଥିବ ପୂର୍ବ କଥିତ ଅନୁସାରେ ସେମାନେ ସେଦିନ ମହତାବଙ୍କ ନିକଟରେ କଟକରେ ଥିଲେ । ଏବଂ କୃପାସିନ୍ଧୁ ମିଶ୍ର ଜେଲ୍‌ରେ ବନ୍ଦୀଥିଲେ । ତଥାପି ସେମାନଙ୍କୁ ୧୪୯, ୧୪୭ ପ୍ରଭୃତି ଦଫା ମିଥ୍ୟାରେ ଯୋଡ଼ି ମୋକଦ୍ଦମା ପ୍ରସ୍ତୁତ କରିଥିଲେ, ସେ ମିଥ୍ୟା ମୋକଦ୍ଦମାମାନଙ୍କରେ ସେମାନଙ୍କୁ ଦୁଇବର୍ଷରୁ ଊର୍ଦ୍ଧ୍ୱ କାରାଦଣ୍ଡ ଆଦେଶ ହୋଇଥିଲା ।

ପଇସା ପାଇବା ପାଇଁ ରଣପୁରର ଧନିମାନି ଶ୍ରେଣୀର ଲୋକମାନଙ୍କୁ ଧରିନେଇ, ତୁମେମାନେ ସାହେବଙ୍କୁ ମାରିଛ ବୋଲି ଧମକାଇ ମାଡ ମାରିବା ଆରମ୍ଭ କରିଦିଅନ୍ତି । ସେମାନଙ୍କର ଘରର ଲୋକେ ଖବର ପାଇ ଟାଉଟର ମାନଙ୍କ ଜରିଆରେ ଶହ ଶହ ଟଙ୍କା ପଇସା ଦେଇ ଖସି ଯାଉଥିଲେ । ଅତି ଗରୀବ, ନିରୀହ ଲୋକ ହଟନାୟକ, ବାଙ୍କସ୍ୱାଇଁ, ଭାଗବତ ବେହେରା, ଭଗବାନ ସାହୁ, ମାଗିନାଏକ ପ୍ରଭୃତିଙ୍କଠାରୁ ଟଙ୍କାପଇସା ନପାଇବାରୁ ସେମାନଙ୍କୁ ମର୍ଡର କେସ୍‌ରେ ପକାଉଥିଲେ ।

ସେତେବେଳକୁ ରଣପୁରରେ ଗୋଟିଏ ଥାନା ଓ ୩ଟି ଫାଣ୍ଡି ଥାଏ । ପ୍ରତ୍ୟେକଫାଣ୍ଡି ଓ ଥାନାରେ ସବୁଠି ଏହି ମର୍ଡର କେସ୍‌ର ତାଣ୍ଡବଲୀଳା ଚାଲିଥାଏ । ସୁନାଖଳା ଫାଣ୍ଡିରେ ପୋଲିସ୍ ଇନ୍‌ଚାର୍ଜବେଳେ ଗୋଟିଏ ଲୋକକୁ ମାଡ଼ ମାରୁ ମାରୁ ମାରି ଦେଇଥିଲେ । ତାକୁ ରାତି ଅଧରେ ଆଣି ସୁନାଖଳା ରଣପୁର ରାସ୍ତାକଡ଼ରେ ଗୋଟିଏ ଆମ୍ବଗଛ ଡାଳରେ ଦଉଡ଼ି ଲଗାଇ ଝୁଲାଇଦେଇଥିଲେ ଏବଂ ସେଠିକାର ପୋଲିସ୍ ରିପୋର୍ଟ ଦେଇଥିଲେ ଲୋକଟି ଦଉଡ଼ିଦେଇ ଆତ୍ମ ହତ୍ୟା କରିଛି । ଏହିପରି ୫ଟି ଘଟଣା ଘଟିଯାଇଥିଲେ ମଧ୍ୟ ସେ ସବୁ ଶୁଣିବାକୁ ବା ମୁକାବିଲା କରିବାକୁ କେହି ସାହସ କରିନଥିଲେ । ପୋଲିସ୍ ତଦନ୍ତ ସମୟେ ଧନୀ ଲୋକମାନଙ୍କୁ ଧରିଆଣି ପ୍ରଥମେ ହାତରେ ହାତକଡ଼ା ପିନ୍ଧାଇ ଦେଉଥିଲେ । ତାପରେ ବିଛୁଆତି ପତ୍ର ଓ ବାଇଡ଼ଙ୍କ ଫଳ ଆଣି ସେମାନଙ୍କ ଦେହରେ ବୋଳି ଦେଉଥିଲେ । ଅତି ମର୍ମନ୍ତୁଦ ଯନ୍ତ୍ରଣାରେ ସେମାନେ ଛଟପଟହୋଇ କାନ୍ଦ-ବୋବାଳି କରିବାବେଳେ ପାଖେ ପାଖେ ଟାଉଟର ରହି ଦର ଛିଣ୍ଡାଉଥିଲେ । ଦଶହଜାରରୁ ଆରମ୍ଭକରି ଦୁଇତିନିହଜାର ନଗଦଟଙ୍କା ଦାଖଲ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ନିର୍ଦ୍ଦୋଷରେ ଖଲାସକରି ଦିଆଯାଉଥିଲା । ଯେଉଁମାନେ ପଇସାପତ୍ର ଦେବାକୁ ରାଜି ହେଉନଥିଲେ ସେହିପରି କେତେକ ଲୋକଙ୍କୁ ମୁଦାଲାହରୁ କରାଯାଉଥିଲା ।

ଏହିପରି ଯେଉଁମାନେ ଅତ୍ୟାଚାର କରିଥିଲେ, ଆମ୍ଭେମାନେ ଜେଲରୁ ଖଲାସହୋଇ ଆସିବାପରେ ମୁଁ ନିଜେ ଦେଖିଛି ଜଣେ ପୋଲିସ୍ ଅଫିସର କଟକ ବଡ଼ ଡାକ୍ତରଖାନାରେ ବହୁଦିନ ପଡ଼ି ପଡ଼ି ପାଟିବାଟେ ମଳ ବାନ୍ତିକରି ମରିଥିଲେ ।

ଲୋକମାନେ ମିଛରେ ସାକ୍ଷୀଦେବା ଏକ କାଠୀକର ପାଠ ହେଲା । ପ୍ରତ୍ୟେକ ସାକ୍ଷୀକୁ ବାଧ୍ୟ କରାଗଲା ଯେ, ତୁମ୍ଭେମାନେ କହିବ ରଘୁନାଥ ମହାନ୍ତି, ଦିବାକର ପରିଡ଼ା, ମଦନମୋହନ ଦାଶ, ମୁରଲିଧର ପଣ୍ଡା, ଦୟାନିଧି ପରିଡ଼ା ମାନେ ସାହେବଙ୍କୁ ଠେଙ୍ଗା ଧରି ବାହାରିଥିଲେ ଏବଂ ଲୋକମାନଙ୍କୁ ବାଡ଼ା ବାଡ଼ା ବୋଲି କହୁଥିଲେ । ଏଥିରେ କୌଣସି ସାକ୍ଷୀ ରାଜି ନହେଲେ ସାକ୍ଷୀମାନଙ୍କୁ ପିଟି ପିଟି ବେହୋସ କରି ଦିଆଯାଉଥିଲା ଏବଂ ସେହି ମାଡ଼ରେ ଦୁଇଟି ଲୋକ ସଙ୍ଗେ ସଙ୍ଗେ ପ୍ରାଣ ହରାଇଥିଲେ । ସେମାନଙ୍କୁ ନେଇ ରଣପୁରର ଘନମାଳ ଜଙ୍ଗଲ ଭିତରେ ରାତାରାତି ପକାଇ ଦିଆଯାଇଥିଲା ଏବଂ ପୋଲିସ୍ ରିପୋର୍ଟ ଦେଇଥିଲେ ଯେ ବାଘ ଦୁଇଟି ମଣିଷ ମାରି ଦେଇଛି ।

ମୋର ନିଜ ଜନ୍ମସ୍ଥାନ ନାଟିମୀର ସର୍ଗତଃ ବାସୁ ସାହାରା ଓ ଲିଙ୍ଗରାଜ ସ୍ୱାଇଁ ନାମକ ଦୁଇଜଣ ବ୍ୟକ୍ତିଙ୍କୁ ବିଶେଷଭାବରେ ମୋ ବିରୁଦ୍ଧରେ ମିଥ୍ୟା ସାକ୍ଷ୍ୟ ଦେବାପାଇଁ ପୋଲିସ୍ ବତାଇଥିଲେ ସେଥିରେ ସେଦୁହେଁ ରାଜି ହୋଇନଥିଲେ । ତେଣୁ ସେ ଦୁହିଁଙ୍କୁ ତିନିଦିନଯାଏ ଉପବାସରେ ପକାଇ ରଖିଥିଲେ ଏବଂ ଖୁବ୍ ମାଡ଼ ଦେଇଥିଲେ । ମାଡ଼ଖାଇ ଜଣଙ୍କର ଲୁଗାପଟାରେ ଝାଡ଼ାହୋଇ-ଯାଇଥିଲା ଏବଂ ମାଡ଼ରେ ଭଭୟଙ୍କର ପିଠି ଫାଟି ଯାଇଥିଲା । ତଥାପି ନିଷ୍ଠୁର ପୋଲିସ୍ ଓ ଗୁଣ୍ଡାମାନେ ସେ ଦୁହିଁଙ୍କୁ ଛାଡ଼ିନଥିଲେ । ଏ ଖବର ପାଇ ସେମାନଙ୍କର ପୁଅମାନେ ଓ ବନ୍ଧୁବାନ୍ଧବମାନେ କଂସା, ଗିନା, ଗରା, ଡାଳ ଇତ୍ୟାଦି ବିକ୍ରୀ କରି ପାଞ୍ଚଶ ଟଙ୍କା ଦେବାପରେ ସେମାନଙ୍କୁ ଛାଡ଼ିଦେଇଥିଲେ ।

ଶେଷରେ ଲୋକମାନଙ୍କୁ ଶୁଣାଇ ଦିଆଗଲା ଯେ ଯେଉଁମାନେ ମିଥ୍ୟାସାକ୍ଷୀ ଦେବେ ସେମାନେ ଘର ତିଆରପାଇଁ ଜଙ୍ଗଲରୁ ମନଇଚ୍ଛା ଶାଳ, ପିଆଶାଳ ପ୍ରଭୃତି ମୂଲ୍ୟବାନ କାଠ ବିନା ଫିସ୍‌ରେ ପାଇବେ । ଗ୍ରାମମାନଙ୍କରେ ସେମାନଙ୍କୁ ସରବରାକାର କରିଦିଆଯିବ । ସାକ୍ଷୀଦେବାପାଇଁ ଆସିବା ଦିନ ଖାଇବା ପିଇବା ଛାଡ଼ି ଜଣପ୍ରତି ୮୫୦ଙ୍କା କରି ଦିଆଯିବ ଏବଂ ସବୁଦିନ ରାଜଭକ୍ତ ପ୍ରଜା ତାଲିକାରେ ସେମାନଙ୍କ ନାମ ରଖାଯିବ । ଆପଦ ବିପଦ ସମୟେ ପୋଲିସ୍ ସେମାନଙ୍କୁ ସବୁପ୍ରକାର ସାହାଯ୍ୟ କରିବ । ସେମାନଙ୍କର ମାଲି ମୋକଦ୍ଦମା ସମୟେ ଅମଲାମାନେ ମଧ୍ୟ ସେମାନଙ୍କୁ ସବୁପ୍ରକାର ସାହାଯ୍ୟ କରିବେ । ଏତେ ସୁବିଧା ସତ୍ତ୍ୱେ ସ୍ୱତଃ ପ୍ରବୃତ୍ତହୋଇ ଲୋକେ ସାକ୍ଷୀ ଦେଉନଥିଲେ । ବାଧ୍ୟରେ ଏବଂ ମାଡ଼କୁ ଡରିଡରି ଲୋକେ ସାକ୍ଷୀଦେଇଥିଲେ ।

ମୋର ମନେଅଛି ମୋକଦ୍ଦମା ବିଚାର ସମୟେ ମୁଁ ମୋର ସହକର୍ମୀମାନଙ୍କ ସହିତ କାଠ ଗଡ଼ାଭିତରେ ବସିଥାଉ, ସାକ୍ଷୀମାନେ ଥରେଇ ଥରେଇ କୋର୍ଟରେ ଜମାନ୍‌ବନ୍ଦୀ ଦେଉଥାନ୍ତି, ଏଣେ ଆମଆଡ଼େ ଚାହିଁଦେବା ମାତ୍ରେ ସେମାନଙ୍କର ଆଖିରୁ ଲୁହଗଡ଼ି ପଡୁଥିଲା ଏବଂ ସଙ୍ଗେ ସଙ୍ଗେ ସେ ଲୁହ ଲୁଗା କାନିରେ ପୋଛି ପକାଉଥିଲେ ।

ଗୟାର ସେସସନ୍‌ସ୍ ଜଜ୍ ମିଃ ସିଥରର ନାମକ ଜଣେ ଗୋରା ଜଜ୍ ମୋକଦ୍ଦମା ବିଚାର କରୁଥାନ୍ତି । ରଣପୁର ଥାନା କାଞ୍ଚନପୁର ଗ୍ରାମର ଜଣେ ବିହାରୀ ସାହୁ ନାମକ ସାକ୍ଷୀ-କହିଥିଲେ "ହଜୁର-ଧର୍ମାବତାର ! ଯଦି ହଜୁରଙ୍କ କୋର୍ଟରେ ବର୍ତ୍ତମାନ ମିଛ ସାକ୍ଷୀ ଦେବି, ତେବେ ଏଠୁ ଯିବା ସଙ୍ଗେ ସଙ୍ଗେ ମିଠା ଖେଚେଡ଼ି ଓ ମାଂସ ତରକାରୀ ଖାଇ ୮୫୦ଙ୍କା ଅଣ୍ଟାରେ ଖୋସି ଘରକୁ ଯିବି । ସତକହିଲେ ଏଠୁ ଯିବା ସଙ୍ଗେ ସଙ୍ଗେ ମାଡ଼ଭରଣ ସାହୁଲେ ହେବ । ସେ ଏତିକି କହିବାମାତ୍ରେ ସରକାରୀ ଓକିଲ ଜଜ୍‌ଙ୍କୁ ବୁଝାଇ ଦେଇଥିଲେ ଯେ ତାର ମୁଣ୍ଡ ଖରାପ ତେଣୁ ଆଜି ତା ସାକ୍ଷୀ ନିଆଯିବ ନାହିଁ ପରେ ନିଆଯିବ ।

ତାପରେ ବିହାରୀ ସାହୁଙ୍କୁ ନେଇ ପୋଲିସ୍ ନଜର ଉପରେ ରଖିଲେ ସେ ସୁବିଧା ଦେଖି ମାଡ଼ ଭୟରେ ପୋଲିସ ପାଖରୁ ପଳାଇ ଯାଇଥିଲେ ଏବଂ ଗ୍ରାମକୁ ନଯାଇ ବହୁଦିନ ପର୍ଯ୍ୟନ୍ତ ବାହାରେ ଲୁଚି ଛପି ରହି ଦୀର୍ଘ ୮ବର୍ଷ ପରେ ଦେଶ ସ୍ୱାଧୀନ ହେବାରୁ ସେ ଗ୍ରାମକୁ ଫେରି ଆସି ଗ୍ରାମରେ ପ୍ରାୟ ୫ବର୍ଷ ରହିବାପରେ ମାନବଲୀଳା ସମ୍ବରଣ କରିଥିଲେ ।

ମୋକଦମା ବିଚାର ସମୟେ ଆମ ମୁଦାଇମାନଙ୍କ ତରଫରୁ କଟକର ଆଡ଼ଭୋକେଟ ଶ୍ରୀଯୁକ୍ତ ଦୀନବନ୍ଧୁ ସାହୁ, ଶ୍ରୀଯୁକ୍ତ ଗଦାଧର ଯେନା, ସେଖ୍ ହାପିସ୍ ମିଆଁ ମାନେ ମୋକଦମା ଲଢୁଥିଲେ କିନ୍ତୁ ସେମାନେ ରଣପୁର ଗଡ଼ରେ କିମ୍ବା ରଣପୁର ଏରିଆରେ କୌଣସି ଗ୍ରାମରେ ରହି ମୋକଦ୍ଦମା ଲଢ଼ିବାପାଇଁ ସେମାନଙ୍କୁ ସୁବିଧା ଦିଆଯାଇନଥିଲା । ତେଣୁ ସେମାନେ ବାଧ୍ୟହୋଇ ଖୋର୍ଦ୍ଧା ଥାନା ପିଚୁକୁଳି ଡାକ ବଙ୍ଗଳାରେ ରହି ପ୍ରତିଦିନ ୧୮ ମାଇଲ ବାଟ ଗାଡ଼ିରେ ଯିବାଆସିବା କରି ମୋକଦମା ଲଢୁଥିଲେ । ସେମାନେ ରଣପୁର ଆସି କୋର୍ଟ କାମ ଶେଷ କରି ଫେରିଯିବା ପର୍ଯ୍ୟନ୍ତ ପୋଲିସ୍ ସେମାନଙ୍କର ପାଖେ ପାଖେ ରହି ସେମାନଙ୍କର କାର୍ଯ୍ୟକଳାପ ପ୍ରତି ଲକ୍ଷ୍ୟ ରଖୁଥିଲେ । ତଥାପି ସେମାନେ ନିର୍ଭୟରେ ସେମାନଙ୍କର କର୍ତ୍ତବ୍ୟ କରିଯାଉଥିଲେ । ସେତେବେଳେ ରଣପୁରର ଯେଉଁ ଭୟାବହ ଅବସ୍ଥା—ସେ ସମୟରେ ଦୀନବନ୍ଧୁ ବାବୁ ମୁଖ୍ୟ ହୋଇ ତାଙ୍କର ସହକର୍ମୀ ଓକିଲମାନଙ୍କୁ ସଙ୍ଗରେ ଆଣି ସାହାସର ସହିତ ଯେଉଁ ଉପକାର କରି ଯାଇଛନ୍ତି—ସେମାନେ ରଣପୁର ଇତିହାସରେ ଚୀର ସ୍ମରଣୀୟ ହୋଇ ରହିବେ । ସେମାନେ ବହୁ ଚେଷ୍ଟା କରିବାସତ୍ତ୍ୱେ ରଘୁ-ଦିବାକର ଦୁଇଜଣଙ୍କୁ ଫାସୀ କରାଗଲା । ସେମାନେ ନଆସିଥିଲେ କେତେକଣଙ୍କୁ ଯେ ଫାସୀ ହୋଇଥାନ୍ତା ତାର ଠିକଣାନାହିଁ ।

ଗୋରା ଜଜ୍ ସିଅରର ସାହେବ ରଣପୁରକୁ ଆସିବାବେଳେ ତାଙ୍କ ସାଙ୍ଗରେ ଜଣେ ଗୟାନିବାସୀ ମୁସଲମାନ ଅର୍ଡ଼ଲି ଆସିଥିଲେ । ଜେଲ ଭିତରେ ଅସ୍ଥାୟୀ ଘରଘର ତିଆର କରାଯାଇ ସେହିଠାରେ ମୋକଦମା ବିଚାର ହେଉଥାଏ । ଆମ୍ଭେମାନେ କୋଠରୀ ଭିତରେ ବନ୍ଦ୍ ଥାଉଁ । ଜଜ୍ ଆସିବାର ଦୁଇଦିନପରେ ଦିନେ ସେହି ଅର୍ଡ଼ଲିଙ୍କ ସହିତ କଥାଭାଷା ହେବାର ସୁଯୋଗ ପାଇଥିଲୁ । ଆମଭିତରୁ ଜଣେ ପଚାରିଥିଲେ ; "ବାବୁଜୀ ଓ ସାହେବ କୈସା ଆଦିମ୍ ହେ ?" ସଙ୍ଗେ ସଙ୍ଗେ ସେ ଉତ୍ତର ଦେଇଥିଲେ, "ସାହେବ ବହୁତ କଡ଼ା ଆଦିମ୍ ହେ । ଓ ସାହେବ ଗୟା ଆନେକା ଦୋ ସାଲ ହୋଗୟା । ଦୋ ସାଲକେ ଅନ୍ଦର ମେ କମ୍‌ସେ କମ୍ ଦୋଶହ ଆଦିମ୍‌କୁ ଫାଶୀମେ ଡାଲାହେ । ଗୟାକୋଟ୍ ମେ ବହୁତ୍ ମର୍ଡ଼ର କେସ୍ ପେଣ୍ଡିଙ୍ଗ ଥା ଓ ସାହେବ ଆନେକା ବାଦ୍ ସବ୍ କେସ୍ ଫଏସଲା କରଦିଆ, ଇସ୍‌ଲିଏ ସରକାର ବାହାଦୁର ଇନ୍‌କୋ ଇହାଁପର ଭେଜା ହେ" ।

ଏକଥା ଶୁଣି ମୋର ସାଙ୍ଗମାନେ ଆତଙ୍କ ମଣିଲେ । ସମସ୍ତେ କହିଲେ ଆମେ ସମସ୍ତେ ଦିନେ ଫାସୀ କାଠରେ ଝୁଲିବା ।

ମୋକଦମା ବିଚାରପାଇଁ ଦୁଇଥର ଜଜ୍ କୋଟ୍ ବସିଥିଲା ପ୍ରଥମ ଜଜ୍ କୋର୍ଟରେ ଗୋରା ସାହେବ ସିଅରର ବିଚାର ପଢିଥିଲେ । ସେ ରଘୁନାଥ ମହାନ୍ତି, ଦିବାକର ପରିଡ଼ା, ଚିନ୍ତା ନାଏକ ଏପରି ୩ଜଣଙ୍କୁ ଫାସୀ, ମାଗି ନାୟକ, ବାଙ୍କ ସ୍ୱାଇଁ, ନରସିଂହ ସାହୁ, ଭଗବାନ ସାହୁ, ଭାଗବତ ବେହେରା, ଅନ୍ତର୍ଯ୍ୟାମୀ କହସ, କୃଷ୍ଣଚନ୍ଦ୍ର ରାଉତ, ହଟ ନାୟକ ଏପରି ୮ଜଣଙ୍କୁ ଯାବତ୍‌ଜୀବନ ଦୀପାନ୍ତର ଦଣ୍ଡାଦେଶ କରିଥିଲେ ।

୨ୟଥର ଜଜ୍ କୋଟ୍‌ରେ ସେତେବେଳର ଢେଙ୍କାନାଳ-ଷ୍ଟେଟ୍‌ର ସେସନ୍‌ସ ଜଜ୍ ମିଃ. ସେନ୍‌ଗୁପ୍ତ ମୋତେ (ମେଦନମୋହନ ଦାଶ) ମୁରଲିଧର ପଣ୍ଡା ଓ ଦୟାନିଧି ପରିଡ଼ା ୩ଜଣଙ୍କୁ ଯାବତ୍‌ଜୀବନ ଦୀପାନ୍ତର ଦଣ୍ଡାଦେଶ କରିଥିଲେ ।

ଏହାପରେ ଉଭୟ ଜଜ୍‌ଙ୍କ ରାଏ ବିରୁଦ୍ଧରେ ଅପିଲ୍‌କରାଯାଇଥିଲା । ଅପିଲ୍ ମୋକଦମା ସ୍ୱତନ୍ତ୍ରଭାବେ ସେତେବେଳେ ସମ୍ବଲପୁର ପୋଲିଟିକାଲ ଏଜେଣ୍ଟଙ୍କ ହେଡ୍‌କ୍ୱାଟରରେ ବିଚାର କରାଯାଇଥିଲା । ମିଃ. ଅଗ୍ରୱାଲ୍ ନାମକ ଜଣେ ହାଇକୋର୍ଟ ଜଜ୍ ଉକ୍ତ ଅପିଲ ମୋକଦମା ବିଚାର କରିଥିଲେ । ସେ ତାଙ୍କ ରାଏରେ ଅନ୍ୟସମସ୍ତ ଦଣ୍ଡାଦେଶ କାଏମ୍ ରଖିଥିଲେ । କେବଳ ଚିନ୍ତା ନାଏକଙ୍କୁ ଫାସୀଦଣ୍ଡରୁ ମୁକ୍ତକରି ୨ବର୍ଷ ସଶ୍ରମ କାରାଦଣ୍ଡ ଆଦେଶ ଦେଇଥିଲେ ।

ହାଇକୋର୍ଟ ବିଚାର ଶେଷହେବାପରେ ଆମ୍ଭମାନଙ୍କୁ ରଣପୁର ଜେଲ୍‌ରୁ କେଉଁଝର ଷ୍ଟେଟ୍ ଜେଲ୍‌କୁ ନିଆଗଲା । ରାସ୍ତାରେ ବସ୍ ଏବଂ ରେଲଗାଡ଼ିରେ ଆମ୍ଭମାନଙ୍କୁ ନିଆଯିବାବେଳେ ଗୋଡ଼ରେ ଡାଙ୍ଗିଆ ବେଡ଼ି, ହାତରେ ହାତକଡ଼ା ଓ ଅଣ୍ଟାରେ ରସି ଲଗାଇ ଆମ୍ଭ ୧୧ ଜଣଙ୍କ ସଙ୍ଗରେ ୨୫ ଜଣ ସିକନ୍ଦରାବାଦ୍ ଫୋର୍ସ ଏବଂ ଜଣେ ଗୋରା ମେଜର ଯାଇଥିଲେ । ରାତି ୧୦ ଟା ବେଳେ ଆମ୍ଭମାନଙ୍କୁ କେଉଁଝର ଜେଲ୍‌ରେ ଭର୍ତ୍ତିକରି ତହିଁ ଆରଦିନ ସେମାନେ ରଣପୁର ଫେରି ଆସିଥିଲେ ।

କେବଳ ଫାସି ଆଦେଶ ହୋଇଥିବା ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ାଙ୍କୁ ରଣପୁର ଜେଲ୍‌ରେ ଆଉ କିଛି ଦିନ ପାଇଁ ରଖାଯାଇଥିଲା । କାରଣ ସେ ଦୁହେଁ ପୁନର୍ବାର ଏକ ଅପିଲ୍ ଭାରତର ବଡ଼ଲାଟଙ୍କ ନିକଟରେ ଦାଏର କରିଥିଲେ କିନ୍ତୁ ବଡ଼ଲାଟ କିଛି ନଶୁଣି ଫାସି ଆଦେଶ କାଏମ୍ ରଖିଥିଲେ । ତେଣୁ ସେ ଦୁହିଁଙ୍କୁ ଭାଗଲପୁର ଜେଲ୍‌କୁ ନିଆଯାଇ ସେହିଠାରେ ଫାସି ଦିଆଯାଇଥିଲା ।

ପ୍ରିୟ ପାଠକ ବନ୍ଧୁ ଗଣ ! ଏ ସମସ୍ତ ଲେଖିବାବେଳେ ମୁଁ ଅନୁଭବ କରୁଛି, ମୋର ସହକର୍ମୀ ବନ୍ଧୁ ରଘୁ-ଦିବାକର ଫାସି ପାଇ ଆଜି ଓଡ଼ିଶା ତଥା ଭାରତ ଇତିହାସରେ ଅମର ହୋଇ ରହିଛନ୍ତି ଏବଂ ରହିଥିବେ । କିନ୍ତୁ ଭଗବାନ୍ ମୋତେ ସେ ସୁଯୋଗରୁ ବଞ୍ଚିତ କରିଥିବାରୁ ମୁଁ ଆଜି ମର୍ମାହତ । କାରଣ ଆପଣମାନଙ୍କ ମଧ୍ୟରୁ କେହି ଯଦି ବେଜେଲ୍‌ଗେଟ୍ ମର୍ଡ଼ର କେସ୍‌ର ଫାଇଲ୍ ଦେଖିବାର ସୁଯୋଗ ପାଇଥିବେ ତାହାହେଲେ ସେଥିରେ ନିଶ୍ଚୟ ଦେଖିବାକୁ ପାଇବେ ରଘୁ-ଦିବାକର ଦୁହିଁଙ୍କ ବିରୁଦ୍ଧରେ ସାକ୍ଷୀମାନେ ଯାହା କହି ଯାଇଛନ୍ତି ମୋ ବିରୁଦ୍ଧରେ ସେମାନଙ୍କ ଅପେକ୍ଷା ଅଧିକ ସାକ୍ଷୀ ଅନେକ ଅଧିକ କଥା କହିଛନ୍ତି । ତଥାପି ମୋତେ ଫାସି କରାନଯାଇ କେବଳ ମାତ୍ର ଯାବତ୍ ଜୀବନ ଦୀପାନ୍ତର ଦଣ୍ଡାଦେଶ ହେବା ଶୁଣି ଆପଣମାନେ ଆଶ୍ଚର୍ଯ୍ୟ ମନେ କରୁଥିବେ ।

ତେଣୁ ମୋତେ ଫାସି ପରିବର୍ତ୍ତେ କିପରି ଏବଂ କାହିଁକି ଦୀପାନ୍ତର ଦଣ୍ଡ ହେଲ ସେ ବିଷୟ ଅନ୍ୟ ସଂଖ୍ୟାରେ ଲେଖି ଜଣାଇବି ।

○○○

# ସ୍ତ୍ରୀଙ୍କର ରୂପ-ଯୌବନକୁ

## ଅତୁଟ ରଖିବାର ଅବ୍ୟର୍ଥ ଉପାୟ କ'ଣ ଜାଣନ୍ତି କି ?

ଏଥିପାଇଁ ପ୍ରତ୍ୟେକ ଦମ୍ପତି ଅଳ୍ପ ସଂଖ୍ୟକ ସନ୍ତାନସନ୍ତତିଙ୍କୁ ନେଇ ପରିବାରଟିଏ ଗଢ଼ିବା ଯେପରି ଆବଶ୍ୟକ, ଠିକ୍ ସେହିପରି ସନ୍ତାନ ଜନ୍ମରେ ବ୍ୟବଧାନ ରକ୍ଷା କରିବା ମଧ୍ୟ ଦରକାର । ଏହି ବ୍ୟବଧାନ ଯୋଗୁଁ ଗୃହିଣୀଙ୍କର ସ୍ୱାସ୍ଥ୍ୟ ଅତୁଟ ରହିବା ସଙ୍ଗେ ସଙ୍ଗେ ସନ୍ତାନ ମଧ୍ୟ ସ୍ୱାସ୍ଥ୍ୟବାନ୍ ହେବ ।

ଆପଣ ଯଦି ଏଥିପାଇଁ ଆଗ୍ରହୀ, ନିକଟସ୍ଥ ସ୍ୱାସ୍ଥ୍ୟ କେନ୍ଦ୍ରରେ ପରାମର୍ଶ କରି ସ୍ତ୍ରୀଙ୍କୁ ଲୁପ୍ କିମ୍ବା କପର୍-ଟି ଦେଇ ଦିଅନ୍ତୁ ।

ଏହା ଏକ ନିରାପଦ ଓ ନିର୍ଭରଯୋଗ୍ୟ ଗର୍ଭ ନିରୋଧକ ପଦ୍ଧତି । ପୁଣି ସନ୍ତାନ ଇଚ୍ଛା କଲେ, ଏହାକୁ ସହଜରେ ବାହାର କରି ଦିଆଯାଇ ପାରିବ ।

# ଶିଶୁମାନଙ୍କୁ

## ସୁସ୍ଥ ଓ ନିରାପଦ ରଖିବେ କିପରି ?

କେବଳ ରୋଗ ପ୍ରତିଷେଧକ ଟୀକା ଦେଇ ଏହା ସହଜରେ ସମ୍ଭବ ହୋଇପାରିବ । ରାଜ୍ୟର ଯେ କୌଣସି ସ୍ୱାସ୍ଥ୍ୟକେନ୍ଦ୍ର ବା ଉପକେନ୍ଦ୍ରରେ ପ୍ରଧାନ ଶିଶୁ ରୋଗଗୁଡ଼ିକର ପ୍ରତିଷେଧକ ଟୀକା ଯୋଗାଇ ଦିଆଯାଉଛି ।

ଆପଣଙ୍କ ଶିଶୁଟି ଟୀକା ନେଲେ ଆପଣ ନିଜେହିଁ ନିଶ୍ଚିନ୍ତ ରହିବେ ।

ପରିବାର କଲ୍ୟାଣ ନିର୍ଦ୍ଦେଶାଳୟ
ଭୁବନେଶ୍ୱର

ସ୍କାଉଟ୍ ମୁଖ୍ୟ ଶ୍ରୀ ସାମଲ





ସଂସ୍କୃତ ପ୍ରକାଶନ ଉଦ୍‌ଘାଟିତ

କୃତୀଶିକ୍ଷକ ପୁରସ୍କୃତ





ଉଠା ଜଳସେଚନ



ଗରିବଙ୍କ ପାଇଁ ଘର




୧୯୮୨ ଗାଲିବ୍ ପୁରସ୍କାର



# ସ୍ୱାଧୀନତା ସଂଗ୍ରାମକୁ ଓଡ଼ିଆ ସାହିତ୍ୟର ଦାନ

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

୧୯୧୭-୧୮ ଖ୍ରୀଷ୍ଟାବ୍ଦରେ ସ୍କୁଲରେ ପଢ଼ାପଢ଼ି ଆରମ୍ଭ ପୂର୍ବରୁ ଛାତ୍ରମାନେ ବାରଣ୍ଡାରେ ସମବେତ ହୋଇ ପ୍ରାର୍ଥନା କରୁଥିଲେ ।

God seve our gracious King
Long live our noble King
God save the King.

ଏହାହିଁ ଆମର ଜାତୀୟ ସଙ୍ଗୀତ ବୋଲି ପିଲମାନଙ୍କ ମନରେ ଦୃଢ଼ ବିଶ୍ୱାସ ଜନ୍ମାଇ ଦିଆଯାଇଥିଲା ।

ଗାଁ ଗହଳର ପ୍ରାଥମିକ ସ୍କୁଲମାନଙ୍କରେ ଏହି ପ୍ରାର୍ଥନା ଓଡ଼ିଆରେ ବୋଲା ଯାଉଥିଲା—

"ଆମ ରାଜାଙ୍କୁ ଦୀର୍ଘଜୀବୀ କର
ହେ କରୁଣାକର ।
ସୁଖେ ପାଳନ୍ତୁ ରାଜ୍ୟ ଆମର
ହେ କରୁଣାକର ।।

ସେ ସମୟରେ ପାଠ୍ୟ ପୁସ୍ତକର ସମସ୍ତ ଲେଖାରୁ, ପିଲମାନଙ୍କ ମନରେ ଧାରଣା କରାଇ ଦିଆଯାଉଥିଲା ଯେ, ଇଂରେଜ ଶାସନ ହିଁ ଭାରତର ସର୍ବବିଧ ଉନ୍ନତି ଓ ବିକାଶର କାରଣ । ଇଂରେଜମାନେ ଏ ଦେଶର ହର୍ତ୍ତା କର୍ତ୍ତା ଭାଗ୍ୟ-ବିଧାତା ହୁଅନ୍ତୁ, ଏହାହିଁ ଭଗବାନଙ୍କର ଅଭିପ୍ରାୟ ।

ଇତିହାସରେ 'ଅନ୍ଧକୂପ ହତ୍ୟା' ପଢ଼ି ଆମ୍ଭେମାନେ ବିସ୍ମିତ ହୋଇଯାଉଥିଲୁ ଏବଂ ଇଂରେଜମାନଙ୍କ ସାହସ ଓ ଧୈର୍ଯ୍ୟ-ଶୀଳତା ଅପୂର୍ବ ବୋଧ ହେଉଥିଲା । (ପରେ ଅବଶ୍ୟ ଗବେଷକଙ୍କ ବିବରଣୀରୁ ଜଣାଗଲା, ଏହା କେବଳ ମିଥ୍ୟା ପ୍ରଚାର) । ସିପାହୀ ବିଦ୍ରୋହର ବିବରଣୀ ମନରେ ଟିକିଏ ଭାବାନ୍ତର ସୃଷ୍ଟି କରିଥିଲା । ସିପାହୀମାନଙ୍କର ପ୍ରବଳ ଆକ୍ରମଣରେ ବହୁ ଇଂରେଜ ନିହତ ହୋଇଥିଲେ । ଏଥିରେ ଆମ୍ଭେମାନେ ନିଶ୍ଚିତ ମର୍ମାହତ ହୋଇଥିଲୁ । କିନ୍ତୁ ମନ ବିଷାକ୍ତ ହୋଇ ଉଠିଲା ଯେତେବେଳେ ବିଦ୍ରୋହ ଦମନ କରି-ବାକୁ ଯାଇ ମଙ୍ଗଳପାଣ୍ଡେ, ନାନାସାହେବ, ତାନ୍ତିଆ ଟୋପି ପ୍ରମୁଖ ଫାଶୀ ପାଇଲେ ବା ରାଜପଥରେ ବନ୍ଧୁକ ଗୁଳିରେ ପ୍ରାଣ ହରାଇଲେ । ଝାନସୀର ରାଣୀ ଯୁଦ୍ଧ କ୍ଷେତ୍ରରେ ଆତ୍ମହତ୍ୟା କରିବାକୁ ବାଧ୍ୟହେଲେ ।

ସମ୍ରାଟ ଓ ସାମ୍ରାଜ୍ଞୀଙ୍କ ପ୍ରତି କଅଁଳମନରେ ଯେଉଁ ଭକ୍ତି ଓ ଶ୍ରଦ୍ଧା ଦାନା ବାନ୍ଧି ଆସୁଥିଲା, ଏହି ଘଟଣା ତାହାକୁ ଟହଲାଇ ଦେଲା । ତଥାପି ପ୍ରଥମ ମହାସମରରେ ବିଜୟ ଲାଭ କରିଥିବାରୁ ଆମେ ଇଂରେଜଙ୍କର ଜୟଗୀତିକା ଗାଇ ଗର୍ବରେ ଶୋଭାଯାତ୍ରାରେ ବହୁ ଅଞ୍ଚଳ ବୁଲିଥିଲୁ । ମାତ୍ର ତାହା ପରେ ପରେ ମନରେ ଘୃଣା ସଞ୍ଚାର କଲା ପଞ୍ଜାବର ଜାଲିଆନାୱାଲାବାଗ ହତ୍ୟାକାଣ୍ଡ ।

ସେତେବେଳେ ସମ୍ବାଦପତ୍ରର ପ୍ରସାର ଓ ପ୍ରଚାର ମଫସଲ ଅଞ୍ଚଳରେ ପ୍ରାୟ ନଥିଲା । ଲୋକମୁଖରୁ ଇତସ୍ତତଃ କିଛି କିଛି ଅଂଶ ଶୁଣି ଭାବି ନେଲୁ ଯେ ଇଂରେଜ ଏ ଦେଶର ରାଜା ବା ସମ୍ରାଟ ନୁହନ୍ତି; ନିର୍ଦ୍ଦୟ ଶାସକ । ସେ ମୁନିବ, ଆମେ ସବୁ ତାଙ୍କର ସେବକ-କିଣା କିଙ୍କର । ସେମାନଙ୍କର ସ୍ୱାର୍ଥ-ସାଧନ ପାଇଁ ସେ ଯାହା ଇଚ୍ଛା ତାହା କରିବାର ଅଧିକାରୀ ।

ତାହାପରେ ଗଗନ ପବନ ମୁଖରିତ କରି ବାର୍ତ୍ତା ବହି ଆସିଲା ମହାତ୍ମାଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନ । ଦଶ ବାର ବର୍ଷ ବୟସର ସ୍କୁଲ ଛାତ୍ରଙ୍କଠାରୁ ଆରମ୍ଭକରି କଲେଜର ଯୁବ ଛାତ୍ରମାନେ ସ୍କୁଲ କଲେଜ ଛାଡ଼ି ବାହାରି ଆସିଲେ । ପ୍ରଚାରିତ ହୋଇଗଲା ଇଂରେଜ ସରକାର ଆମର ଶତ୍ରୁ । ଆମେ ପରାଧୀନତାରୁ ମୁକ୍ତ ହେବା । ଏ ଶାସନକୁ ହଟାଇ ଦେବାକୁ ପଡ଼ିବ ।

ସେ ସମୟରେ ଆମର ଜାତୀୟ ସଙ୍ଗୀତ ନାମରେ ଯାହା ଆଦୃତ ହେଉଥିଲା, ତାହା କେବଳ ଭାରତ ବା ଓଡ଼ିଶାର ଅତୀତର ଗୌରବଗାଥା ବା ଉଦ୍‌ବୋଧନ ସଙ୍ଗୀତ । "ଜାଗ, ଜାଗ" ଉଠ ଉଠ" । ପାଠ୍ୟ ପୁସ୍ତକରେ ଥିବା ଭାରତଭାବନା, ଉତ୍କଳ ଭାବନାଠାରୁ ଆରମ୍ଭ କରି ଉତ୍କଳ ସମ୍ମେଳନ ପ୍ରାସାଦରେ ଆତ୍ମପ୍ରକାଶ କରିଥିବା ଜାତକବି ଲକ୍ଷ୍ମୀକାନ୍ତ, ଗୋଦାବରୀଶ, କୃଷ୍ଣପ୍ରସାଦ, ଶୁରଦେଓ, ପଦ୍ମଚରଣ, କୁନ୍ତଳାକୁମାରୀ ପ୍ରମୁଖଙ୍କ ସଙ୍ଗୀତ ସେହି ଶ୍ରେଣୀର ।

ଶାସନ ବିରୋଧରେ କିଛି ଲେଖିବା ଅତୀବ ଦୋଷାବହ ଥିଲା । କବିବର ରାଧାନାଥ ତାଙ୍କର ଅମର କାବ୍ୟ "'ମହାଯାତ୍ରା'ରେ ଶାସନ ବିରୋଧରେ ପ୍ରକାରାନ୍ତରେ ସାମାନ୍ୟ କିଛି ଇଙ୍ଗିତ ଦେଇଥିବାରୁ କର୍ତ୍ତୃପକ୍ଷଙ୍କ ଭୟରେ ତାହା ପୋଡ଼ି ଦିଆ ଯାଇଥିଲା ବୋଲି ଶୁଣାଯାଏ । ଦେଶପ୍ରେମୀ କବି, ଲେଖକ, ସାହିତ୍ୟିକଙ୍କ ଅନ୍ତରରେ ତାହା ଭାରି ସଞ୍ଚାର କରିଥିବ ।

ସ୍କୁଲ କଲେଜ ଛାଡ଼ି ଆସି ପ୍ରଚାରକ ସାଜିଥିବା ହଜାର ହଜାର ତରୁଣଙ୍କ ମନକୁ ପର୍ବର ସମଷ୍ଟି ଜାତୀୟ ସଙ୍ଗୀତ ବିଶେଷ ପ୍ରଭାବିତ କରିପାରିଲା ନାହିଁ ।

ପଣ୍ଡିତ ଗୋପବନ୍ଧୁ ହିଁ ପ୍ରଥମେ 'ସମାଜରେ' ବିଦେଶୀ ଶାସନ ଓ ଶାସକଙ୍କ ଦୋଷ ତ୍ରୁଟି ଦର୍ଶାଇ ସନ୍ଦର୍ଭମାନ ପ୍ରକାଶ କଲେ । ତାଙ୍କର ସହଜ ଭାଷା ଓ ସରଳ ପ୍ରକାଶ ଭଙ୍ଗୀ ଲୋକଙ୍କୁ ବିଶେଷ ଭାବରେ ଆକୃଷ୍ଟ କଲା । ଅଳ୍ପଦିନ ମଧ୍ୟରେ 'ସମାଜ' ଲୋକପ୍ରିୟ ହୋଇ ଉଠିଲା । ଲୋକେ ଯାହା ଚାହୁଁଥିଲେ, ଅନ୍ତରରେ ଯାହା ଅନୁଭବ କରୁଥିଲେ, ତାହାହିଁ 'ସମାଜରେ ରୂପ ନେଉଛି, ସେଥିପାଇଁ ପାଠକ ଉଲ୍ଲସିତ ହୋଇ ଉଠିଲେ । ସେହିଠାରୁ ପ୍ରେରଣା ପାଇ ବହୁ ଲେଖକ ଓ କବି ଇଂରେଜ ଶାସନ ବିରୋଧରେ ନିଜର ଲେଖନୀ ଚାଳନା କଲେ । ଉତ୍କଳ ସମ୍ମିଳନୀ ଅତି ଦୀର୍ଘ ଦିନ ଧରି ଯାହା କରିପାରି ନଥିଲା. 'ସମାଜ' ଅଳ୍ପ ଦିନ ମଧ୍ୟରେ ସେହି ଜାଗରଣ ଲୋକଙ୍କ ମନରେ ଖେଳାଇ ଦେଲା । ଏଭଳି ଅବସ୍ଥା ହେଲା ଯେ, ମହାତ୍ମା ଗାନ୍ଧୀ ବା ଅସହଯୋଗ ଆନ୍ଦୋଳନ ବିରୋଧରେ କେହି କିଛି କହିଲେ ବା ଲେଖିଲେ, ଲୋକେ ତାଙ୍କୁ ଘୃଣା କରୁଥିଲେ । ତୋଷାମଦକାରୀ, ଦେଶ ଦ୍ରୋହୀ ଆଖ୍ୟା ଦେଉଥିଲେ ।

ଆଡ୍‌ଭୋକେଟ୍ ଚିନ୍ତାମଣି ଆଚାର୍ଯ୍ୟ ଆନ୍ଦୋଳନକୁ ବ୍ୟଙ୍ଗକରି 'ଗାନ୍ଧୀଙ୍କ ସ୍ୱରାଜ୍ୟ' ନାମରେ ଖଣ୍ଡିଏ ପୁସ୍ତକ ପ୍ରକାଶ କରିଥିଲେ । ତାର ପ୍ରଥମ ପୃଷ୍ଠାରେ ଥିଲା —

ଛଅଅଣା ପଇସା ଦିଅ,
ଗାନ୍ଧୀଙ୍କ ସ୍ୱରାଜ୍ୟ ନିଅ ।"

ପୁରପଲ୍ଲୀ ସର୍ବତ୍ର ବିଲାତୀ ଲୁଗା ପିନ୍ଧା ସହିତ ଏହି ପୁସ୍ତକ ଲୋକେ ସାଧାରଣ ସଭାରେ ନିଆଁ ଲଗାଇ ପୋଡ଼ିଥିଲେ ।

ସେ ସମୟର ଏକମାତ୍ର ସୁପ୍ରତିଷ୍ଠିତ ପୁରାତନ ସାହିତ୍ୟ ସଂସ୍କୃତି ପତ୍ରିକା 'ଉତ୍କଳ ସାହିତ୍ୟର ବିପର୍ଯ୍ୟୟ ଏହି କାରଣରୁ ଘଟିଥିଲା । ଅସହଯୋଗର ଆତ୍ମକଥା" ଶୀର୍ଷକ ଏକ ବ୍ୟଙ୍ଗାତ୍ମକ ଲେଖା ସେଥିରେ କ୍ରମାନ୍ୱୟରେ ପ୍ରକାଶ କରାଯିବାରୁ କେବଳ ଛମାସ ମଧ୍ୟରେ ତିନିହଜାର ଗ୍ରାହକ ଥିବା ପତ୍ରିକାର ପାଠକ ତିନିଶହରେ ରହିଲେ । ବର୍ଷକ ପାଇଁ ମୂଲ୍ୟ ଦେଇଥିବା ଗ୍ରାହକ ଆଉ ପତ୍ରିକା ଡାକଘରୁ ଗ୍ରହଣ କଲେ ନାହିଁ । ତାହା ଫେରି ଆସିଲା ।

ସଦ୍ୟ କଲେଜ ଫେରନ୍ତା ତରୁଣ ଭଗବତୀ ଚରଣ ପାଣିଗ୍ରାହୀଙ୍କର ଗୋଟିଏ ଅନୁବାଦିତ ଉପନ୍ୟାସ କ୍ରମାନ୍ୱୟରେ ସେଥିରେ ପ୍ରକାଶ ପାଉଥିଲା । ଅସହଯୋଗର ଆତ୍ମକଥା, ପଢ଼ି ସେ ଏତେ ମର୍ମାହତ ହେଲେ ଯେ, ଅପ୍ରକାଶିତ ଅଂଶର ପାଣ୍ଡୁଲିପି ଫେରାଇ ଆଣିଥିଲେ । ଗୁରୁକଳ୍ପ ବୃଦ୍ଧ ସଂପାଦକ ବିଶ୍ୱନାଥ କରଙ୍କୁ କହିଥିଲେ, ଯେଉଁ ପତ୍ରିକାରେ ଅସହଯୋଗୀର ଆତ୍ମକଥା ଭଳି ଲେଖା ପ୍ରକାଶ ପାଉଛି, ସେଥିରେ ମୁଁ କୌଣସି ମତେ ସଂଶ୍ଳିଷ୍ଟ ହେବାକୁ ଇଚ୍ଛା କରେ ନାହିଁ ।

* * *

ଅନ୍ୟ ପକ୍ଷରେ ଆନ୍ଦୋଳନକୁ ସମର୍ଥନ କରି, ଗାନ୍ଧିଜୀଙ୍କ ନୀତି ବାଖ୍ୟାନ କରି ଯେଉଁସବୁ ପୁସ୍ତକ ପ୍ରକାଶ ପାଇଲା, ତାର ଆଦର ଅତିବେଶୀ ବଢ଼ିଗଲା । ଗାନ୍ଧୀଜୀଙ୍କ ଆଶ୍ରମରୁ ଫେରିଆସି ଗୋବିନ୍ଦ ଚନ୍ଦ୍ର ମିଶ୍ର ଗାନ୍ଧିଜୀଙ୍କ ଜୀବନ ଚରିତ ପ୍ରକାଶ କରିଥିଲେ । ଅଳ୍ପଦିନ ମଧ୍ୟରେ ତା'ର ତୃତୀୟ ସଂସ୍କରଣ ହୋଇଥିଲା ।

ଜାତୀୟ କବି ବୀରକିଶୋର ଦାସଙ୍କ 'ମୋହନବଂଶୀ' ଲୋକଙ୍କ ମଧ୍ୟରେ ଉନ୍ମାଦନା ଖେଳାଇ ଦେଇଥିଲା । ଅଳ୍ପଦିନ ମଧ୍ୟରେ ତାହା ଶାସକଙ୍କ ଦ୍ୱାରା ବାଜ୍ୟାପ୍ତ କରି ଦିଆଗଲା ।

ଏହିଭଳି ଜାତୀୟ ଭାବାପନ୍ନ ଦେଶାତ୍ମବୋଧସଂଗୀତ କବିତା ଓ ସଂଦର୍ଭ ବହୁ ଆକାର ପ୍ରକାରରେ ପ୍ରକାଶ ପାଇ ଆନ୍ଦୋଳନ ପ୍ରସାରରେ ସହାୟତା କରିଥିଲା ।

'ସମାଜର କଳେବର ଓ ଗ୍ରାହକ ସଂଖ୍ୟା ବହୁତ ବଢ଼ିଗଲା । ପଣ୍ଡିତ ନୀଳକଣ୍ଠ ଦାସଙ୍କ ସଂପାଦନାରେ ସମ୍ବଲପୁରରେ ସାପ୍ତାହିକ ପତ୍ରିକା ପ୍ରକାଶ ପାଇ ପାଣ୍ଡିତ୍ୟପୂର୍ଣ୍ଣ ସଂଦର୍ଭରେ ବହୁତଥ୍ୟ ପାଠକଙ୍କୁ ଯୋଗାଇଲା । ଶ୍ରୀରାମ ପ୍ରସାଦ ସିଂହଙ୍କ ସଂପାଦନାରେ 'ସ୍ୱରାଜ୍ୟ', ପ୍ରଚାରକ ଅନନ୍ତ ମିଶ୍ରଙ୍କ ସଂପାଦନାରେ ଚକ୍ରଧରପୁରରୁ 'ପ୍ରଚାରକ', ଶ୍ରୀ ରାଜକୃଷ୍ଣ ବୋଷଙ୍କ ସଂପାଦନାରେ ଇଂରାଜୀ ସାପ୍ତାହିକ ( Star of Utkal ) ର ପୁନଃ ପ୍ରକାଶନ ଶାସନ କ୍ଷେତ୍ରରେ ଚାଲିଥିବା ଦୁର୍ନୀତିର ସମାଲୋଚନା କରି ସରକାରଙ୍କ ବିଷ ଦୃଷ୍ଟିରେ ପଡ଼ିଲେ ମଧ୍ୟ ଜନ ସାଧାରଣଙ୍କ ଦ୍ୱାରା ଆଦୃତ ହେଲେ ।

ଆନ୍ଦୋଳନର ଆଦ୍ୟକାଳରେ ବାବାଜୀବୈଷ୍ଣବ ଚରଣ ଦାସ କଟକ ସ୍ୱରାଜ୍ୟାଶ୍ରମରେ ରହୁଥାଆନ୍ତି । ସେତେବେଳକୁ ତାଙ୍କ ରାସଦଳ ହୋଇ ନଥାଏ । ଗାନ୍ଧିଜୀଙ୍କ ଉକ୍ତି, ଗୋପବନ୍ଧୁଙ୍କ ମହତ୍ତ୍ୱ, କଂଗ୍ରେସର ନିର୍ଦ୍ଦେଶ, ଆନ୍ଦୋଳନର କାର୍ଯ୍ୟପନ୍ଥା ଗୀତ ଆକାରରେ ଲେଖି ଖଣ୍ଡିଏ ଖଣ୍ଡିଏ କ୍ଷୁଦ୍ର ପୁସ୍ତିକା ସେ ପ୍ରକାଶ କରୁଥିଲେ । ମୂଲ୍ୟ ଦୁଇ ପଇସା ବା ଚାରି ପଇସା । ଚାରି ଛଅ ଦିନ ମଧ୍ୟରେ ହଜାରେ ସଂଖ୍ୟାରେ ମୁଦ୍ରିତ ପୁସ୍ତକ ଶେଷ ହୋଇଯାଏ । 'ଗାନ୍ଧୀ ବଚନିକା' 'ସ୍ୱରାଜ୍ୟ ଛେନାଗୁଡ଼', 'ସ୍ୱରାଜ୍ୟ କଦଳୀ ଚକଟା, 'ଅସହଯୋଗୀ ସ୍ମାରକୀ' ପ୍ରଭୃତି ପୁସ୍ତିକା ଗାଁ ଗହଳର ଅଶିକ୍ଷିତ ଲୋକଙ୍କ ପାଇଁ ଅତି ସରଳ ଭାଷାରେ ମନୋରମ ଛନ୍ଦରେ ପ୍ରକାଶ ପାଉଥିବାରୁ ଗାଁ ଗାଁ ତାହା ପ୍ରଚାରିତ ହୋଇ ଯାଉଥିଲା । ଏହି ରଚନା ପାଇଁ ବାବାଜୀବୈଷ୍ଣବ ଚରଣ ଦାସଙ୍କୁ ଗିରଫ କରାଯିବ ବୋଲି ଶୁଣାଯିବାରୁ ସେ ଆଶ୍ରମ ଛାଡ଼ି ଚାଲି ଯାଇଥିଲେ ।

ଜାତୀୟ କବି ବୀରକିଶୋର ଦାସ, ଭଦ୍ରକର ବାଞ୍ଛାନିଧି ମହାନ୍ତି, କେନ୍ଦ୍ରାପଡ଼ାର ରଘୁନାଥ ମହାନ୍ତି, ବାଣପୁରର ଗୋଦାବରୀଶ ମହାପାତ୍ରଙ୍କ ରଚିତ ଉଦ୍ଦୀତ ସଂଗୀତ ଲହରୀ ସବୁ ଅଞ୍ଚଳର କର୍ମୀ ତଥା ଯୁବକ, ତରୁଣ, ଛାତ୍ର ଓ ଜନସାଧାରଣଙ୍କ ମନରେ ଦମ୍ଭ ଓ ସାହସ ଭରି ଦେଉଥାଏ । ଏହି ସଂଗୀତ ସବୁ ଆନ୍ଦୋଳନ ପସ୍ଥରର ଗୋଟିଏ ଗୋଟିଏ ମାଧ୍ୟମ ହୋଇଥାଏ ।

ଗୋଦାବରୀଶ ମହାପାତ୍ରଙ୍କ ମାର୍ଚ୍ଚିଂ ସଙ୍ଗୀତ ସଂକୀର୍ତ୍ତନ ଆଦି ଯେପରି ମର୍ମସ୍ପର୍ଶୀ, ସେହିପରି ଉଦ୍ଦୀପନାମୂଳକ ଥିଲା । ପ୍ରତିଦିନ ସକାଳେ ଓ ସଂଧ୍ୟାରେ ଛୋଟ ଛୋଟ ପିଲମାନେ ସମବେତ କଣ୍ଠରେ ଗାଇ ସହରର ରାସ୍ତା ଓ ଗ୍ରାମ ଦାଣ୍ଡରେ ଶୋଭାଯାତ୍ରା କରୁଥିଲେ । ସେହି ସଂଗୀତର ମୂର୍ଚ୍ଛନା ଓ ପିଲମାନଙ୍କ ସାହାସ ଦେଖି ଜନସାଧାରଣଙ୍କ ମନରୁ ଇଂରେଜ ଶାସନ ଓ ପୁଲିସ ପ୍ରତି ଯେଉଁ ଭୟ ରହି ଆସିଥିଲା ତାହା କ୍ରମେ ଦୂର ହେବାକୁ ଲାଗିଲା । ବହୁ ପିଲା, ତରୁଣ, ଯୁବକ, ବୃଦ୍ଧ ଏପରିକି ବହୁ ମହିଳା ଘର କୋଣ ଛାଡ଼ି ସ୍ୱତଃ ପ୍ରବୃତ୍ତ ହୋଇ ଆସି ଆନ୍ଦୋଳନରେ, ଯୋଗ ଦେବାକୁ ଲାଗିଲେ ଏବଂ ହସି ହସି କାରାବରଣ କଲେ । ଆନ୍ଦୋଳନକୁ ଦବାଇ ଦେବା ପାଇଁ ପୁଲିସ ଯେତେ ଦମନ ନୀତି ପ୍ରୟୋଗ କଲେ, ସ୍ୱେଚ୍ଛା ସେବକଙ୍କ ଉତ୍ସାହ ସେତିକି ବୃଦ୍ଧି ପାଇଲା । ସେଥିପାଇଁ ପ୍ରେରଣା ଯୋଗାଇ ଥିଲା ଏହି ସବୁ ସଂଗୀତ ।

ଛୋଟ ଛୋଟ ପିଲମାନେ ଯେତେବେଳେ ଦଳ ଦଳ ହୋଇ ମୁଖ ଉଠାଇ ଏକ ସ୍ୱରରେ ଗୋଦାବରୀଶ ମହାପାତ୍ରଙ୍କ ସଂକୀର୍ତ୍ତନ ଗାଇ ରାସ୍ତାରେ ବୁଲି ଯାଉଥିଲେ.—

"ଭାଇ ଫେରି ଚାହାଁ ଆଜି
ପଞ୍ଜାବ ଗଗନେ ରକତ ଶରୀର ଧରି

ପାପ ରାଜନୀତି ଫଳେ ଭାଇ ମଲେ
ଜନନୀ ଜନନୀ ବୋଲି ।

ଭାଇ ରକତ ସ୍ରୋତେ
ସରଳ ପରାଣ ରକତ ସ୍ରୋତେ

କେତେ ମହାପ୍ରାଣୀ ପଡ଼ିଲେ ଅକାଳେ
ଡାୟାର ହାତେ ।

ଭାଇ, ପଶୁ ସାହସ
ଆବରିଛି ଆଜି ଜନକ ଦେଶ
ଜନନୀ ଜନମ ଭୂଇଁ ଭାସେ ଆଜି
ରକତ ସ୍ରୋତେ ।

ଭାଇ, ଆସିଛିରେ ଦିନ ମହାତ୍ମା ବଚନ
ଯିବ ପଶୁ ଦର୍ପ ଜଳି

ଅନୀତି ଯାତନା ଦାନବ ଗୃଜନୀ
ଥରିବ ଏ ଦେଶ ଭରି,

ଆଜି, ଆସିଛି ଦିନ,
ରାମ ରାଇଜର ଆସିଛି ଦିନ

ଭାସୁଛି ଗଗନେ ସାଗର ପବନେ
ଜନନୀ ନାମ ।

କିମ୍ବା

ଉତ୍କଳ ମା'ର ସନ୍ତାନ ଆମେ
ରକ୍ତ ଚରଣେ ଯିବୁରେ ଭୁଲି

ଯେତେ ଅନାଚାରୀ ଅତ୍ୟାଚାରୀର
ଦୃଢ଼ ବକ୍ଷେ ଆଘାତ କରି ।

କିମ୍ବା

ଛନ୍ଦେ ଛନ୍ଦେ ସୁପ୍ତ ଅବନତ
ରୁଦ୍ର, କ୍ଷୁବ୍ଧ, ଶୁଦ୍ଧ ସୁମହତ,
ବିଦ୍ରୋହୀ, ରଣଜୟୀ, ପାଗଳ ହେ,
ଉଠ ନବ ଯୁଗ ନବ ମନ୍ତ୍ରରେ ।

ଆଜି, ଉନ୍ମାଦ କଂପିତ ଆହ୍ୱାନ ଏ
ଚିର ଶୃଂଖଳ ଶଙ୍କିତ ପଥ ନନ୍ଦ୍ୟ

ଧ୍ୱଂସ ବିଭାମୟ ଉଲ୍ଲାସେ
ଉଠ ନବଯୁଗ ନବ ମନ୍ତ୍ରରେ ।

ଉଠ କଙ୍କାଳ ଛିନ୍ନ ଶୃଖଳ
ଜାଗ ଦୁର୍ବଳ ଆଜି ।

ଉଠ ଗତ ଗୌରବ ହୃତ ଗୌରବ
ମୃତ ଗୌରବ ରାଜି ।

ଜାତୀୟ କବି ବୀରକିଶୋର ସମୟ, ପରିସ୍ଥିତି ଓ ଦୈନନ୍ଦିନ କାର୍ଯ୍ୟକଳାପକୁ ଖାପ ଖାଇଲା ଭଳି ଏପରି ମର୍ମସ୍ପର୍ଶୀ ସଙ୍ଗୀତ ରଚନା କରି ଦେଉଥିଲେ, ଯେଉଁଥିରେ ପୁଲିସ ଓ ସରକାରଙ୍କ ସପକ୍ଷବାଦୀ ବୁଦ୍ଧିଜୀବୀମାନେ ବିଚଳିତ ହୋଇ ଉଠୁଥିଲେ । କର୍ମୀମାନଙ୍କୁ ତାହା ସେହିପରି ପ୍ରେରଣା ଓ ଉତ୍ସାହ ଦେଉଥିଲା ।

"ଏଯେ ଗୁଣ୍ଡା ସରକାର
ସବୁବେଳେ ତାର ଦୁଣ୍ଡା କାରବାର"
ମୋତେ ଯେତେ ମାରିବୁ ମାର
ଦେଶପାଇଁ ମୁଣ୍ଡ ପାଣି ଛଡ଼ାଇଛି
ବେତମାଡ଼ କିବା ଛାର" ।

ପ୍ରଭୃତି ସଙ୍ଗୀତ ଏଭଳି ଉତ୍ତେଜନା ସୃଷ୍ଟି କରୁଥିଲା ଯେ ଶେଷରେ ବୀର ବାବୁଙ୍କୁ ବନ୍ଦୀ ଘରେ ରଖାଗଲା ।

କବି ବାଞ୍ଛାନିଧି ମହାନ୍ତିଙ୍କ

"ଭାରତ ସ୍ୱାଧୀନ ଭାରତ ସ୍ୱାଧୀନ,
ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନରେ"

ପାଠକ ଓ ଶ୍ରୋତାଙ୍କ ମନରେ ଅପୂର୍ବ ଉନ୍ମାଦନା ଭରି ଦେଉଥିଲା ।

ଆନ୍ଦୋଳନର ପ୍ରସ୍ତର ଓ ପ୍ରସାରରେ ଅଧିକ ସାହାଯ୍ୟ କରିଥିଲା ଗଣକବି ବୈଷ୍ଣବ ପାଣିଙ୍କ ସଙ୍ଗୀତ । କର୍ମୀମାନେ ଗାଁ ଗାଁ ବୁଲି ବଜାରେ ଯାହା ଯାହା ବଝାନ୍ତି, ଗାଁ ଗଣ୍ଡାର

କୃଷୀ, ମୂଲିଆ, ଶ୍ରମିକ କିଛି ସମୟ ଠିଆ ହୋଇ ତାହା ଶୁଣନ୍ତି; ମାତ୍ର ନିଜ ନିଜ କାମରେ ବ୍ୟସ୍ତ ରହି ତାହା ଭୁଲି ଯାଆନ୍ତି । ମାତ୍ର ବୈଷ୍ଣବ ପାଣିଙ୍କ ଯାତ୍ରାଦଳରେ ଦୁଆରୀ ଅଙ୍ଗଭଙ୍ଗୀସହ ସଙ୍ଗୀତ ଗାଇ ସେମାନଙ୍କ ମନରେ ଗୋଟାଏ ସ୍ଥାୟୀ ଦାଗ ଆଙ୍କି ଦେଉଥିଲ ।

"ଦେଖ ଦେଖ ଭାଇ
ଭାଙ୍ଗିଲଣି ଆଜି
ଗୋରାଙ୍କ ଜିଅଲଖାନା ହେ
କାଲିର କାଇଦା
ନାହିଁ ଆଜି ଆଉ
ପଶନ୍ତି ସ୍ୱରାଜ ସେନାହେ
ଚିହ୍ନିଲଣି ସରକାର
ଲଭ ହାନି ପୁଣି କେ ନେବାର
ବଣିଆ ଟୋକାଟା ଉଠାଇ ଦେଲଣି
କିଅଲଖାନାର ଡ଼ରହେ,
ଦେଶ କାମ କରି ପଶ ଯା ତହିଁରେ
ବରଷକେ ଦଶଥର ହେ
ସରକାର ବିଷ ଦାନ୍ତ
ଏକା ଝାଡ଼ିବାର ସେହି ପଥ ହେ ।

ଅଥବା

"ରାଜା ଘରେ ଗ୍ରହିଲି ଖଟି
ବରଷକେ ଜମା ଦିଦିନ ଛୁଟି
ପୋଡ଼ିଯାଉ ପୋଷାକ ପିନ୍ଧା
ସେ ଅମୂଲ ଧନ୍ଦା
ମୋଟ ଖଦୀ ସୁଖ ନ ମିଳେ ତହିଁରେ
ସବୁଦିନ ମନ ହୁଅଇ ଘାଣ୍ଟି ।

ଇସ୍ତଫା କରି ଦାଖଲ
ମୁହିଁ ମୋର ଲଗିବି ମୂଲ
ଯେ ହୋଇବ ଭଲ ।
ବରଷକ ଭାଷ୍ଟ, କରି ସ୍ୱପ ବାସ
ଲଙ୍ଗଳରେ ମୋର ଚିରିବି ମାଟି ।
ପୋଡ଼ି ଯାଉରେ ଇଙ୍ଗିରାଜୀ ଅମଳ
ହରି ନେଇଗଲ ଦେଶୁ ଟଙ୍କା ସୁନା
ଦେହରୁ ହରିଲ ଆମର ବଳ ।
ପଇସାରେ ପାନ ପାଞ୍ଚଟା ଛଅଟା
ଟଙ୍କାରେ ଛ ସେର ଅଧେ ଚାଉଳ ।

ଏ ସବୁ ୧୯୧୧ ରୁ ୧୯୨୩ ମସିହା ମଧ୍ୟର ଘଟଣା । ଆନ୍ଦୋଳନର ପ୍ରଥମ ଅବସ୍ଥାରେ ନିର୍ଜୀବ ଗଣ ଚେତନାକୁ ଉଦ୍‌ବୁଦ୍ଧ କରିବାରେ ଏ ସବୁ ସଙ୍ଗୀତ ଅଦ୍ଭୁତ ସାଫଲ୍ୟ ଲଭ କରିଥିଲ । ପରେ ଅବଶ୍ୟ ବହୁ ଦେଶ ପ୍ରେମୀ କବି, ଲେଖକ ଗାନ୍ଧିକ, ଚିନ୍ତାଶୀଳ ବ୍ୟକ୍ତି ଆନ୍ଦୋଳନ ପ୍ରଭାବରେ ବହୁ ସାହିତ୍ୟ ସୃଷ୍ଟ କରିଛନ୍ତି । ତାହା ଆନ୍ଦୋଳନକୁ ଯେପରି ସାହାଯ୍ୟ କରିଛି ଆନ୍ଦୋଳନ ଦ୍ୱାରା ସେହିପରି ସମୃଦ୍ଧ ହୋଇଛି ।

କେହି କେହି ସମାଲୋଚକ କହି ପାରନ୍ତି, ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଚିରନ୍ତନ ଆସନ ପାଇବାର ଅଧିକାରୀ ଏ ସାହିତ୍ୟ ହୋଇ ନ ପାରେ । ସେମାନଙ୍କ ମତ ଯାହା ହେଉନା କାହିଁକି, ଐତିହାସିକ ମୂଲ୍ୟ ଯେ ଏହାର ଅତି ବେଶୀ, ତାହା କେହି ଅସ୍ୱୀକାର କରି ପାରିବେ କି ?

ବାର୍ତ୍ତା ସଂପାଦକ, ସମାଜ
କଟକ



ମନ୍ତ୍ରୀ ଶ୍ରୀ ବାସୁଦେବ ମହାପାତ୍ରଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ରାଜ୍ୟସ୍ତରୀୟ ପରିବହନ ସମନ୍ୱୟ ବୈଠକ—୩।୧୦।୭୮

# ତୃତୀୟ ମହାସମର ହେଲେ ପୃଥିବୀ ଧ୍ୱଂସ ପାଇଯିବ

ଡକ୍ଟର ଗୋକୁଳାନନ୍ଦ ମହାପାତ୍ର

ବିଗତ କେତେଦିନ ଧରି ଯେଉଁମାନେ ପୃଥିବୀରେ ଘଟିଯାଉଥିବା ଘଟଣାଗୁଡ଼ିକ ଅନୁଧ୍ୟାନ କରୁଥିବେ, ସେମାନେ ଜାଣୁଥିବେ ଯେ ପୃଥିବୀ ଆଉ ଗୋଟିଏ ବିଶ୍ୱଯୁଦ୍ଧ ଆଡ଼କୁ ଟାଣି ହୋଇ ଯାଉଛି । ହଠାତ୍ କେଉଁଦିନ ଏହି ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯିବ କହି ହେଉନାହିଁ । ଦ୍ୱିତୀୟ ମହାସମର ପରେ ପରେ ଯେତେବେଳେ କୋରିଆ ଯୁଦ୍ଧ ଆରମ୍ଭ ହେଲା, ଏହାର ଆରମ୍ଭ ପୂର୍ବରୁ ତୃତୀୟ ବିଶ୍ୱଯୁଦ୍ଧ ହେବାର ବହୁ ଲକ୍ଷଣ ଦେଖା ଯାଉଥିଲା । ଯାହାହେଉ ତାହା ବିଶ୍ୱଯୁଦ୍ଧ ନ ହୋଇ ଅପେକ୍ଷାକୃତ ଛୋଟ କୋରିଆ ଯୁଦ୍ଧରେ ସୀମିତ ହେଲା । କୋରିଆ ଯୁଦ୍ଧର ସମୟଠାରୁ ବର୍ତ୍ତମାନର ସମୟ ଆହୁରି ଭୟାବହ । ଏହା ଭିତରେ ବହୁ ସାଂଘାତିକ ମାରଣାସ୍ତ୍ର ବାହାରିଲାଣି ; ଯାହାକି କୋରିଆ ଯୁଦ୍ଧ ସମୟରେ ଉଦ୍ଭାବିତ ହୋଇ ନ ଥିଲା । ଏ ଗୁଡ଼ିକ ସେ କାଳର ପରମାଣୁ ବୋମାଠାରୁ ଶହଶହଗୁଣ ଅଧିକ ଶକ୍ତିଶାଳୀ । ସେହିସବୁ ମାରଣାସ୍ତ୍ର ଭିତରେ ଉଦ୍‌ଜାନ ବୋମା ଶହେ ମେଗାଟନ ବୋମା, ନିଉଟ୍ରନ ବୋମା ଆଦି ପ୍ରଧାନ। ତା ସାଙ୍ଗକୁ ମୃତ୍ୟୁ ରଶ୍ମି ମଧ୍ୟ ରହିଛି । ଏହିସବୁ ଲୋମହର୍ଷଣକାରୀ ମାରାତ୍ମକ ମାରଣାସ୍ତ୍ର, ଯେଉଁ ମାରଣାସ୍ତ୍ରର ମାରାତ୍ମକତା ବର୍ଣ୍ଣନା କଲେ ଲୋମମାନ ଟାଙ୍କୁରି ଉଠେ । ସେହି ମାରଣାସ୍ତ୍ର ବ୍ୟବହୃତ ମହାଯୁଦ୍ଧ କି ପ୍ରଳୟଙ୍କରୀ ହେବ ଭାଷାରେ ବର୍ଣ୍ଣନା କରିବା ଦୁରୂହ । ଜାପାନର ହୀରୋସୀମା ଉପରେ ଯେଉଁ ସର୍ବପ୍ରଥମ ପରମାଣୁ ବୋମା ପଡ଼ିଥିଲା ସେଥିରେ ସେଠାକାର ଚାରିଲକ୍ଷ ଅଧିବାସୀଙ୍କ ଭିତରୁ ଲକ୍ଷେ ସଙ୍ଗେ ସଙ୍ଗେ ମରିଗଲେ । ଯେଉଁ ବାକି ତିନିଲକ୍ଷ ବଞ୍ଚିଲେ ସେଥିରୁ ଲକ୍ଷେ ତହିଁପରଦିନ ଦହନ ବିକଳରେ ମରିଗଲେ । ସେମାନେ ସାମୟିକ ପାଗଳ ହୋଇଯାଇ କ'ଣ କରିବେ, କ'ଣ ନ କରିବେ ଠିକ କରି ନ ପାରି ମଲେ । ବାକି ଯେଉଁ ଦୁଇଲକ୍ଷ ରହିଲେ, ସେଥିରୁ ପ୍ରଥମ ପାଞ୍ଚବର୍ଷ ମଧ୍ୟରେ ଲକ୍ଷେ ଲୋକ ତେଜସ୍କ୍ରିୟତାର ପରବର୍ତ୍ତୀ ପ୍ରବାହ ଫଳରେ କେନସର ଆଦି ଦୁରାରୋଗ୍ୟ ରୋଗରେ କଷ୍ଟପାଇ ମଲେ । ଆଉ ଯେଉଁ ଲକ୍ଷେ ରହିଲେ ସେଥି ମଧ୍ୟରୁ ଏବେ ବି ପ୍ରତିବର୍ଷ ପରମାଣୁ ବିସ୍ଫୋରଣ ଜନିତ ନାନା ଦୁରାରୋଗ୍ୟରେ ଧୀରେ ଧୀରେ ମରିବାରେ ଲାଗିଛନ୍ତି । ହିରୋସୀମା ବିସ୍ଫୋରଣ ପ୍ରାୟ ୪୦ ବର୍ଷ ହୋଇଗଲାଣି । ତଥାପି ବି ଆଜି ପର୍ଯ୍ୟନ୍ତ ଲୋକେ ମରିବାରେ ଲାଗିଛନ୍ତି । ସେ ସମୟରେ ଯେଉଁମାନେ ପିଲା ଥିଲେ ସେମାନେ କେହି ଯୁବକ ହୋଇ ପାରି ନ ଥିଲେ । ଯୁବାବସ୍ଥା ପୂର୍ବରୁ ଇହଧାମ ତ୍ୟାଗ କରିଥିଲେ । ହିରୋସୀମାର ଅଶିହଜାର ଘର ଭିତରୁ ଅଭଙ୍ଗା ଅବସ୍ଥାରେ ଦଶ ବାରଟି ଘର ଥିଲା କି ନାହିଁ ସନ୍ଦେହ । ହିରୋସୀମା ବିସ୍ଫୋରଣକୁ ଦେଖିଥିବା ସେଠାକାର କୌଣସି ଲୋକ ଆଜି ପର୍ଯ୍ୟନ୍ତ ବଞ୍ଚି ପାରିନାହାନ୍ତି ; ତାହାର ଭୟାବହତା ଆମକୁ ପ୍ରତ୍ୟକ୍ଷରେ ଦେଖି ବର୍ଣ୍ଣନା କରିବା ପାଇଁ ସେତେବେଳର ବଞ୍ଚିଥିବା ଲୋକମାନେ ଯାହା ବର୍ଣ୍ଣନା କରିଛନ୍ତି, ସେଥିରୁ ଯୁଦ୍ଧର ଭୟାଭୟାବହତା କଥା ଆମେ ଯାହା ଜାଣିପାରୁଛୁ ।

ପରମାଣୁ ବୋମା ଉଦ୍ଭାବିତ ହେଲାପରେ ସାରା ପୃଥିବୀ ଶଙ୍କିତ ହୋଇ ପଡ଼ିଥିଲା ପରମାଣୁ ବୋମାର ବିସ୍ଫୋରଣ ଜନିତ ଭୟାବହତା ପାଇଁ । କିନ୍ତୁ ପରମାଣୁ ବୋମା ଉଦ୍ଭାବିତ ହେବାର ମାତ୍ର ୭।୮ ବର୍ଷ ଭିତରେ ପରମାଣୁ ବୋମାଠାରୁ ଆହୁରି ଢେର ଅଧିକ ଭୟାବହ ଉଦ୍‌ଜାନ ବୋମା ଉଦ୍ଭାବିତ ହୋଇ ସାରା ପୃଥିବୀକୁ ଆହୁରି ଶଙ୍କିତ କରି ପକାଇଲା । ଉଦ୍‌ଜାନ ବୋମାକୁ ପ୍ରଥମେ ଉଦ୍ଭାବନ କଲା ଯୁକ୍ତରାଷ୍ଟ୍ର ଆମେରିକା । ସେ ମଧ୍ୟ ଏହାର ବିସ୍ଫୋରଣ ପରୀକ୍ଷା କରିବାରେ ସର୍ବପ୍ରଥମ । ଆମେରିକା ଭାବିଲା ଉଦ୍‌ଜାନ ବୋମା ଯୋଗୁଁ ସେ ସାରା ପୃଥିବୀରେ ଆଧିପତ୍ୟ ବିସ୍ତାର କରିପାରିବ । ଆମେରିକାର ସେ ସ୍ୱପ୍ନ ବେଶୀଦିନ ରହିଲାନି । ଆମେରିକା ଉଦ୍‌ଜାନ ବୋମା ପରୀକ୍ଷା କରିବାର ବର୍ଷେ ଦୁଇବର୍ଷ ମଧ୍ୟରେ ସୋଭିଏତ ଋଷିଆ ଉଦ୍‌ଜାନ ବୋମା ଉଦ୍ଭାବନ କରି ଅତି ଗୋପନୀୟ ଭାବରେ ଏହାର ଭୟାବହତା ପରୀକ୍ଷା କରିନେଲା । ଋଷିଆର ଉଦ୍‌ଜାନ ବୋମା ତଥ୍ୟ ଆଉ କେହି ଜାଣିବା ପୂର୍ବରୁ ଯୁକ୍ତରାଷ୍ଟ୍ର ଆମେରିକା ଏହା ଜାଣିପାରି ଏହାର ପ୍ରଚାର ସବା ପହିଲେ କରିଦେଲା । ଆମେରିକା ଦେଖିଲା ଯେ ଯଦି ଉଦ୍‌ଜାନଠାରୁ ଶକ୍ତିଶାଳୀ ବୋମା ସେ ତିଆରି ନ କରୁଛି, ତେବେ ସେ ତା ପ୍ରାଧାନ୍ୟ ନିହାତି ହରାଇ ବସୁଛି । ତେଣୁ ସେ ଚେଷ୍ଟା ଚଳାଇଲା ଉଦ୍‌ଜାନ ବୋମାଠାରୁ ଆହୁରି ଶକ୍ତିଶାଳୀ ବୋମା ତିଆରି କରିବା ପାଇଁ । ଋଷିଆ ଯେ ବସି ରହିଥିଲା ତାହା ନୁହେଁ । ସେ ମଧ୍ୟ ଏ ଘୋଡ଼ା ଦୌଡ଼ରେ ଯୋଗ ଦେଇଥିଲା । ହଠାତ୍ ଦିନେ ସୋଭିଏତ ଋଷିଆ ସାରା ପୃଥିବୀକୁ ଚକିତ କରିଦେଲା ; କ'ଣ ନା ତା ହାତରେ ଶହେ ମେଗାଟନର ପରମାଣୁ ବୋମା ରହିଛି ବୋଲି ।

ଏହା ଦେଖି ଆମେରିକା ସ୍ଥିର ହୋଇ ବସି ରହି ପାରିଲା ନି । ସୋଭିଏଟ୍ ମାନେ ଶହେ ମେଗାଟନର ବୋମା ତିଆରି କରିଛନ୍ତି ବୋଲି କହିବାର ଅଳ୍ପ କେଇଦିନ ମଧ୍ୟରେ ଆମେରିକା ଶହେ ମେଗାଟନ ବୋମା ତିଆରି କରି ପାରିଥିଲା । ପରମାଣୁ ଅସ୍ତ୍ର ପ୍ରତିଯୋଗିତାରେ ଏହି ଯେଉଁ ଘୋଡ଼ା ଦୌଡ଼, ସୌଭାଗ୍ୟର ବିଷୟ ତାହା ଏହି କେତେଦିନ ପାଇଁ ବନ୍ଦ ରହିଛି । ଶହେ ମେଗାଟନଠାରୁ ଆହୁରି ଶକ୍ତିଶାଳୀ ବୋମା କେହି ତିଆରି କରିନାହାନ୍ତି ।

ଅତି ସତର୍କତାର ସହିତ କଳନା କରାଯାଉଛି ଯେ, ଯୁକ୍ତରାଷ୍ଟ୍ର ଆମେରିକା ଓ ସୋଭିଏଟ ରୁଷିଆ ହାତରେ ବର୍ତ୍ତମାନ ହାରାହାରି ଦୁଇଶହ ଲେଖାଏଁ ଶହେ ମେଗାଟନ ବୋମା ଓ ଦଶହଜାର ସରିକି ଉଦ୍‌ଜାନ ବୋମା ରହିଛି । ତା ଛଡ଼ା ପରମାଣୁ ବୋମାର ସଂଖ୍ୟା କେତେ କଳ୍ପନାତୀତ । ସାରା ପୃଥିବୀକୁ ଧ୍ୱଂଶକରି ବିଶ୍ୱପୃଷ୍ଠରୁ ଏହାକୁ ନିଶ୍ଚିହ୍ନ କରିବାକୁ ଏହାର କିୟଦଂଶ ମାତ୍ର ଯଥେଷ୍ଟ ।

## ପରମାଣୁ ଯୁଦ୍ଧରେ କ'ଣ ସାରା ପୃଥିବୀ ଧ୍ୱଂସ ପାଇବ ?

ଯେଉଁ ପରମାଣୁ ବୋମା ଜାପାନର ହିରୋସୀମା ଉପରେ କି ନାଗାସାକି ଉପରେ ପଡ଼ିଥିଲା ସେଗୁଡ଼ିକ ଅପେକ୍ଷାକୃତ କମ ଶକ୍ତି ବିଶିଷ୍ଟ । ଆଜିକାଲି ଯେଉଁ ସବୁ ପରମାଣୁ ବୋମା ବାହାରିଲଣି, ସେଗୁଡ଼ିକ ହିରୋସୀମା ବୋମାଠାରୁ ଢେର ଅଧିକ ଶକ୍ତିଶାଳୀ । ପରମାଣୁ ବୋମାର ଶକ୍ତିଶାଳୀତା ଓ ଧ୍ୱଂସକାରୀ ଶକ୍ତି କିଲୋଟନ ଟି. ଏନ. ଟି. ହିସାବରେ ଗଣାଯାଏ । ଯେଉଁବୋମା ହିରୋସୀମା ଉପରେ ପଡ଼ିଥିଲା ତା'ର ଶକ୍ତିଶାଳୀତା ହେଉଛି ୨୦ କିଲୋଟନ, ଅର୍ଥାତ୍ ଏହାର ବିସ୍‌ଫୋରଣ କ୍ଷମତା ହେଉଛି ୨୦,୦୦୦ ଟନ ଟି. ଏନ. ଟି.ର ବିସଫୋରଣ କ୍ଷମତା ସହ ସମାନ । ବିଜ୍ଞାନ ଜଗତରେ ପରମାଣୁ ବୋମା ତଳକୁ ସବୁଠାରୁ ଶକ୍ତିଶାଳୀ ହେଉଛି ଟି. ଏନ. ଟି. ବୋମା । ଗତ ମହାଯୁଦ୍ଧ ସମୟରେ ବଡ଼ ବଡ଼ ବୋମା ଏହିଥିରୁ ପ୍ରସ୍ତୁତ ହୋଇଥିଲା । ପ୍ରଥମ ଓ ଦ୍ୱିତୀୟ ମହାସମର ବେଳିଆରେ ଏହି ଟି. ଏନ. ଟି. ବୋମା ଥିଲା ଅତ୍ୟନ୍ତ ଧ୍ୱଂସକାରୀ ବୋମା । ୨୦,୦୦୦ ଟନ ଟି. ଏନ. ଟି. ବିସ୍‌ଫୋରିତ ହେଲେ ଯେତିକି ଧ୍ୱଂସ ସାଧିତ ହେବ, ସେତିକି ଧ୍ୱଂସ ସାଧିତ ହୋଇଥିଲା ହିରୋସୀମା ଉପରେ ପତିତ ପରମାଣୁ ବୋମାଦ୍ୱାରା ।

ଆଜି କାଲି ଏମିତି ପରମାଣୁ ବୋମା ତିଆରି ହେଲଣି, ଯାହାଦ୍ୱାରା ଧ୍ୱଂସକାରୀ ଶକ୍ତି ହେଉଛି ୫୦୦ କିଲୋଟନ । ଅର୍ଥାତ୍ ଏ ଭଳି ବୋମା ହିରୋସୀମା ବୋମାଠାରୁ ୨୫ ଗୁଣ ଅଧିକ ଶକ୍ତିଶାଳୀ । ୫୦୦ କିଲୋଟନରୁ ଅଧିକ ଶକ୍ତିଶାଳୀ ବୋମା ତିଆରି ହୁଏନାହିଁ । ଏହାଠାରୁ ଅଧିକ ଶକ୍ତିଶାଳୀ ବୋମା ଉଦ୍‌ଜାନ ବୋମା ଭାବରେ ତିଆରି ହୁଏ ।

ଯେଉଁ ସର୍ବପ୍ରଥମ ଉଦ୍‌ଜାନ ବୋମା ତିଆରି ହୋଇଥିଲା ତାର ଶକ୍ତିଶାଳୀତା ଥିଲା ୫,୦୦୦ କିଲୋଟନ ବା ୫ ମେଗାଟନ ଯେଉଁ ଉଦ୍‌ଜାନ ବୋମା ଆମେରିକା ତିଆରି କରି ୧୯୫୪ ମସିହା ମାର୍ଚ୍ଚ ମାସ ପହିଲା ଦିନ ପ୍ରଶାନ୍ତ ମହାସାଗରସ୍ଥିତ ବିକିନି ଏଟଲଠାରେ ପରୀକ୍ଷା କରିଥିଲା ତାର ଶକ୍ତିଶାଳୀତା ଥିଲା ୧୫,୦୦୦ କିଲୋଟନ । ଏ ଭଳି ଗୋଟିଏ ବୋମାର ଶକ୍ତିଶାଳୀତା ୭୫୦ ଗୋଟି ହିରୋସୀମା ବୋମା ସହିତ ସମାନ । ଅବଶ୍ୟ ଆଜିକାଲି ଏହାଠାରୁ ଶକ୍ତିଶାଳୀ ଉଦ୍‌ଜାନ ବୋମା ତିଆରି ହେଲଣି ।

ଆଜିକାଲି ଯେଉଁ ଶହେ ମେଗାଟନ ବୋମା ତିଆରି ହେଲଣି, ତାର ଶକ୍ତି ହେଉଛି ୧୦୦ ମେଗାଟନ ଅର୍ଥାତ୍ ୧୦୦,୦୦ କିଲୋଟନ । ଏହିଭଳି ଗୋଟିଏ ବୋମା ୫,୦୦୦ ହିରୋସୀମା ବୋମା ସହିତ ସମାନ ।

ଗୋଟିଏ ୨୦ କିଲୋଟନ ବୋମା ଯଦି ହିରୋସୀମାର ଚାରିଲକ୍ଷ ଲୋକଙ୍କୁ ନଷ୍ଟ କରିପାରିଲା, ତେବେ ଗୋଟିଏ ୧୫ ମେଗାଟନ ଉଦ୍‌ଜାନ ବୋମା ଅନ୍ୟୁନ ୩୦ କୋଟି ଲୋକଙ୍କୁ ଧ୍ୱଂସ କରି ପାରିବ ଓ ଗୋଟିଏ ୧୦୦ ମେଗାଟନ ବୋମା ଅନ୍ୟୁନ ୨୦୦ କୋଟି ଲୋକଙ୍କୁ ନିଶ୍ଚିହ୍ନ କରି ପାରିବ । ସୋଭିଏଟ ରୁଷିଆ ଓ ଆମେରିକା ହାତରେ ଯେଉଁ ୧୦୦, ୨୦୦ ମେଗାଟନ ଓ ୧୦,୦୦୦ ଉଦ୍‌ଜାନ ବୋମା ଅଛି, ସେଥିରୁ ଯଦି ମାତ୍ର କେଇଗୋଟି ବ୍ୟବହୃତ କରାଯାଏ, ତେବେ ସାରା ପୃଥିବୀର ୬୦୦ କୋଟି ଲୋକ ଆଖି ପିଛୁଳାକେ ଧ୍ୱଂସ ପାଇଯିବେ । ସବୁତକ ବୋମା ବ୍ୟବହାର କରିବା ଦରକାର ପଡ଼ି ନ ପାରେ । ତେଣୁ ପୃଥିବୀର ଜନସମାଜ ଏଥିପ୍ରତି ସଚେତନ ହେବା ସର୍ବାଦୌ ଆବଶ୍ୟକ । କାରଣ ମୃତ୍ୟୁଦୂତ ବର୍ତ୍ତମାନ ସମସ୍ତଙ୍କ ଦୁଆର ସମ୍ମୁଖରେ ଦଣ୍ଡାୟମାନ । ବର୍ତ୍ତମାନ କେହି ଭାବିବା ଉଚିତ ନୁହେଁ ଯେ ଆମେରିକା ରୁଷିଆ ମଧ୍ୟରେ ଯୁଦ୍ଧ ହେଲେ କେବଳ ଆମେରିକା ରୁଷିଆ ଧ୍ୱଂସ ପାଇଯିବେ, ଆମେ ସବୁ ବର୍ତ୍ତିଯିବୁ, ଆମର କିଛି ହେବନି ତାହା ନୁହେଁ । ଏହି ଯୁଦ୍ଧ ହେଲେ ସାରା ପୃଥିବୀ ଧ୍ୱଂସ ପାଇବ । ଆମେରିକା ଓ ରୁଷିଆ ପ୍ରତ୍ୟେକେ ଏପରି ଛକାଛକି ହୋଇ ରହିଛନ୍ତି ଯେ ଯୁଦ୍ଧ ଯଦି ଭୁଲରେ ଆରମ୍ଭ ହୋଇଯାଏ, ତେବେ ଘଣ୍ଟାକ ଘଣ୍ଟାକରେ ପୃଥିବୀ ଧ୍ୱଂସ ପାଇଯିବା ଅସମ୍ଭବ ନୁହେଁ । ପ୍ରକାଶ ଥାଉକି କମ୍ପ୍ୟୁଟରର ପ୍ରମାଦ ଯୋଗୁଁ କେଇବର୍ଷ ମଧ୍ୟରେ ଅନ୍ୟୁନ ଦୁଇଥର ଭୁଲରେ ବିଶ୍ୱଯୁଦ୍ଧ ଆରମ୍ଭ ହୋଇ-ଯିବା ଅବସ୍ଥାକୁ ଗଲି ଆସିଥିଲା । ସୌଭାଗ୍ୟ ବଶତଃ ଠିକ୍ ସମୟରେ ତ୍ରୁଟି ଜଣା ପଡ଼ିଯାଇଥିଲା । ଯା ଫଳରେ କି ଏଭଳି ଏକ ବିପଦପୂର୍ଣ୍ଣ ଅବସ୍ଥାକୁ ଆୟତ୍ତ କରାଯାଇ ପାରିଥିଲା ବର୍ତ୍ତମାନ ଆମେରିକା ଓ ରୁଷିଆ ତୃତୀୟ ବିଶ୍ୱଯୁଦ୍ଧ ପାଇଁ ପୁରାପୁରି ଭାବେ ପ୍ରସ୍ତୁତ । ଯୁଦ୍ଧ ଆରମ୍ଭ କରିବା ଦାୟିତ୍ୱ ରହିଛି କମ୍ପ୍ୟୁଟର ଉପରେ । ଏହି ଯୁଦ୍ଧ ଆରମ୍ଭ ହେଲେ ଆମେରିକା ଓ ରୁଷଆର କେଉଁ କେଉଁ ସହର ଓ କେଉଁ କେଉଁ ରାଷ୍ଟ୍ର ଉପରେ ଆକ୍ରମଣ ଚଳାଇବ, ତାହା ଠିକ ହୋଇ କମ୍ପ୍ୟୁଟରକୁ ଜଣାଇ ଦିଆ ଯାଇଛି ଓ ବିରାଟ କ୍ଷେପଣାସ୍ତ୍ର ଆଗରେ ଉଦ୍‌ଜାନ ବୋମା ଶହେ ମେଗାଟନ ବୋମା ଆଦି ରଖାଯାଇ ସେହି ସବୁ ସ୍ଥାନକୁ ମୁହଁ କରି ଭୂମିତଳ ସୁଡ଼ଙ୍ଗ-ମାନଙ୍କରେ ଅପେକ୍ଷା କରିବା ଅବସ୍ଥାରେ ରଖାଯାଇଛି ।

ସେହିଭଳି ରୁଷିଆ ଆମେରିକାର କେଉଁ କେଉଁ ସହର ଓ ବନ୍ଧୁ ରାଷ୍ଟ୍ର ଉପରେ ଆକ୍ରମଣ କରିବ ତାହା ଠିକ୍ କରାଯାଇ ସେହି

ଅନୁସାରେ କ୍ଷେପଣାସ୍ତ୍ରମାନ ପରମାଣୁ ମାରଣାସ୍ତ୍ର ସହ ପ୍ରସ୍ତୁତ କରାଯାଇ ରଖାଯାଇଛି । ସେ ସବୁର ହିସାବ ରଖିଛି କମ୍ପ୍ୟୁଟର । ଖାଲି ଯୁଦ୍ଧ ଆରମ୍ଭ ହେଲ, ଏଇ ଆଦେଶ ଟିକକ ମିଳିବାମାତ୍ରେ କମ୍ପ୍ୟୁଟର କାର୍ଯ୍ୟ କରିବା ଆରମ୍ଭ କରିବ । ତାରି ଆଦେଶରେ ଏଇ ମାରଣାସ୍ତ୍ରଗୁଡ଼ିକ ଆଖି ପିଛୁଳାକେ ଛୁଟି ଧାଇଁବେ ପରସ୍ପର ଶତ୍ରୁଦେଶ ଓ ମିତ୍ରଦେଶ ଅଭିମୁଖେ ଓ ଆଖି ପିଛୁଳାକେ ସବୁଦେଶ ଧ୍ୱଂସ ହୋଇ ସ୍ତୂପରେ ପରିଣତ ହେବ । ହିରୋସୀମା ଓ ନାଗାସାକିର କରୁଣ ଚିତ୍କାର ଭଳି ସାରା ପୃଥିବୀ ପରମାଣୁ ବିସ୍ଫୋରଣର କରୁଣ ଚିତ୍କାର ଓ କ୍ରନ୍ଦନ ବିଳାପରେ ନାନାଦିତ ହେବ ଓ ସେମାନଙ୍କୁ ରକ୍ଷା କରିବାକୁ କେହି ନ ଥିବେ । ମାତ୍ର ଅଧଘଣ୍ଟାଏ ଯୁଦ୍ଧ ଭିତରେ ସାରା ପୃଥିବୀ ଖଣ୍ଡ ବିଖଣ୍ଡିତ ହୋଇ ଗ୍ରହାଣୁପୁଞ୍ଜ ସୌର ପରିକ୍ରମା କଲାଭଳି ପୃଥିବୀର ଧ୍ୱସ୍ତ ବିଧ୍ୱସ୍ତ ଖଣ୍ଡମାନ ସୂର୍ଯ୍ୟ ପରିକ୍ରମା କରିବେ । ପୃଥିବୀ ପୃଷ୍ଠରୁ ସୁସଭ୍ୟ ମଣିଷ ସମାଜ ଧ୍ୱଂସ ପାଇଯିବ, ଆଜିର ଅତ୍ୟୁନ୍ନତ ବୈଜ୍ଞାନିକ ସଭ୍ୟତା ଚିରଦିନ ପାଇଁ ସମାଧି ଲଭିବ ।

ଶାନ୍ତିର ଦୂତ ଆଲବର୍ଟ ଆଇନ୍‌ଷ୍ଟାଇନଙ୍କୁ ଥରେ ପ୍ରେସ୍ ସଂବାଦଦାତାମାନେ ପଚାରିଥିଲେ, ଆପଣତ ଆପଣଙ୍କ ଜୀବଦ୍ଦଶାରେ ପ୍ରଥମ ମହାସମର ଦେଖିଛନ୍ତି, ଦ୍ୱିତୀୟ ମହାସମର ବି ଦେଖିଛନ୍ତି, କୁହନ୍ତୁତ ତୃତୀୟ ମହାସମର ଯଦି ଆରମ୍ଭ ହୁଏ, ତେବେ ଏହା କେଉଁ ଧରଣର ଭୟାବହ ହେବ ।"

ଆଇନ୍‌ଷ୍ଟାଇନ୍ ଏହି ପ୍ରଶ୍ନରେ ସାମାନ୍ୟ ହସିଲେ, କହିଲେ "ତୃତୀୟ ମହାସମର କେଉଁ ଧରଣର ହେବ ଓ ଏହାର ଭୟାବହତା କେତେ ହେବ, କହି ପାରିବି ନାହିଁ । ତେବେ ଚତୁର୍ଥ ମହାସମର କେଉଁ ଧରଣର ହେବ କହିଦେଇ ପାରେ ।"

ପ୍ରେସ୍ ସଂବାଦଦାତା ଉତ୍ସୁକ ହୋଇ ତାଙ୍କ ଆଡ଼କୁ ଅନାଇ ରହିଲେ ।

ସେ କହିଲେ, "ଦେଖ, ଚତୁର୍ଥ ମହାସମର ହେଲେ, ଏହା ଲାଠି, ଠେଙ୍ଗା, ପଥରର ଯୁଦ୍ଧ ହେବ । ଏଥିରେ କୌଣସି ମାରଣାସ୍ତ୍ର ବ୍ୟବହୃତ ହେବ ନାହିଁ ।"

ସମ୍ବାଦଦାତାମାନେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "କେମିତି" ?

ସେ କହିଲେ, "ଦେଖ, ତୃତୀୟ ମହାସମର ଯଦି ହୁଏ, ତାହା ଏତେ ବ୍ୟାପକ, ଭୟାବହ ଓ ଧ୍ୱଂସକାରୀ ହେବ ଯେ ଏହି ଯୁଦ୍ଧରେ ସାରା ପୃଥିବୀର ସଭ୍ୟ ଜନ ସମାଜ ଧ୍ୱଂସ ପାଇଯିବ । ଜଣେ ସୁଦ୍ଧା ସଭ୍ୟ ଲୋକ ବଞ୍ଚିବେନି । ଯେଉଁ କେତେଜଣ ଲୋକ ବଞ୍ଚିଯିବେ, ସେମାନେ ହେବେ ଆଫ୍ରିକାର ତଥା ଭାରତ ଓ ଦକ୍ଷିଣ ଆମେରିକାର ଘନ ଜଙ୍ଗଲର କେତେକ ଆଦିମ ଅଧିବାସୀ, ଯେଉଁମାନଙ୍କୁ ବର୍ତ୍ତମାନର ସଭ୍ୟତା ମୋଟେ ସ୍ପର୍ଶ କରିନି । ସେତେବେଳେ ସାରା ପୃଥିବୀରେ ସେହିଭଳି କେତେଜଣ ହେବେ ଅଧିବାସୀ । ସେମାନେ ଯେତେବେଳେ ପରସ୍ପର ମଧ୍ୟରେ କଳି କଜିଆ ବା ଯୁଦ୍ଧ କରିବେ, କେଉଁଥିରେ କରିବେ ? ଆଧୁନିକ ସଭ୍ୟତା ଆସିବା ବହୁ ପୂର୍ବରୁ ପୃଥିବୀର ଆଦିମ ଅଧିବାସୀମାନେ ଯେମିତି ନିଜନିଜ ମଧ୍ୟରେ ଢେଲା, ପଥର, ବାଡ଼ିରେ ଯୁଦ୍ଧ କରୁଥିଲେ, ଏ ଯୁଦ୍ଧ ଠିକ୍ ସେମିତି ହେବନାହିଁ ତ କେମିତି ହେବ ?

ଆଇନ୍‌ଷ୍ଟାଇନ୍‌ଙ୍କ ଉପରୋକ୍ତ ମତବାଦ ଯେ ଅଯଥାର୍ଥ ତାହା କେହି କହି ପାରିବେ ନାହିଁ । ଏହା ସ୍ୱତଃ ସିଦ୍ଧ ଯେ ତୃତୀୟ ମହାସମର ହେଲେ ପରମାଣୁ ଯୁଦ୍ଧ ହେବ ଓ ସେଥିରେ ସାରା ପୃଥିବୀ ଖଣ୍ଡ ବିଖଣ୍ଡିତ ହୋଇ ଗ୍ରହାଣୁପୁଞ୍ଜପରି ସୂର୍ଯ୍ୟ ପରିକ୍ରମା କରି ବୁଲିବ । ଆମ ସୌର ଜଗତର ଦଶମ ଗ୍ରହ ସଂପର୍କରେ କେତେକ ସଂଦେହ ପ୍ରକାଶ କରନ୍ତି । କେତେକ କହନ୍ତି, ଆମ ସୌର ଜଗତର ଦଶମ ଗ୍ରହ ଅଛି ତାହା ଆବିଷ୍କୃତ ହୋଇନାହିଁ । ଆଉ ଦଳେ କହୁଛନ୍ତି, ଆମର ଦଶମ ଗ୍ରହ ଥିଲା, ତାହା ଧ୍ୱଂସ ପାଇ ଖଣ୍ଡ ବିଖଣ୍ଡିତ ହୋଇ ବର୍ତ୍ତମାନର ଗ୍ରହାଣୁମଣ୍ଡଳ ଭାବରେ ସୌର ପରିକ୍ରମା କରିଚାଲିଛି । ଗ୍ରହାଣୁମାନଙ୍କର ଖଣ୍ଡିଆ ମୁଣ୍ଡିଆ ଆକାରକୁ ଆଲୋଚନାକୁ ନେଲେ ଏହା ଏକ ଖଣ୍ଡ ବିଖଣ୍ଡିତ ଗ୍ରହର ଅଂଶ ବିଶେଷ ବୋଲି ଧାରଣା ହେବା ସ୍ୱାଭାବିକ । ବର୍ତ୍ତମାନ ଯେଉଁଠି ଗ୍ରହାଣୁ ଗ୍ରହ ଆମ ପୃଥିବୀ ଭଳି ମଙ୍ଗଳ ଓ ବୃହସ୍ପତି କକ୍ଷ ମଧ୍ୟରେ ଥିବା ଏକ ସୁନିର୍ଦ୍ଦିଷ୍ଟ କକ୍ଷରେ ସୂର୍ଯ୍ୟ ପରିକ୍ରମା କରୁଥିଲା । କୌଣସି କାରଣବଶତଃ ସେହି ଗ୍ରହଟି ଧ୍ୱଂସ ପାଇଯାଇ ଖଣ୍ଡ ବିଖଣ୍ଡିତ ହୋଇଗଲା ଓ ତାହାର ଅଂଶ ବିଶେଷ ହେଉଛି ଗ୍ରହାଣୁ ଭେଷ୍ଟା, ସିରସ, ଜବାରସ୍, ପ୍ରଭୃତି । କେତେକ କଳ୍ପନା ବାଦି ବୈଜ୍ଞାନିକ ଯୁକ୍ତି ବାଢ଼ନ୍ତି, ସେଠି ଯେଉଁ ଗ୍ରହ ଥିଲା ସେଇ ଗ୍ରହରେ ଦିନେ ପୃଥିବୀ ଭଳି ସୁସଭ୍ୟ ଜନ ସମାଜ ଥିଲା । ସେମାନେ ବିଜ୍ଞାନରେ ଖୁବ୍ ଉନ୍ନତି ଲାଭ କରିଥିଲେ ଓ ବର୍ତ୍ତମାନର ପୃଥିବୀ ଲୋକଙ୍କ ଭଳି ପରମାଣୁ ବୋମା, ଉଦଜାନ ବୋମା ମେଗାଟନ ବୋମା ଜାତୀୟ ଅସଂଖ୍ୟ ମାରଣାସ୍ତ୍ରରେ ଅଧିକାରୀ ଥିଲେ । ସେମାନଙ୍କ ନିଜ ନିଜ ମଧ୍ୟରେ କଳହ ବୃଦ୍ଧି ପାଇ ଏକ ମହା ସମର ହେଲା । ପ୍ରତ୍ୟେକ ପରସ୍ପର ବିରୁଦ୍ଧରେ ପରମାଣୁ ମାରଣାସ୍ତ୍ର ଭଳି ମାରଣାସ୍ତ୍ରମାନ ପ୍ରୟୋଗ କଲେ । ଯା'ଫଳରେ ଲୋକମାନେତ ଧ୍ୱଂସ ପାଇଗଲେ,ସେଥି ସହିତ ସେମାନଙ୍କ ଗ୍ରହ ବ ଧ୍ୱଂସ ପାଇ ବର୍ତ୍ତମାନର ନିର୍ଜୀବ ଗ୍ରହାଣୁ ଖଣ୍ଡରେ ପରିଣତ ହେଲା । ସେହି ମତବାଦୀଙ୍କ ଭିତରୁ କେତେକ ସାବଧାନ ବାଣୀ ଶୁଣାନ୍ତି 'ହେ ପୃଥିବୀବାସୀ ଗଣ ; ତୁମ୍ଭେମାନେ ସାବଧାନ ହୁଅ । ତୁମମାନଙ୍କ ଆବସ୍ଥା ସେମିତି ଭଲ ନୁହେଁ । ତୁମ୍ଭେମାନେ ଏଭଳି ଅବସ୍ଥା ସୃଷ୍ଟି କରନାହିଁ ଯଦ୍ୱାରା ତୃତୀୟ ମହାସମର ଆରମ୍ଭ ହେବ । ଏହା ଆରମ୍ଭ ହେଲେ ସାରା ମଣିଷ ସମାଜ ତ ଧ୍ୱଂସ ପାଇଯିବ, ତୁମମାନଙ୍କ ପ୍ରିୟ ପୃଥିବୀ ଖଣ୍ଡ ବିଖଣ୍ଡିତ ହୋଇ ବର୍ତ୍ତମାନର ଗ୍ରହାଣୁମଣ୍ଡଳର ଅବସ୍ଥା ଲାଭ କରିବ । ଭବିଷ୍ୟତରେ ଅନ୍ୟ ଗ୍ରହ ଉପଗ୍ରହର ଲୋକେ ସେହି ଗ୍ରହାଣୁକୁ ପରୀକ୍ଷା କରି ଯେପରି ନକହନ୍ତି, ଏଠି ଦିନେ ଏକ ସୁସଭ୍ୟ ସମାଜ ଥିଲା । ସେମାନେ ନିଜ ଅବିବେକୀତାରୁ ପରସ୍ପର ସହିତ ଯୁଦ୍ଧ କରି ସାରା ବିଶ୍ୱରୁ ନିଶ୍ଚିହ୍ନ ହୋଇଯାଇ ଏଭ ଗ୍ରହାଣୁ ଅବସ୍ଥାକୁ ଚାଲିଆସିଲେ ।

ଖାଲି ସାବଧାନ କରାଇଦେଲେ ଯେ ଆମମାନଙ୍କ କର୍ତ୍ତବ୍ୟ ଶେଷ ହୋଇଗଲା ତା' ନୁହେଁ । ପୃଥିବୀର ପ୍ରତ୍ୟେକ ନାଗରିକ

ଆଜି ଉପଲବ୍ଧି କରିବା ଉଚିତ୍ ଯେ ପୃଥିବୀରେ ଆଦର୍ଶବାଦର ଦ୍ୱନ୍ଦ୍ୱ ପୃଥିବୀର ଶାନ୍ତିକାମୀ ଲୋକେ ଅସହାୟ ଅବସ୍ଥାରେ ମୃତ୍ୟୁବରଣ କରିବା ଅବସ୍ଥାରେ ଉପନୀତ । ପିଲମାନଙ୍କ ପୋଖରୀ ଭିତରକୁ ଟେକା ପକାଇବା ଖେଳରୁ ବେଙ୍ଗମାନେ ଯେମିତ ନିପାତ ହେଲେ ଓ ଶେଷରେ ବଡ଼ ବେଙ୍ଗରାଜା ଆସି ପିଲମାନଙ୍କୁ କାକୁତିମିନତି କଲ, "ପିଲାଏ, ତୁମ୍ଭମାନଙ୍କର ଯାହାଖେଳ, ଆମର ତାହା କାଳ,ବର୍ତ୍ତମାନର ପୃଥିବୀରେ ତାହା ହିଁ ହେବାକୁ ବସିଛି । ଦୁଇଟି ଦେଶର ଆଦର୍ଶବାଦ ଦ୍ୱନ୍ଦ୍ୱରୁ ସାରା ପୃଥିବୀ ଧ୍ୱଂସ ଆଡ଼କୁ ଟାଣି ହୋଇ ଯାଉଛି । ବର୍ତ୍ତମାନ ସାରା ପୃଥିବୀର ଲୋକେ ଜାଗ୍ରତ ହେବା ଉଚିତ୍ ଯେ ସେମାନଙ୍କ ଜୀବନ ନେଇ ମାତ୍ର ଦୁଇଟି ଦେଶ ପରସ୍ପର ଭିତରେ ଖେଳିବାର ଅବକାଶ ଆଉ ନାହିଁ । ସାରା ପୃଥିବୀର ଅଧିବାସୀମାନେ ନଜ ନିଜର ଭବିଷ୍ୟ ପ୍ରତି ସଜାଗ ହୋଇ ଯୁଦ୍ଧ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଦରକାର । ଯୁଦ୍ଧ ଯେମିତ ଆରମ୍ଭ ନ ହୁଏ, ସେଥିପ୍ରତି ପୃଥିବୀର ପ୍ରତ୍ୟେକ ନାଗରୀକ ସଚେତନ ହେବା ଆବଶ୍ୟକ । ଆମେ ଯଦି ସେଥିପ୍ରତି ଉଦାସୀନ ହୋଇପଡୁ, ତେବେ ସାରା ପୃଥିବୀ ଧ୍ୱଂସ ପାଇଯିବା ସଂଭାବନା । 'ହେ ପୃଥିବୀବାସୀଗଣ; ଭବିଷ୍ୟତ ପାଇଁ ସଚେତନ ହୁଅ । ଯୁଦ୍ଧବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଜନମତ ଦୃଢ଼ କର । ବେଦର ଶ୍ଳୋକ ସମସ୍ତଙ୍କର ଧ୍ୟେୟ ହେଉ ।

ସର୍ବେ ଭବନ୍ତୁ ସୁଖୀନଃ, ସର୍ବେ ସନ୍ତୁ ନିରାମୟା
ସର୍ବେ ଭଦ୍ରାଣୀ ପଶ୍ୟନ୍ତୁ, ମା କଶ୍ଚିତ୍ ଦୁଃଖଭାକ୍ ଭବେତ୍ ।

---

ଅଧ୍ୟକ୍ଷ, ମହଷ କଲେଜ ଅଫ୍
ନେଚୁରାଲ ଇ, ଭୁବନେଶ୍ୱର ।



ସର୍ବଭାରତୀୟ କୃଷି କଂଗ୍ରେସରେ ଓଡ଼ିଶାର ଫଳ ପ୍ରଦର୍ଶନୀ ମଣ୍ଡପରେ ମୁଖ୍ୟମନ୍ତ୍ରୀ




Tapping operation of Ferro Chrome Plant, molted material is coming out of the furnace of Jajpur Road, Cuttack District.

A Cinic beauty of Hira Cement Works at Bargarh in Sumbalpur district. Recently the factory is attached a Slag Cement Mill to produce 1,69,000 tonne of Slag Cement in addition to its existing capacity of 3,96,000 tonne of Portland Cement.





ଟାଇଲ୍ କାରଖାନା, ଚଉଦୁଆର



କଳିଙ୍ଗ ଆଇରନ ୱାର୍କସ୍, ପାୱାର ପ୍ଲାଣ୍ଟ



ସାର କାରଖାନା



ପାରାଦୀପ



ହୀରାକେବ୍‌ଲସ୍

# ଓଡ଼ିଶାରେ ଧାନଚାଷ ସମସ୍ୟା

ଡକ୍ଟର ଦାମୋଦର ଲେଙ୍କା

ଓଡ଼ିଶା ଗୋଟିଏ ଅତି ପ୍ରାଚୀନ କୃଷି ପ୍ରଧାନ ରାଜ୍ୟ । ଧାନ ଏହାର ପ୍ରଧାନ ଫସଲ । ଆରଣ୍ୟକ (wild rice) ରୁ ଧାନ ଚାଷର ଉଦ୍ଭବ । ଚାଷଧାନ ( Cultivetedrice ) Oriyza Sativa ଆରଣ୍ୟକ ଧାନ ଓ ରାଇଜା ପେରେନିସ ( Oriyza Perenis ) ରୁ ଉଦ୍ଭବ । କାଳକ୍ରମେ ପ୍ରାକୃତିକ ସଂଗମ ଓ ଅନୁସଂଗମ ଫଳରେ ଏହି ଦୁଇଟିରୁ ଅଯତ୍ନ ସଂଭୂତ ସନ୍ତାନି ସୃଷ୍ଟ । ଧାନର ପ୍ରକାର ଓ ବିଭିନ୍ନତା ଓ ଅସମାନତା ( diversity ) ର ପ୍ରାଚୁର୍ଯ୍ୟ ଦୃଷ୍ଟିରୁ ଓଡ଼ିଶାର ଜୟପୁରରୁ ଧାନର ଜନ୍ମସ୍ଥାନ ବୋଲି ଧରାଯାଉଛି । ସନ୍ତାନି ନିବାରତର ଜୟପୁର ଅଞ୍ଚଳରେ ଚାଷ କରାଯାଉଥିବା ଆଧୁନିକ ଧାନଗୁଡ଼ିକ ବଛାଯାଉଛି । ସନ୍ତାନି ନିବାରରେ ଦେଖାଯାଉଥିବା ବିଭେଦାୟକ (Variability) ଭାରତବର୍ଷର ଅନ୍ୟାନ୍ୟ ଅଞ୍ଚଳରେ ମିଳୁଥିବା ନିବାର ଓ ତଦ୍‌ଜାତ ଚାଷ ଧାନରେ ଏତେ ପରିମାଣରେ ଦେଖାଯାଏ ନାହିଁ । କୋରାପୁଟ ଜିଲ୍ଲାରୁ ସଂଗୃହୀତ ୧୬୦୦ ପ୍ରକାର ଧାନ ଏବଂ ୫୦୦ ପ୍ରକାର ଟିଟିଙ୍ଗା ଧାନରୁ ଏହି ସୂଚନା ମିଳେ । ଗୁଣସୂତ୍ର ସଂଖ୍ୟା, ବ୍ୟାପକ ବିସ୍ତୃତି, ବହୁବର୍ଣ୍ଣ ଜାବି, ଢେଙ୍ଗାନଡ଼ା, ଚଉଡ଼ାପତ୍ର, ବଡ଼ ଜିହ୍ୱିକା ( ligule ), ଲମ୍ବା ପୁଂକେଶର ଓ ପୃଷ୍ଠ ମଞ୍ଜି ରଙ୍ଗୀନ ଗର୍ଭପାଠ, ଇଯଖ୍ଣ୍ଡ ଇତ୍ୟାଦି ଗୁଣର ଅଧ୍ୟୟନରୁ ଧାନ ବିଶେଷଜ୍ଞ ଡ଼କ୍‌ଟର କେ. ରାମିୟା ଓ ଘୋଷ ଓଡ଼ିଶାର ଜୟପୁର ଅଞ୍ଚଳ ଧାନଚାଷର ଉଦ୍ଭବ କେନ୍ଦ୍ର ବୋଲି ପ୍ରଥମେ ମତ ପ୍ରକାଶ କରିଥିଲେ । ଦଣ୍ଡାବାଙ୍କୁଙ୍ଗା, ଗାହାଡ଼ି, ବିଭିନ୍ନ ପ୍ରକାର କୋଦ୍ମି ଆ ଶାରିଆଡୁସ୍‌କୁ, ଟିପିଟି ସୁପତ୍ତ, ବିଆଳି, ଶାରଦ ଓ ଡାଲୁଆ ଧାନ (ଅଧିକ ଅମଳକ୍ଷମ ଧାନ ଚାଷ ପୂର୍ବରୁ) ଜାତି ଏହାର ସୂଚକ ମଧ୍ୟ । ଭାଦ୍ରବ ଓ ଆଶ୍ୱିନ ମାସରେ କୋରାପୁଟରେ ପାହାଡ଼ରୁ ମୟୂରଭଞ୍ଜ ପାହାଡ଼ିଆ ଅଞ୍ଚଳ, କଟକ ଓ ପୁରୀ ଓ ବାଲେଶ୍ୱର ଜିଲ୍ଲାର ପାଟ ଅଞ୍ଚଳ ପରିଦର୍ଶନ କଲେ ଯେ କୌଣସି ବ୍ୟକ୍ତି ଏ ପ୍ରକାର ସିଦ୍ଧାନ୍ତରେ ଉପନୀତ ହେବା ଲାଗି ଆଗ୍ରହ ପ୍ରକାଶ କରିବ ।

କୋରାପୁଟ ଜିଲ୍ଲାର ପୂର୍ବଘାଟ ପର୍ବତମାଳା ଅଞ୍ଚଳର ଶବରା, ଗଦବା, କନ୍ଧ, କୋୟା, ପରଜା ଓ ଗଣ୍ଡ ଜାତୀୟ ଆଦିବାସୀ ପ୍ରଥମ ଧାନ ଚାଷୀ । ଯୁଗ ଅନୁକ୍ରମେ ଧାନ ଚାଷ ଅନ୍ୟମାନେ ଗ୍ରହଣ କରିଛନ୍ତି । ଓଡ଼ିଶାରେ ଧାନ ଚାଷ କେବେ ଆରମ୍ଭ ହେଲା କହିବା ସହଜ ନୁହେଁ । ଜାପାନୀ ବୈଜ୍ଞାନିକ ନକାରାଙ୍କ ମତରେ ଖ୍ରୀଷ୍ଟପୂର୍ବ ୧୫୦୦ ପୂର୍ବେ ଆଫ୍ରିକାରେ ଓ ୨୮୦୦ ବର୍ଷ ପୂର୍ବେ ଏସିଆ ମହାଦେଶରେ ଧାନ ଚାଷ ହୋଇଛି । କୋରାପୁଟ ପର୍ବତମାଳା ଅଞ୍ଚଳରେ ପ୍ରାୟ ଖ୍ରୀଷ୍ଟପର୍ବ ୨୩୦୦ ବର୍ଷ ସୁଦ୍ଧା ଧାନ ଚାଷ ହେଉଥିଲା ବୋଲି ଅନୁମାନ କରାଯାଉଛି । ଯାହାହେଉ ଓଡ଼ିଶାରେ ଧାନ ଚାଷ ଅତି ପୁରାତନ ଓ ଓଡ଼ିଆ ଜାତିର ଶିକ୍ଷା ଓ ସଭ୍ୟତାର ପ୍ରତୀକ ।

## ଧାନ ଚାଷ କ୍ଷେତ୍ରଫଳ

ଓଡ଼ିଶାର କ୍ଷେତ୍ରଫଳ ୧୫.୫୪ ନିୟୁତ ହେକ୍‌ଟର । ପ୍ରାୟ ୬.୧୩ ନିୟୁତ ହେକ୍‌ଟର ଜମିରେ ଚାଷ ହୁଏ । ବହୁ ଫସଲି ଜମିକୁ ମିଶାଇ ମୋଟ ଚାଷ ଜମି ପରିମାଣ ୮.୭୪୬ ନିୟୁତ ହେକ୍‌ଟର । ବର୍ଷା ଦିନେ ପ୍ରାୟ ୪.୦୧ ନିୟୁତ ହେକ୍‌ଟର ଜମିରେ (୬୬ ପରସେଣ୍ଟ) ଧାନ ଚାଷ ହୁଏ । ବର୍ଷା ଦିନେ (ଖରିଫ୍) ଅଧିକ ଅମଳକ୍ଷମ ଧାନ ୧.୦୫ ନିୟୁତ ହେକ୍‌ଟର ଓ ଖରା ଦିନେ (ଡ଼ାଲୁଅ) ୧୭୦,୦୦୦ ହେକ୍‌ଟର ଜମିରେ ଚାଷ ହୁଏ ।

ଓଡ଼ିଶାରେ ପ୍ରାୟ ୨,୦୦୦ ରୁ ଅଧିକ କିସମର ଦେଶୀ ଇଣ୍ଡିକା ଜାତୀୟ ଧାନ ଚାଷ କରାଯାଏ । ଏପରିକି ପାଖା ପାଖି ୩–୪ ଖଣ୍ଡ ଗାଁରେ ମଧ୍ୟ ୫୦–୬୦ କିସମର ବିଭିନ୍ନ ଧାନ ଚାଷ କରା ଯାଉଥିବା ଦେଖାଯାଏ । କୃଷକ ତାର ଉପଯୁକ୍ତ ବିହନ କିସମ ବାଛି ତାର ନାମ କରଣ କରି ବିଭିନ୍ନ ନାମ ଦେଇ ଯୁଗ ଯୁଗ ଧରି ସାଇତି ରଖିଆସୁଛି । ଚୂଡ଼ିଆ, କେଶରୀ, କଳା ପଣ୍ଡିଆ, ମାଗୁରା, କଳମା, ଚଂପା, ରତ୍ନ ଚୁଡ଼ି, ବେଙ୍ଗ-ବାଉଡ଼ି, ମୋଟିର ନାମ ହଜାର ହଜାର ନାମ ମଧ୍ୟରୁ ମାତ୍ର କେତୋଟି । ମନୋନୟନ ଉପକରଣ ପ୍ରଣାଳୀ ତାକୁ ବେଶ୍ ଜଣା । ୧୯୬୪ ମସିହା ସୁଦ୍ଧା ଯେତେ ଉନ୍ନତ ଧରଣର ଧାନ ବଛା ଯାଇଥିଲା ସେମାନଙ୍କ ମଧ୍ୟରୁ ବି-୭୬, ବି. ଏ.-୭୬, ବି. ଏ.-୬୯, ଟି.-୧୪୧, ଟି. ୯୦, ଟି.-୧୧୪୨, ଏଫ୍. ଆର-୪୩ ବି. ଏଫ୍. ଆର.-୧୩-ଏ, ଏସ୍. ଆର.-୨୬-ବି, ଇତ୍ୟାଦି ପ୍ରଧାନ ।

ଭାରତର ଗବେଷଣାକେନ୍ଦ୍ରରେ କାଳକ୍ରମେ ଅନେକ ଅଧିକ ଅମଳକ୍ଷମ ଧାନ ଜାତି ଉଦ୍‌ଭାବିତ ହୋଇଥିଲେ ହେଁ ଟି.-୧୪୧, ଟି.-୯୦, ଟି.-୧୨୪୨, ଏସ୍. ଆର.-୨୬, ଏଫ୍. ଆର.-୪୩-ବି, ଏ ପର୍ଯ୍ୟନ୍ତ ଖରିଫ୍ ଋତୁରେ ଗହୀର ଓ ପାଟ ଜମିରେ ବହୁତ ପରିମାଣରେ ଚାଷକରା ଯାଉଛି ।

୧୯୬୫ ମସିହାରେ ଓଡ଼ିଶାରେ ଅଧିକ ଅମଳକ୍ଷମ ଧାନ ଚାଷ ଆରମ୍ଭ ହେଲା । ତାଇଚୁଙ୍ଗ, ନାଟିଭ-ସି, ଡିଆଜୁଙ୍ଗ-୨୪୨ ଟାଇନାନ୍ ୩ ର ଚାଷ ସମ୍ବନ୍ଧୀୟ ଗବେଷଣା ଆରମ୍ଭ ହେଲା । ୧୯୬୬-୬୭ ସୁଦ୍ଧା ଆଇ. ଆର.-୮ ଆସିଲା । ଓଡ଼ିଶା ତଥା ଭାରତରେ ଅଧିକ ଅମଳକ୍ଷମ ଧାନ ଚାଷ ପ୍ରବର୍ତ୍ତକ କରିଥିବା ବୈଜ୍ଞାନିକମାନଙ୍କ ମଧ୍ୟରେ ଓଡ଼ିଶା କୃଷି ବିଭାଗର ଉପନିର୍ଦ୍ଦେଶକ ତଥା କୃଷି କଲେଜର ଉଦ୍ଭିଦ ବିଜ୍ଞାନ ବିଭାଗର ପ୍ରାଧ୍ୟାପକ ଓ ତେତ୍‌କାଳୀନ ଭାରତ ସରକାରଙ୍କର ବୀଜ ନିଗମର ନିର୍ଦ୍ଦେଶକ ୰ଡକ୍ଟର କି. ରି. ଚେଲମ୍ ମୁଖ୍ୟ । ଡକ୍ଟର କେ. ରାମିୟା ଅଧିକ ଅମଳକ୍ଷମ ଚାଷ ଦ୍ୱାରା ଓଡ଼ିଶା ତଥା ଭାରତର ଖାଦ୍ୟ ସମସ୍ୟା ଦୂର କରାଯାଇ-ପାରିବ ବୋଲି ସର୍ବତ୍ର କହୁଥିଲେ ଏବଂ ଏଥିପାଇଁ ଶିକ୍ଷା, ଗବେଷଣା ଓ ପ୍ରସାର ପାଇଁ ଯଥେଷ୍ଟ ଉଦ୍ୟମ କରିଛନ୍ତି । ପ୍ରତ୍ୟେକ ରାଜ୍ୟରେ ବର୍ତ୍ତମାନ ଶତାଧିକ ଅଧିକ ଅମଳକ୍ଷମ ଧାନ ଗବେଷଣାଦ୍ୱାରା ବାହାର କରାଯାଇଛି । ୧୯୬୫-୬୬ ମସିହାରେ ଓଡ଼ିଶାରେ ମାତ୍ର ୯୫୦ ହେକ୍ଟର ଜମିରେ ଅଧିକ ଅମଳକ୍ଷମ ଧାନ ଚାଷ କରାଯାଉଥିଲା । ୧୯୭୫-୭୬ ସୁଦ୍ଧା ୯୬୭ ହେକ୍ଟରକୁ ବୃଦ୍ଧି ପାଇଲା । ୧୯୭୩-୭୪ ମସିହାରେ ମୋଟ ଚାଷ ଜମିର ଶତକଡ଼ା ୭.୬ ଭାଗ ଅଧିକ ଅମଳକ୍ଷମ ଧାନ ଥିଲା । ୧୯୮୧ ମସିହା ସୁଦ୍ଧା ଖରିଫ୍ ଋତୁରେ ୧.୦୪ ଓ ଡାଲୁଅ ଋତୁରେ ୦.୧୭୧ ଏପରି ମୋଟ ୧.୨୧୩ ନିୟୁତ ହେକ୍ଟର ଜମିରେ ଅଧିକ ଅମଳକ୍ଷମ ଧାନ ଚାଷ କରାଯାଉଛି । କ୍ରମେ ଏହି ପରିମାଣ ବୃଦ୍ଧି ପାଉଛି ।

## ଧାନ ଅମଳ--

ଓଡ଼ିଶା ଏକ ପାରଂପାରିକ ଧାନ ଚାଷର ରାଜ୍ୟ ହୋଇଥିଲେ ହେଁ ହେକ୍ଟର ପିଛା ଧାନ ଅମଳ ପରିମାଣ ଯଥେଷ୍ଟ ନୁହେଁ । ୧୯୬୦ ମସିହାରୁ ଅବଧି ମୋଟ ହେକ୍ଟର ପ୍ରତି ଅମଳ ପରିମାଣ ବୃଦ୍ଧି ନପାଉଥିବାରୁ ଏହା ଗବେଷକ, ଶିକ୍ଷକ, ଯୋଜନାକାରୀ ତଥା ପ୍ରଶାସକମାନଙ୍କ ମନରେ ଗଭୀର ଆଲୋଡ଼ନ ଓ ଚିନ୍ତା ସୃଷ୍ଟି କରୁଛି । ଏହି ସମସ୍ୟା ଅନୁଧ୍ୟାନ କରି ସମାଧାନ ପନ୍ଥା ସ୍ଥିର କରିବା ପାଇଁ ବୈଜ୍ଞାନିକ ତଥା ଯୋଜନା କମିଶନ ତରଫରୁ ଅନୁଧ୍ୟାନ କରାଯାଉଛି । ସରକାରୀ ହିସାବରୁ ଜଣାଯାଏ ଯେ ୧୯୬୦-୬୧ ମସିହାରେ ଲଘୁଧାନ (ବିଆଳି ଜାତୀୟ) ୩,୮୨,୦୦୦ ହେକ୍ଟର ଜମିରେ ଚାଷ କରାଯାଉଥିଲା ଏବଂ ଏହି ପରିମାଣ ୧୯୮୦-୮୧କୁ ୮,୬୫,୦୦୦ ହେକ୍ଟରକୁ ବୃଦ୍ଧି ପାଇଥିଲା । ଚାଉଳ ଅମଳ ଏହି ସମୟରେ ହେକ୍ଟର ପିଛା ଯଥାକ୍ରମେ ୫.୧୬ ଓ ୬.୦ କ୍ୱିଣ୍ଟାଲ ଥିଲା । ୧୯୬୫-୬୬, ୧୯୬୬-୬୭, ଏହି ହାର ହେକ୍ଟର ପ୍ରତି ମାତ୍ର ୩-୪ କ୍ୱିଣ୍ଟାଲକୁ ହ୍ରାସ ପାଇଥିଲା । ଶାରଦ ଧାନ ୧୯୬୧ ମସିହାରେ ୩.୩୮୨ ନିୟୁତ ହେକ୍ଟର ଓ ୧୯୮୦-୮୧ରେ ୩.୧୫୪ ହେକ୍ଟର ଜମିରେ ଚାଷ କରାଯାଉଥିଲା ଓ ହେକ୍ଟର ପିଛା ଚାଉଳ ଅମଳ ଯଥାକ୍ରମେ ୧୦.୩୩ ଓ ୧୧.୧୪ କ୍ୱିଣ୍ଟାଲ ହୋଇଥିଲା । ୧୯୬୫-୬୬, ୧୯୬୬-୬୭, ୧୯୭୪-୭୫, ୧୯୭୬-୭୭, ୧୯୭୯-୮୦ରେ ଚାଉଳ ଉତ୍ପାଦନ ହାର ୭-୯ କ୍ୱିଣ୍ଟାଲ ହୋଇଥିଲା । ୧୯୭୦-୭୧ ମସିହାରେ ୧,୦୬,୦୦୦ ଓ ୧୯୮୦-୮୧ରେ ୧,୬୫,୦୦୦ ହେକ୍ଟର ଜମିରେ ଅଧିକ ଅମଳକ୍ଷମ ଧାନ ଚାଷ ହୋଇଥିଲା ଓ ହେକ୍ଟର ପିଛା ଚାଉଳ ଅମଳ ଯଥାକ୍ରମେ ୧୭.୫ ଓ ୧୬.୦ କ୍ୱିଣ୍ଟାଲ ଥିଲା । (ଚିତ୍ର—୧୦) ଏଣୁ ଦେଖାଯାଉଛି ଯେ ଧାନ ଜମିର ପରିମାଣ ବୃଦ୍ଧି ପାଉଥିଲେ ସୁଦ୍ଧା ହେକ୍ଟର ପିଛା ଅମଳ ବୃଦ୍ଧି ପାଉନାହିଁ । ହିସାବର ସୂତ୍ର ଯାହାହେଉନା କାହିଁକି ଏହା ଏକ ଚିନ୍ତାର ବିଷୟ । ଏହାର କେତୋଟି କାରଣ ନିମ୍ନରେ ଆଲୋଚିତ ହେଲା ।

୧ । ଜମିର କିସମ ଓ ଧାନ ଚାଷ—ପତନ ଅନୁସାରେ ଓଡ଼ିଶାରେ ଚାଷ ଜମିକୁ ମୁଖ୍ୟତଃ ୩ ଭାଗରେ ବିଭକ୍ତ କରାଯାଇଥାଏ । ଯଥା :— ଡିପ (ଆଟମାଲ, ଟିଆଳି, ଲଘୁ, ତଲଲପୋଡ଼ା), ମଝିଆଳି (ବେର୍ଣ୍ଣା, ଗହୀର ବେଡ଼ା) ଓ ଖାଲ (ବାହାଲ, ପାଟ, ଖୋଲ) । କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାର ଡିପ ଜମି, ଆନ୍ତଃଜିଲ୍ଲାର ମଝିଆଳି ଜମି ସହିତ ପ୍ରାୟ ସମାନ । ଓଡ଼ିଶାର ମୁଖ୍ୟ ଖାଦ୍ୟଶସ୍ୟ ଧାନ ହୋଇଥିବାରୁ ପ୍ରତ୍ୟେକ ଚାଷୀ ଜମିର କିସମ ଯାହା ହେଉନା କାହିଁକି ଧାନ ଚାଷ କରିଥାଏ । କେଉଁଠାରେ ଜମିର ଭୂପକୃତି କହିଁବ ପିଠିଆ ତ କେଉଁଠି, ଛୋଟ, ବଡ଼, ଖାଲ, ଡିପ ମିଶା ପାହାଡ଼ିଆ । କେନ୍ଦୁଝର, ମୟୂରଭଞ୍ଜ, ସୁନ୍ଦରଗଡ଼ ଇତ୍ୟାଦି ଜିଲ୍ଲାରେ ସବା ତଳ ଓ ସବା ଉପର ଜମି କିଆରୀର ଉଚ୍ଚତା ବ୍ୟବଧାନ ୧୦—୧୨ ଫୁଟ । ମାଟି ବାଲିଆ, ବାଲିଆ ଦୋରସା, ଅଥବା ଗଣ୍ଡୁଡ଼ିଆ । ଅନେକ ଜାଗାରେ ଡିପ ଜମିରେ ୪—୬ ଇଞ୍ଚ ତଳେ କଙ୍କଡା ମୁରମର ସ୍ତର । ମାଟି ବୋଲି କିଛି ନାହିଁ । ଏ ସବୁ କିସମ କିଆରିରେ ଖାଲି ଧାନ ଚାଷ । ଟେବୁଲ ନଂ ୧ ରେ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଧାନ ଜମିର କିସମ ମୋଟ ଚାଷ ଜମିର ଶତକଡ଼ା ହିସାବରେ ଦିଆଯାଇଛି ।

### ଟେବୁଲ୍—୧

ବିଭିନ୍ନ ଜିଲ୍ଲାରେ ଧାନ ଜମି କିସମ (ମୋଟ ଚାଷ ଜମିର ଶତକଡ଼ା ଭାଗ) ।

| ଜିଲ୍ଲା | | ଉଚ | ମଧ୍ୟମ | ଖାଲ |
|---|---|---|---|---|
| ମୟୂରଭଞ୍ଜ | .. | ୫୨ | ୮୭ | ୧୦୦ |
| କେନ୍ଦୁଝର | .. | ୨୦ | ୯୪ | ୧୦୦ |
| ସୁନ୍ଦରଗଡ଼ | .. | ୫୫ | ୪୮ | ୧୦୦ |
| ଢେଙ୍କାନାଳ | .. | ୧୯ | ୬୧ | ୧୦୦ |
| ବଲାଙ୍ଗିର | .. | ୩୭ | ୫୦ | ୧୦୦ |
| ସମ୍ବଲପୁର | .. | ୪୨ | ୮୦ | ୧୦୦ |

| | | | | |
|---|---|---|---|---|
| କୋରାପୁଟ | .. | ୧୩ | ୬୪ | ୧୦୦ |
| ଫୁଲବାଣୀ | .. | ୧୬ | ୭୨ | ୧୦୦ |
| କଳାହାଣ୍ଡି | .. | ୩୨ | ୫୬ | ୧୦୦ |
| ବାଲେଶ୍ୱର | .. | ୬ | ୯୮ | ୧୦୦ |
| କଟକ | .. | ୨୧ | ୮୪ | ୯୯ |
| ପୁରୀ | .. | ୨୦ | ୬୪ | ୯୯ |
| ଗଞ୍ଜାମ | .. | ୪ | ୭୩ | ୧୦୦ |

ଏଥିରୁ ଜଣା ପଡୁଛି ଯେ, ମୟୂରଭଞ୍ଜ, ସୁନ୍ଦରଗଡ଼, ବଲାଙ୍ଗିର, ସମ୍ବଲପୁର, କଳାହାଣ୍ଡି ପ୍ରଭୃତି ଜିଲ୍ଲାରେ ଡିପ ଜମିରେ ବହୁଳ ପରିମାଣରେ ଧାନ ଚାଷ ହେଉଛି । କ୍ରମେ ଜଙ୍ଗଲ ସଫା ହୋଇ ଅଧିକ ଡିପ ଓ ଢାଲୁ ଜମିରେ ଧାନ ଚାଷ ହେଉଥିବାରୁ ଏ ସମସ୍ୟା ବୃଦ୍ଧି ପାଉଛି । ଡିପ ଜମିରେ ଛୋଟ ଦିନିଆ ଧାନ ଚାଷ କରାଯାଏ । ସେହି ଧାନ ଜାତିର ଉପାଦନ କ୍ଷମତା ମଧ୍ୟ କମ୍ । ଏଣୁ ମୋଟ ଧାନ ଉପାଦନ ହାର ଓଡ଼ିଶାରେ କମ୍ ବୋଲି ଜଣା ପଡୁଛି । ମରୁଡ଼ି ଏହି ଅଞ୍ଚଳର ଧାନ ଚାଷକୁ ଅତ୍ୟନ୍ତ ଭାବରେ ପ୍ରଭାବିତ କରୁଥିବାରୁ ଅବସ୍ଥା ସାଂଘାତିକ ହୋଇଉଠୁଛି । ଏପରି ଡିପ ଜମିରେ ଧାନ ଚାଷ କରିବା ଅନୁଚିତ ।

## ୬ । ଆବହୱା ଓ ଧାନ ଉତ୍ପାଦନ

ଓଡ଼ିଶା ଏକ ବିଶିଷ୍ଟ ମୌସୁମୀ ବାୟୁ ବୃଷ୍ଟିପୁଷ୍ଟ ଅଞ୍ଚଳ ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁ ପ୍ରବାହ ଓଡ଼ିଶାରେ ସାଧାରଣତଃ ଜୁନ ମାସ ୨ୟ ସପ୍ତାହରେ ଆରମ୍ଭ ହୋଇ ଅକ୍ଟୋବର ପ୍ରଥମ ସପ୍ତାହରେ ଶେଷ ହୁଏ । ଓଡ଼ିଶାର ବାର୍ଷିକ ହାରାହାରି ୧୪୯୮ ମିଲି ଲିଟର ବୃଷ୍ଟିପାତରୁ ୮୦ ଭାଗ ଜୁନ ମାସରୁ ଅକ୍ଟୋବର ମାସ ମଧ୍ୟରେ ମିଳିଥାଏ । ମୌସୁମୀ ବୃଷ୍ଟି ରାଜ୍ୟର ସବୁ ଜିଲ୍ଲାରେ ସମାନ ନୁହେଁ । ଦକ୍ଷିଣରେ କୋରାପୁଟ ଓ ପୂର୍ବରେ ମୟୂରଭଞ୍ଜ ବହୁଳ ବୃଷ୍ଟିପାତ ଜିଲ୍ଲା । ସମ୍ବଲପୁର ଓ ବଲାଙ୍ଗିରର ଅଣଜଳସେଚିତ ଅଞ୍ଚଳ, ମୟୂରଭଞ୍ଜ ଉତ୍ତର ପଶ୍ଚିମାଞ୍ଚଳ, କେନ୍ଦୁଝରର ୬୫ ଭାଗ, ସୁନ୍ଦରଗଡ଼ର ୮୦ ଭାଗ କଳାହାଣ୍ଡି ଓ ଫୁଲବାଣୀ ଜିଲ୍ଲାର ବହୁଳ ଅଞ୍ଚଳ ଚିରମରୁଡ଼ିଗ୍ରସ୍ତ । ଅନିୟମିତ ଓ ଅନିର୍ଭରଶୀଳ ବୃଷ୍ଟିପାତ ଧାନ ଫସଲକୁ ପ୍ରଭାବିତ କରେ । ଅଳ୍ପ ଦିନ ଭିତରେ ବହୁଳ ବୃଷ୍ଟିପାତ ବନ୍ୟା ସୃଷ୍ଟି କରେ । ହୀନ ବୃଷ୍ଟି ବା ଅନାବୃଷ୍ଟି ମରୁଡ଼ି ସୃଷ୍ଟି କରେ । ଧାନ ଫସଲ ଉଭୟ ପ୍ରାକୃତିକ ବିପର୍ଯ୍ୟୟର ଶୀକାର ହୁଏ । ବନ୍ୟା ଓ ମରୁଡ଼ି ପ୍ରାୟ ଏକାନ୍ତର । ଏପରି କି ବର୍ଷେ ବର୍ଷେ ବନ୍ୟା ଓ ମରୁଡ଼ି ଉଭୟେ ଧାନ ଫସଲକୁ ସଂପୂର୍ଣ୍ଣ ଭାବେ ନଷ୍ଟ କରନ୍ତି । ୧୯୫୬–୭୮ ମସିହାର ବୃଷ୍ଟିପାତ, ବଢ଼ି, ମରୁଡ଼ି ଓ ତୋଫାନ ଇତ୍ୟାଦିର ଅନୁଧ୍ୟାନରୁ ଜଣାଯାଏ ଯେ ଏଗୁଡ଼ିକ ଦ୍ୱାରା ଧାନ ଫସଲର ଅମଳ ୪୦–୬୦ ଭାଗ ପ୍ରଭାବିତ ହୋଇଥାଏ । ଟେବୁଲ ୨ରେ ୧୯୬୯–୮୩ ପର୍ଯ୍ୟନ୍ତ ଜୁନଠାରୁ ଅକ୍ଟୋବର ମାସର ବୃଷ୍ଟିପାତ, ଧାନ ଅମଳ, ବଢ଼ି, ଓ ମରୁଡ଼ିର ତାଲିକା ଦିଆଯାଇଛି ।

ଟେବୁଲ ୨

ଜୁନ୍ ଠାରୁ ଅକ୍ଟୋବର ପର୍ଯ୍ୟନ୍ତ ବୃଷ୍ଟିପାତ, ବଢ଼ି, ମରୁଡ଼ି ଓ ଧାନ ଅମଳ

| ବର୍ଷ | ଜୁନ୍ | ଜୁଲାଇ | ଅଗଷ୍ଟ | ସେପ୍ଟେମ୍ବର | ଅକ୍ଟୋବର | ମୋଟ | ଚାଉଳ ଅମଳ ହେକ୍ଟର ପ୍ରତି କ୍ୱିଣ୍ଟାଲ | ବଢ଼ି, ମରୁଡ଼ି, ବନ୍ୟା |
|---|---|---|---|---|---|---|---|---|
| ୧୯୬୯ | ୧୪୩ | ୪୦୮ | ୩୨୯ | ୨୧୬ | ୩୧ | ୧,୧୨୭ | ୪.୯୪ (୯.୧୭) | ଅଳ୍ପବଢ଼ି ମରୁଡ଼ି |
| ୧୯୭୦ | ୩୪୮ | ୩୩୮ | ୩୬୭ | ୩୩୭ | ୫୮ | ୧,୪୪୮ | ୫.୪୨ (୯.୬୪) | ମଧ୍ୟମ ଧରଣର ବଢ଼ି |
| ୧୯୭୧ | ୩୪୧ | ୩୫୯ | ୪୦୯ | ୨୨୯ | ୨୦୩ | ୧,୫୪୧ | ୫.୬୨(୧୬.୭) | ମଧ୍ୟମ ବଢ଼ି ବାତ୍ୟା |
| ୧୯୭୨ | ୧୪୪ | ୩୧୮ | ୩୦୪ | ୨୯୯ | ୫୨ | ୧,୧୧୭ | ୫.୦୨(୯.୫୦) | ମରୁଡ଼ି, ବଢ଼ି |
| ୧୯୭୩ | ୧୦୩ | ୩୫୯ | ୩୨୬ | ୨୪୪ | ୨୦୩ | ୧,୨୩୫ | ୫.୮(୯.୯) | ଘଡା ମରୁଡ଼ି |
| ୧୯୭୪ | ୧୧୬ | ୨୦୮ | ୨୯୩ | ୧୩୮ | ୧୦୭ | ୮୬୨ | ୩.୬(୭.୬) | ଭୟଙ୍କର ମରୁଡ଼ି |
| ୧୯୭୫ | ୧୯୧ | ୨୬୯ | ୪୨୧ | ୨୪୬ | ୯୮ | ୧,୨୨୫ | ୫.୮(୧୦.୨) | ମରୁଡ଼ି |
| ୧୯୭୬ | ୮୬ | ୨୬୭ | ୩୫୭ | ୧୫୭ | ୪୨ | ୯୦୯ | ୪.୩(୭.୬) | ମରୁଡ଼ି ଭୟଙ୍କର |

| | | | | | | | | |
|---|---|---|---|---|---|---|---|---|
| ୧୯୭୭ | ୧୮୯ | ୩୪୮ | ୩୧୧ | ୨୦୬ | ୬୩ | ୧,୧୧୭ | ୭.୧(୧୦.୨) | ସାମାନ୍ୟ ବଢି ଓ ମରୁଡ଼ି |
| ୧୯୭୮ | ୧୬୦ | ୩୧୦ | ୪୧୭ | ୧୯୬ | ୬୯ | ୧,୧୪୩ | ୬.୯(୧୦.୮) | ସାମାନ୍ୟ ବଢି |
| ୧୯୭୯ | ୧୯୨ | ୨୪୧ | ୨୬୦ | ୧୩୫ | ୪୫ | ୮୭୭ | ୪.୭(୭.୯) | ମରୁଡ଼ି .. |
| ୧୯୮୦ | ୩୧୧ | ୩୪୪ | ୨୧୫ | ୨୬୧ | ୮୧ | ୧୨୧୨ | ୬.୦(୧୧.୧) | .. |
| ୧୯୮୧ | ୧୬୦ | ୨୦୯ | ୩୬୨ | ୨୨୪ | ୨୦ | ୧୦୦୦ | ୪.୯(୯.୫) | ମରୁଡ଼ି .. |
| ୧୯୮୨ (ଭୁବନେଶ୍ୱର) | | | | | | | | ବଢି, ମରୁଡ଼ି, ବାତ୍ୟା |
| ୧୯୮୩ (ଭୁବନେଶ୍ୱର) | | | | | | | | ଭଲ ପାଳକ, ଅଧିକ ବୃଷ୍ଟି ହେଲେ ବି ବଢି ଓ ମରୁଡ଼ି ନାହିଁ |

## ୩ । ଧାନ ଚାଷ ପଦ୍ଧତି ଓ ଅମଳ

ଓଡ଼ିଶାରେ ମୋଟ ଧାନ ଚାଷର ୮୫ ଭାଗ ଖରୁଡ଼ି ବୁଣାଯାଏ । ମୌସୁମୀ ବୃଷ୍ଟି ଆରମ୍ଭ ସମୟକୁ ଆଖିରେ ରଖି ଦୁଇ-ତିନି ଓଡ଼ ଖରାଟିଆ ଚାଷକରି ମେ ମାସ ଶେଷଭାଗରୁ ଜୁନ୍ ମାସ ଦ୍ୱିତୀୟ ସପ୍ତାହ (ରଜ ସଂକ୍ରାନ୍ତି ପୂର୍ବରୁ) ସବୁ ଗହୀର ଓ ପାଟ ଜମି ଖରୁଡ଼ି ବୁଣାଯାଏ । ମୟୂରଭଞ୍ଜ, କେନ୍ଦୁଝର, କୋରାପୁଟ ଜିଲ୍ଲାରେ କେତେକ ଅଞ୍ଚଳରେ ମେ ମାସ ମଧ୍ୟଭାଗ ସୁଦ୍ଧା ଖରୁଡ଼ି ବୁଣା ସରିଥାଏ । ଜୁନ ମାସର ବର୍ଷାରେ ଧାନ ଗଜାହୁଏ ଓ ବୁଆ ବଢ଼େ । ମୌସୁମୀ ବୃଷ୍ଟି ଡେରିହେଲେ ଚାଷ ଡେରି ହୁଏ, ବୁଣାବୁଣି ଡେରି ହୁଏ । ବୁଣାବୁଣିପରେ ଅସରାଏ ଦୁଇ ଅସରା ବର୍ଷାହେଲେ ଗଜାଉଠେ । ଜୁନ ମାସଠାରୁ ଜୁଲାଇ ମାସ ଭିତରେ ବର୍ଷାନହେଲେ ବା ଅଳ୍ପହେଲେ ଗଜା ମରୁଡ଼ି ହୁଏ । ବହୁ ବୃଷ୍ଟିରେ ଗଜା ଧୋଇହୁଏ । ଜୁନ ଓ ଜୁଲାଇ ମାସ ବୃଷ୍ଟିପାତ ଠିକ୍ ରହିଲେ ଅଗଷ୍ଟ ମାସରେ ଧାନ ବେଉଷଣ ହୁଏ । ବୃଷ୍ଟି ଅଭାବ ହେଲେ ବେଉଷଣ ଡେରି ହୁଏ ନଚେତ୍ ହୁଏ ନାହିଁ । ଚାଷୀର ଧାରଣା ଯେ ଗହୀର ଓ ପାଟ ଜମିରେ ବେଉଷଣ ନକଲେ ଧାନ ଭଲ ଫଳେ ନାହିଁ ତେଣୁ କିଆରିରେ ଯେତେବେଳେ ପାଣି ଭର୍ତ୍ତି ହୁଏ ସେ ବେଉଷଣ କରେ । ଏହାଦ୍ୱାରା କେତେକ ପ୍ରକାର ଧାନ ବୁଡ଼ାହୋଇ ଯାଉଥିବାରୁ କମ୍ ଅମଳ ଦିଅନ୍ତି । ବିନା ବେଉଷଣରେ ଧାନର ଉତ୍ପାଦନ ବୃଦ୍ଧି କରିବା ବର୍ତ୍ତମାନ ଗବେଷଣାର ଆଭିମୁଖ୍ୟ ହେବା ଉଚିତ । ଭାଦ୍ରବ ଓ ଆଶ୍ୱିନ ମାସରେ ବୃଷ୍ଟି ନହେଲେ ଡିପ ଜମି ଧାନ ଅମଳ ହ୍ରାସପାଏ । ଆଶ୍ୱିନ ଓ କାର୍ତ୍ତିକ ମାସରେ ବୃଷ୍ଟି ଅଭାବ ହେଲେ ଶାରଦ (ଗହୀର ଓ ପାଟଧାନ) ବାଧାପ୍ରାପ୍ତ ହୁଏ । ଧାନ ଫୋଡ଼ବେଳେ ଜଳାଭାବରୁ ଧାନକେଣ୍ଡା ଛୋଟ ହୁଏ, କେଣ୍ଡାରେ କମ୍ ଦାନାରହେ ଓ ଦାନାର ଓଜନ ମଧ୍ୟ ହ୍ରାସ ପାଏ । ଏଣୁ ବଡ଼ଧାନ (Tall indite)ର ଅମଳ ବାଧା ପାଏ ।

ଖରିଫ୍ ଋତୁରେ ୧୯୮୩ ଖରିଫ୍ ଋତୁ ସୁଦ୍ଧା ଅଧିକ ଅମଳକ୍ଷମ ଧାନ ମାତ୍ର ୧୪ ଭାଗ । ଗହୀର ଓ ପାଟ ଜମିରେ ମୁଖ୍ୟତଃ ଦେଶୀ ଧାନ ଚାଷ କରାଯାଏ । ଏ ଧାନ ଗୁଡ଼ିକ ୧୪୦–୧୬୫ ଦିନରେ ପାଚୁଥିବାରୁ ଅକ୍ଟୋବର ମାସ ମରୁଡ଼ି ଏ ଜାତି ଧାନ ଅମଳକୁ ହ୍ରାସ କରିଥାଏ ।

୧୯୬୫ ମସିହାରୁ ଅଧିକ ଅମଳକ୍ଷମ ଧାନ ଚାଷ ଆରମ୍ଭ କରାଯାଇଥିଲେ ମଧ୍ୟ ଏ ଜାତୀୟ ଧାନ ଚାଷ କେବଳ ଡ୍ରାଳୁଅ ଋତୁରେ ଜଳସେଚିତ ଅଞ୍ଚଳରେ ଚାଷ କରାଯାଉଥିଲା । ରାଜ୍ୟର ବିଭିନ୍ନ ଭୂ-ପ୍ରକୃତିକୁ ଖାପ ଖୁଆଇ ମରୁଡ଼ି, ବଢି ଅଞ୍ଚଳ ପାଇଁ ଉପଯୁକ୍ତ ଅଧିକ ଅମଳକ୍ଷମ ଧାନ ଜାତିର ଅଭାବ ଏହାର କାରଣ । ଡିପ ଜମିରେ (ଆଟ, ଢ଼ୁଙ୍ଗର, ଟଇଲା) ମରୁଡ଼ି ସହଣି ଅଧିକଅମଳକ୍ଷମ ଧାନ ଜାତି ନାହିଁ । ଦେଶୀ ଛୋଟ ଧାନର ମରୁଡ଼ି ସହଣି ଗୁଣ ଥିବାରୁ ଅନେକ କ୍ଷେତ୍ରରେ ଅଧିକ ଅମଳକ୍ଷମ ଛୋଟ ଧାନ ଚାଷୀ ଗ୍ରହଣ କରୁ ନାହାନ୍ତି ।

ଖାଲ ଓ ଗହୀର ଜମିର ସମସ୍ୟା ମଧ୍ୟ ସେହିପରି । ଏ ଜମିରେ ପାଣି ବେଉଷଣ ପରେ ୧୦ ସେ. ମି. —୫୦ ସେ. ମି. ପର୍ଯ୍ୟନ୍ତ ରହେ । ବେଳେ ବେଳେ ବଢି ହେତୁ ଧାନ ସଂପୂର୍ଣ୍ଣ ବୁଡ଼ି ରହେ । ଏ ପର୍ଯ୍ୟନ୍ତ ବାହାରିଥିବା ଅଧିକ ଅମଳକ୍ଷମ ଧାନର ଠିଆପାଣି ସହିବା ଓ ବଢିରେ ବୁଡ଼ି ରହିବା ଶକ୍ତି କମ୍ ବା ନାହିଁ କହିଲେ ଚଳେ । ଏଣୁ ଅଧିକ ଅମଳକ୍ଷମ ଚାଷର ପ୍ରସାର ଖରିଫ୍ ଋତୁରେ ହୋଇ ପାରୁନାହିଁ ।

ଓଡ଼ିଶାର ଉପକୂଳ ଜିଲ୍ଲା ଯଥା କଟକ, ପୁରୀ, ବାଲେଶ୍ୱର, ଓ ଗଞ୍ଜାମ ଜିଲ୍ଲାର ପ୍ରାୟ ୪,୦୪,୦୦୦ ହେକ୍ଟର ଜମି ଲୁଣା ମାରେ । ଏହି ଜମି ପାଇଁ ଉପଯୁକ୍ତ ଅଧିକ ଉତ୍ପାଦନକ୍ଷମ ଧାନ ଏ ପର୍ଯ୍ୟନ୍ତ ଉଦ୍ଭାବିତ ହୋଇ ନାହିଁ । ଏଣୁ ଏ ଅଞ୍ଚଳରେ ମଧ୍ୟ ଚାଷୀ SR 26 B ସମେତ ଦେଶୀ ଧାନ ଚାଷ କରିବାକୁ ବାଧ୍ୟ ।

ଖରିଫ୍ ଋତୁରେ ଡ୍ରାଳୁଅ ଋତୁ ଅପେକ୍ଷା ପୋକ ଓ ରୋଗର ପ୍ରାଦୁର୍ଭାବ ଅଧିକ । ଦେଶୀ ଧାନର ରୋଗ, ପୋକ, ମରୁଡ଼ି,

ବଢ଼ି ଓ ଲୁଣି ସହଣି ଗୁଣ ଅଧିକ ଅମଳକ୍ଷମ ଧାନ ତୁଳନାରେ ବେଶୀ । ଘର ଛପର ପାଇଁ ଓ ଗୋ-ଖାଦ୍ୟ ପାଇଁ ଛଣ, ପାଳ ଓ ନଡ଼ା ଆବଶ୍ୟକ । ଗେଡ଼ା ଧାନର ନଡ଼ା ଛୋଟ, ଘର ଛପର, ଅନୁପଯୋଗୀ । ଓଡ଼ିଶାରେ ଗୋରୁ ଗାଈଙ୍କ ପାଇଁ ଗୋଖାଦ୍ୟ ଫସଲ ଚାଷର ଆବଶ୍ୟକତା ଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ଏହା ଚାଷର ଏକ ଅଙ୍ଗ ହୋଇ ପାରିନି । ଏହା ଅତି ଦୁଃଖର ବିଷୟ । ନଡ଼ା ଗୋରୁ ଗାଈଙ୍କର ମୁଖ୍ୟ ଖାଦ୍ୟ । ଅନେକଙ୍କ ମତ ଦେଶୀ ଧାନରୁ ମୁଢ଼ି, ହୁଡୁମ, ଖଇ ଓ ଚାଉଳ ଚୂନାରୁ ପିଠା ଯେପରି ହେଉଛି, ଅଧିକ ଅମଳକ୍ଷମ ଧାନରୁ ସେପରି ହେଉନାହିଁ । ଜଳ ନିୟନ୍ତ୍ରଣ, ସାର ପ୍ରୟୋଗ, ରୋଗ ଓ ପୋକ ନିରାକରଣ ବ୍ୟବସ୍ଥା ଅଧିକ ଉତ୍ପାଦନକ୍ଷମ ଧାନର ଉତ୍ପାଦିକା ଶକ୍ତି ହାସଲ କରିବାରେ ସହାୟକ । ଗବେଷଣାରୁ ଜଣାପଡ଼ୁଛି ଯେ ଧାନ କିଆରୀରେ କୌଣସି ସମୟରେ ୫ ସେ. ମି.ଠାରୁ ଅଧିକ ଠିଆ ପାଣି ରହିବା ଆବଶ୍ୟକତା ନାହିଁ । ରୋଇବାଠାରୁ ୩୫ ଦିନ ପର୍ଯ୍ୟନ୍ତ କିଆରି ସାମାନ୍ୟ ଓଦା ଓ ପରେ ୫ ସେ. ମି. ପାଣି ରହିବା ଆବଶ୍ୟକ; କିନ୍ତୁ ଖରିଫ୍ ଋତୁରେ ସୁବିସ୍ତୀର୍ଣ୍ଣ ଗହୀର ଓ ପାଟରେ ଏ ପର୍ଯ୍ୟନ୍ତ ସୁବିଧା ନାହିଁ । ବଢ଼ି ଓ ଜଳ ନିଷ୍କାସନ ସମସ୍ୟା ଅଧିକ ଅମଳକ୍ଷମ ଧାନ ଚାଷ ପାଇଁ ଅଧିକ ସାର ଓ ଖତ ପ୍ରୟୋଗ ଏକାନ୍ତ ଆବଶ୍ୟକ ଧାରଣା ଠିକ୍ ନୁହେଁ । ବିନା ସାରରେ ମଧ୍ୟ ଅଧିକ ଅମଳକ୍ଷମ ଧାନରୁ ଦେଶୀ ଧାନଠାରୁ ଅଧିକ ଅମଳ ମିଳିବ । କିନ୍ତୁ ଅଧିକ ଅମଳକ୍ଷମ ଧାନର ଉତ୍ପାଦିକା ଶକ୍ତି ହାସଲ ପାଇଁ ଅଧିକ ସାର ଆବଶ୍ୟକ ହୋଇଥାଏ । ବର୍ଷା ଋତୁରେ ନିୟନ୍ତ୍ରିତ ଅବସ୍ଥାରେ ସାରର ବିନିଯୋଗ ଦକ୍ଷତା ମାତ୍ର ୨୦—୩୦% ।

ବଢ଼ିରେ ବୁଡ଼ି ରହିଥିବା ଧାନର ସାର ପ୍ରୟୋଗ ପରିମାଣ କମ୍ ଏବଂ ଉପଯୋଗ ଦକ୍ଷତା ମଧ୍ୟ କମ୍ । ଏହିପରି କେତେକ କାରଣରୁ ଖରିଫ୍ ଋତୁରେ ଅଧିକ ଅମଳକ୍ଷମ ଧାନଚାଷ ପ୍ରସାର ଲାଭ କରି ପାରୁନାହିଁ । ଏପର୍ଯ୍ୟନ୍ତ ଯେତେ ଗବେଷଣା କରାଯାଉଛି ତାହା ମୁଖ୍ୟତଃ ଜଳସେଚିତ ଅଞ୍ଚଳରେ ମଧ୍ୟମ କିସମ ଉନ୍ନତି ପାଇଁ ବୁଣା ଓ ବେଉଷଣ ଏବଂ ଡିପ ଜମି ଲାଗି ବିଶେଷ ଗବେଷଣା ଆବଶ୍ୟକ । ଉପଯୁକ୍ତ ଅଧିକ ଅମଳକ୍ଷମ ଧାନ ଜାତି, ସାର ପ୍ରୟୋଗ ପ୍ରଣାଳୀ ଜଳ ନିଷ୍କାସନ ଓ ନିୟନ୍ତ୍ରଣ, ରୋଗ ଓ ପୋକ ନିରାକରଣ ଆବଶ୍ୟକ ।

ଖରିଫ୍ ଋତୁରେ ୧,୦୨ ନିୟୁତ ହେକ୍ଟର ଓ ଡାଲୁଅ ଋତୁରେ ୧,୬୧.୦୦୦ ହେକ୍ଟର ଜମି ଜଳ ସେଚିତ । ଖରିଫ୍ଋତୁ ଜଳ ସେଚନ ପ୍ରତିରକ୍ଷାକାରୀ ଜଳସେଚନ ମାତ୍ର । ଜଳସେଚିତ ହେତୁ ହେକ୍ଟର ପିଛା ୨.୩ କ୍ୱିଣ୍ଟାଲ ଅଧିକ ଅମଳ ମିଳୁଛି । ଉପଯୁକ୍ତ ଜଳସେଚନ ଓ ନିୟନ୍ତ୍ରଣ ଅଭାବରୁ ଜଳାନୁବୋଧତା କ୍ରମେ ବୃଦ୍ଧିପାଇ ଖାଲ ଓ ବାହାର ଜମିରେ ଧାନ ଉତ୍ପାଦନ ହ୍ରାସ ପାଇଲାଣି । ହୀରାକୁଦ ତ୍ରିକୋଣଭୂମି ଯୋଜନା, ସାଲନ୍ଦି ଯୋଜନା ଓ ୧୯୭୮ ମସିହାରେ ଆରମ୍ଭ ହୋଇଥିବା ଖଡ଼କେଇ ଯୋଜନାରେ ମଧ୍ୟ ଜଳାନୁବୋଧତା ସୃଷ୍ଟି ହେଲାଣି । ପୋକ ଓ ରୋଗ ପ୍ରାଦୁର୍ଭାବ ବୃଦ୍ଧି ପାଉଛି । ପ୍ରୟୋଗ ସାର ପରିମାଣ ଅନୁସାରେ ଉତ୍ପାଦନ ବୃଦ୍ଧି ପାଉ ନାହିଁ ଓ କ୍ରମେ ସେତିକି ଉତ୍ପାଦନ ପାଇଁ ଅଧିକ ସାର ବ୍ୟବହାର କରିବାକୁ ପଡ଼ୁଛି । ରୋଗ ଓ ପୋକ ନିରୋଧ ଶକ୍ତିଯୁକ୍ତ ଅଧିକ ଅମଳ କ୍ଷମ ଧାନର ଏହି ଶକ୍ତି ହ୍ରାସ ପାଉଛି । ନୂତନ ପ୍ରକାରର ରୋଗ ଓ ପୋକ ଦେଖା ଦେଉଛନ୍ତି । ଜଳ ସେଚିତ ଅଞ୍ଚଳରେ ମଧ୍ୟ ଉତ୍ପାଦନ ଆଶାନୁରୂପକ ହେଉ ନାହିଁ । ହାରାହାରି ଭାବରେ ଧାନ ଅମଳ ପାଇଁ ବାୟୁମଣ୍ଡଳର ଅବସ୍ଥା (ବୃଷ୍ଟିପାତ,ତାପ ମାନ, ଆଲୋକ, ଆଦ୍ରତା) ଶତକଡ଼ା ୩୦ ଭାଗ, ଧାନ ଜାତି ୮ ଭାଗ, ସାର ୧୦ ଭାଗ, ଜଳ ନିୟନ୍ତ୍ରଣ ୧୨ ଭାଗ, ରୋଗ, ଓ ପୋକ ଓ ଅନାବନା ଘାସକୁ ନିୟନ୍ତ୍ରଣ ୧୫ ଭାଗ ଓ ପରିଚାଳନା (ଉପଯୁକ୍ତ ପଦାର୍ଥ ଠିକ୍ ସମୟରେ, ଠିକ୍ ପରିମାଣରେ) ୨୫ ଭାଗ ଦାୟି ।

ଓଡ଼ିଶାର ଧାନ ଚାଷର ଉନ୍ନତି ଲାଗି ଉଭୟ ଜଳସେଚିତ ଓ ଅଣ ଜଳସେଚିତ ଅଞ୍ଚଳ ପାଇଁ ଦୃଷ୍ଟି ଦେବାକୁ ପଡ଼ିବ । ଅଳ୍ପ ଜମିପାଇଁ ମରୁଡ଼ି ସହଣୀ ଧାନ, ଖାଲ ଓ ଲୁଣି ଜମିପାଇଁ ବଢ଼ିବୁଡ଼ି ଓ ଲୁଣି ସହଣୀ ଧାନ ଓ ଖରୁଡ଼ି ବେଉଷଣ ଜମି ପାଇଁ ଉପଯୁକ୍ତ ଧାନ ଜାତି, ଏଥିରେ ସାର ପ୍ରୟୋଗ ପ୍ରଣାଳୀ ଉଦ୍ଭାବନ ଆବଶ୍ୟକ । ପ୍ରତ୍ୟେକ ଅଞ୍ଚଳର ସମସ୍ୟା ସମାଧାନ କଲଭଳି ଗବେଷଣା ଶିକ୍ଷା ଓ ସଂପ୍ରସାରଣ ଦୃଢ଼ୀକରଣ ଦ୍ୱାରା ଓଡ଼ିଶାରେ ଧାନ ଚାଷର ଉନ୍ନତି ସାଧିତ ହୋଇ ପାରିବ ।

କୃଷି କଲେଜ, ଭୁବନେଶ୍ୱର

ଉତ୍କଳ-ତନୟେ ଦିଅ ନବ ବଳ
ଉତ୍କଳ ପାଦପେ ରସମୟ ଫଳ,
ଉତ୍କଳ ସରିତେ ପବିତ୍ର ଜୀବନ
ଉତ୍କଳ କାନନେ ସ୍ୱର୍ଗୀୟ ସୁମନ,
ଉତ୍କଳ ଆକାଶେ ନବଯଶ ରବି,
ଉତ୍କଳ ପ୍ରକୃତି ଧରୁ ନବ ଛବି ।

**ଗୋପବନ୍ଧୁ**

# ସାଂସ୍କୃତିକ ଅନୁଷ୍ଠାନ ଗୁଡ଼ିକର ଭୂମିକା

ଶ୍ରୀ ଜଗଦୀଶ ପଟ୍ଟନାୟକ

ସ୍ୱାଧୀନତା ପରଠାରୁ ଆମ ଦେଶରେ ଜାତୀୟ ସଂହତି ପ୍ରତିଷ୍ଠାର ଚାହିଦା ସମସ୍ତେ ଅନୁଭବ କରିଛନ୍ତି ଏବଂ ଏ ଦିଗରୁ ବିଭିନ୍ନ ଭାବରେ ଉଦ୍ୟମ ଚାଲି ଆସିଛି । ଜାତୀୟ ସଂହତିର ଅଭାବ ଆମ ଦେଶକୁ ଦୁର୍ବଳ କରି ଦେଇଛି । ଜନସଂଖ୍ୟାରେ ଆମ ଦେଶ ପୃଥିବୀର ଦ୍ୱିତୀୟ ଦେଶ ଅଥଚ ଆମେ ଜାତି, ଗୋଷ୍ଠି, ଶ୍ରେଣୀ ଏଭଳି ରାଜନୈତିକ ଦଳ ରୂପେ ଏଭଳି ଭାଗ ଭାଗ ହୋଇ ରହିଛୁ ଯେ ଜାତୀୟ ସ୍ୱାର୍ଥ ଅପେକ୍ଷା ଏଇ ଜାତି, ଗୋଷ୍ଠି ବା ଶ୍ରେଣୀ ସ୍ୱାର୍ଥକୁ ଆମେ ବିଶେଷ ଗୁରୁତ୍ୱ ଦେଉଛୁ, ଫଳତଃ ଆମ ଦେଶର ନିରାପତ୍ତା ବିପନ୍ନ ହୋଇ ଉଠୁଛି । କେତେବେଳେ ନାଗାଲାଣ୍ଡ ଓ କେତେବେଳେ ମୋପେଲେ ସ୍ଥାନ ଦାବୀ କରି ଆମ ଦେଶରେ ଯେଉଁ ବିଚ୍ଛିନ୍ନତାବାଦୀ ଶକ୍ତିମାନ ମୁଣ୍ଡ ଟେକୁଛନ୍ତି ତାହା ମଧ୍ୟ ଜାତୀୟ ସଂହତିର ଅନ୍ତରାୟ । ବର୍ତ୍ତମାନ ପଞ୍ଜାବରେ ଯେଉଁ ହିଂସାତ୍ମକ କାଣ୍ଡମାନ ଘଟୁଛି ବା ଆଇନ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହୋଇଛି ସେଥିରେ ମଧ୍ୟ ଜାତୀୟ ସଂହତି ବିପନ୍ନ ହୋଇ ପଡୁଛି ।

ଜାତୀୟ ସଂହତି ବଜାୟ ରଖିବାର ଯେଉଁ କେତୋଟି ପଦ୍ଧତି ରହିଛି ସେଥିରୁ ମୁଖ୍ୟତଃ ଦୁଇଟି ପଦ୍ଧତି ବିଷୟରେ ଏଠାରେ ଆମେ ବିଚାର କରିପାରୁ । ପ୍ରଥମତଃ ବିଭିନ୍ନ ଅଞ୍ଚଳର ଉନ୍ନୟନ କରାଯିବା ସମୟରେ ପ୍ରତ୍ୟେକ ଅଞ୍ଚଳପ୍ରତି ସମାନ ଦୃଷ୍ଟି ଦିଆଯିବା ଆବଶ୍ୟକ । କୌଣସି ଅଞ୍ଚଳ ଅବହେଳିତ ହେଲେ ସେଠାରେ ଅସନ୍ତୋଷ ବୃଦ୍ଧି ପାଇ ଏହିଭଳି ବିଚ୍ଛିନ୍ନତାବାଦୀ ମନୋଭାବ ପ୍ରକାଶ ପାଇଥାଏ । ସେଭଳି ପ୍ରତ୍ୟେକ ଗୋଷ୍ଠି ବା ଶ୍ରେଣୀ ପ୍ରତି ବିଚାର କଲାବେଳେ ମଧ୍ୟ ଚାକିରୀ, ନିର୍ବାଚନରେ ସ୍ଥାନ ଇତ୍ୟାଦି କ୍ଷେତ୍ରରେ ସମାନ ଦୃଷ୍ଟି ରଖାଯିବା ଉଚିତ । ଏହି ବିଷମତା ଦୂରୀକରଣ ଦିଗଟିକୁ ଭୌତିକ ଦୃଷ୍ଟିରୁ ଜାତୀୟ ସଂହତିର ସୁରକ୍ଷା ବୋଲି କୁହାଯାଇ ପାରେ । ଅନ୍ୟ ଦିଗଟି ହେଲା ଭାବଗତ ସଂହତି । ଇଂରାଜୀରେ ଏହାକୁ ଇମୋସନାଲ୍ ଇନ୍‌ଟିଗ୍ରେସନ୍ ବୋଲି କୁହାଯାଇ ଥାଏ । ପ୍ରଥମ ଦିଗ ଅର୍ଥାତ୍ ଆଞ୍ଚଳିକ ବା ଶ୍ରେଣୀଗତ ବୈଷମ୍ୟ ଦୂରୀକରଣ ମୁଖ୍ୟତଃ ସରକାରଙ୍କ ଦାୟିତ୍ୱ । ଏଥିରେ ସାଧାରଣ ଜନତା ବା ସ୍ୱେଚ୍ଛାସେବୀ ଅନୁଷ୍ଠାନଠାନମାନଙ୍କର କରିବାର କିଛି ବିଶେଷ ନାହିଁ । କିନ୍ତୁ ଦ୍ୱିତୀୟ ଦିଗଟିରେ ଆମର କରିବାର ବହୁତ କିଛି ରହିଛି । କାରଣ ଲୋକଙ୍କ ମନରେ ସଂହତିର ଭାବ ସୃଷ୍ଟି କରିବାରେ ମୁଖ୍ୟତଃ ସାଂସ୍କୃତିକ ସଙ୍ଗଠନମାନଙ୍କର ଅବଦାନ ରହିଛି ।

ଅନେକଙ୍କର ଧାରଣା ଆମ ଦେଶରେ ଯଦି ଶିକ୍ଷାର ବହୁଳ ପ୍ରସାର ହୋଇ ପାରିଲା ତେବେ ଜାତୀୟ ସଂହତି ପ୍ରତିଷ୍ଠା ସମ୍ଭବ ହୋଇ ପାରିବ । କିନ୍ତୁ ଶିକ୍ଷିତ ବ୍ୟକ୍ତି ଭାରତ ସରକାରଙ୍କ ଉଚ୍ଚ ପଦବୀରେ ଥାଇ ମଧ୍ୟ ଆମ ଦେଶର ଗୋପନୀୟ ତଥ୍ୟ ବିଦେଶୀମାନଙ୍କୁ ହସ୍ତାନ୍ତର କରି ଗିରଫ ହୋଇଥିବା ନଜିର ରହିଛି । ତେଣୁ କେବଳ ଶିକ୍ଷାର ପ୍ରସାର ଏ ସମସ୍ୟାର ପ୍ରତିକାର କରି ପାରିବ ନାହିଁ । ଆଉ କେତେଜଣ ମତ ଦିଅନ୍ତି ବୁଭୁକ୍ଷିତ କିଂ ନ କରୋତି ପାପ । ଅର୍ଥାତ୍ ଲୋକ ଅଭାବ ଅନାଟନରେ ପଡି ଅବାଟକୁ ଯାଏ । ଏ ଦେଶ ବିରୋଧୀ, ଜାତି ବିରୋଧୀ କାମମାନ କରିବାକୁ ମନ ବଳାଏ । ଏହା ମଧ୍ୟ ଭୁଲ ତଥ୍ୟ । ବର୍ତ୍ତମାନ ବନସ୍ପତି ଘିଅରେ ଗୋରୁ ଘୁଷୁରି ଚର୍ବି ମିଶିଥିବା ସଂପର୍କରେ ଯେଉଁ ତୁମୀତୁଫାନ ହେଲା, ବିଭିନ୍ନ ବାଦ ପ୍ରତିବାଦ ହୋଇ ସରକାରୀ ତଦନ୍ତ କରାଗଲା । ସେଥିରେ ଗିରଫ ହୋଇଥିବା ବ୍ୟକ୍ତିମାନେ ହେଲେ ବଡ ବଡ ବ୍ୟବସାୟୀ । ଅର୍ଥ ଲୋଭରେ ଏମାନେ ଜାତି, ଧର୍ମ, ନୈତିକତା ସବୁକୁ ବଳି ଦେଇଛନ୍ତି । ଅନ୍ୟ ପକ୍ଷରେ ବାଜିରାଉତ, ଚଖି ଖୁଣ୍ଟିଆ, ଲକ୍ଷ୍ମଣ ନାଏକ ପ୍ରଭୃତି ବହୁ ସଂଖ୍ୟକ ନାମ ଆମ ତାଲିକାରେ ମିଳିବ ଯେଉଁମାନେ ବ୍ୟକ୍ତିଗତ ଜୀବନରେ ନିଃସ୍ୱ ଥାଇ ମଧ୍ୟ ନିଜର ନାମକୁ ଅମର କରିଯାଇଛନ୍ତି ।

ତେଣୁ ଜାତୀୟତା ବୋଧ ଶିକ୍ଷା, ଅର୍ଥ ବା ସାମାଜିକ ପଦ ପ୍ରତିଷ୍ଠା ଉପରେ ନିର୍ଭର କରେ ନାହିଁ । ଏହା ସମସ୍ତ ନାଗରିକଙ୍କ ମଧ୍ୟରେ ଅନ୍ତର୍ନିହିତ ଅବସ୍ଥାରେ ଅଛି । କାହାର ସୁପ୍ତ ଅବସ୍ଥାରେ-ତ କାହାରି କ୍ଷେତ୍ରରେ ଜାଗ୍ରତ ଅବସ୍ଥାରେ ବିଦ୍ୟମାନ । ଏହା ଏକ ଚେତନା । ଏହି ଚେତନାରେ ଜନସାଧାରଣଙ୍କୁ ଉଦ୍‌ବୁଦ୍ଧ କରାଇ ପାରିଲେ ଜାତୀୟ ସଂହତି ସ୍ଥାୟୀ ହୋଇ ପାରେ । ଭାରତୀୟ ଜନସାଧାରଣଙ୍କ ମନରେ ଭାରତର ସାମାଜିକ ଚିତ୍ର ଦେଇ ତାଙ୍କ ଅନ୍ତଃକରଣରେ ଏଇ ଭାବର ଉଦ୍ରେକ କରେଇବା ଦୃଷ୍ଟିରୁ ଆଦି ଶଙ୍କରାଚାର୍ଯ୍ୟ ଭାରତ ଚାରି ଦିଗରେ ଚାରୋଟି ଧାମ ପ୍ରତିଷ୍ଠା କରିଗଲେ । ଉତ୍ତରରେ ବଦ୍ରିନାଥ, ପୂର୍ବରେ ପୁରୀ, ଦକ୍ଷିଣରେ ରାମେଶ୍ୱର ଓ ପଶ୍ଚିମରେ ଦ୍ୱାରକା । ଏ ଦେଶର

ଶୈବମାନେ ଯେଉଁ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ପ୍ରତିଷ୍ଠା କରି ଯାଇଛନ୍ତି ବା ଶାକ୍ତମାନେ ୩୨ଟି ଶକ୍ତି ପୀଠର କଳ୍ପନା କରିଛନ୍ତି, ତା ମୂଳରେ ଏହି ଚିନ୍ତାଧାରା ନିହିତ ଅଛି । ଯେତେବେଳେ ଭାରତର ସଭ୍ୟତା, ସଂସ୍କୃତି, ଆଚାର, ବିଚାର, ନୀତି ନିୟମ ସବୁ ଧର୍ମକୁ ଭିତ୍ତିକରି ଚାଲି ଆସିଥିଲା ସେ ସମୟରେ ଏହି ବ୍ୟବସ୍ଥାଗୁଡ଼ିକ ତ ଠିକ୍ ଥିଲା । କିନ୍ତୁ ବର୍ତ୍ତମାନ ଯେତେବେଳେ ଆମେ ସମସ୍ତେ ଅନ୍ୟ ଏକ ସଭ୍ୟତାରେ ସେ ସମୟରେ ଜାତୀୟ ସଂହତି ପ୍ରତିଷ୍ଠା ଦୃଷ୍ଟିରୁ ପୁନର୍ବିଚାର କରିବାକୁ ପଡ଼ିବ ।

ଲୋକଙ୍କ ମନର ଭାବଗତ ଏକତା ସୃଷ୍ଟି ପାଇଁ ଆମକୁ ସେମାନଙ୍କ ମନରେ କେତେଗୁଡ଼ିଏ ଶ୍ରଦ୍ଧାକେନ୍ଦ୍ର ବା ପଏଣ୍ଟ ଅଫ୍ ଅନର ନିର୍ମାଣ କରିବାକୁ ପଡ଼ିବ । ଭାରତର ପୂର୍ବତନ ଗଭର୍ଣ୍ଣର ଜେନେରାଲ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ଏ ବିଷୟ ପ୍ରତି ଦୃଷ୍ଟି ଦେବାକୁ ଜୋର ଦେଇଛନ୍ତି ।

ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ କୌଣସି ରାଷ୍ଟ୍ର ତାର ମାତୃଭୂମି ପ୍ରତି ଶ୍ରଦ୍ଧା ରଖିଥାଏ । ଆମ ଦେଶ ପକ୍ଷରେ ମଧ୍ୟ ତାହା ସ୍ୱାଭାବିକ । ଦେଶ ଓ ଜାତି ପାଇଁ ପ୍ରାଣବଳୀ ଦେବା ଭାରତୀୟ ଇତିହାସରେ ଉଦାହରଣର ବିରଳ ନାହିଁ । ଦେଶ ବା ମାତୃଭୂମି ପ୍ରତି ଶ୍ରଦ୍ଧା ଭାବ ଜାଗରଣ କରିବାରେ କୌଣସି ମତଭେଦ ବା ଦ୍ୱିମତର ମଧ୍ୟ ଅବକାଶ ନାହିଁ । ତେଣୁ ଏ ଦିଗରେ ପଦକ୍ଷେପ ନିଆଯାଇପାରେ । ଲୋକଙ୍କ ମନରେ ମାତୃଭୂମି ପ୍ରତି ଶ୍ରଦ୍ଧାଭାବ ଜାଗ୍ରତ କରିବାରେ ସରକାରୀ ପଦକ୍ଷେପ ଅପେକ୍ଷା ବେସରକାରୀ ଅର୍ଥାତ୍ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଅଧିକ ଫଳପ୍ରଦ ଉଦ୍ୟମ କରି ପାରନ୍ତି । ତେବେ ଏଭଳି ଉଦ୍ୟମ ସରକାରଙ୍କର ପରିପୂରକ କାର୍ଯ୍ୟ ହେତୁ ସରକାର ଏଥିପ୍ରତି ସହାନୁଭୂତିଶୀଳ ହେବା ବାଞ୍ଛନୀୟ । ସହାନୁଭୂତିର ଅର୍ଥ ଅବଶ୍ୟ ଅନୁଦାନ ଦେବା, ତାର ବିଭିନ୍ନ କାର୍ଯ୍ୟ କ୍ରମରେ ମନ୍ତ୍ରୀମାନେ ଉପସ୍ଥିତ ରହିବା ଇତ୍ୟାଦି ନୁହେଁ । ବରଂ ତଦ୍ୱାରା ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗୁଡ଼ିକର ଭାବମୂର୍ତ୍ତୀ ବ୍ୟାହତ ହେବ । ଦେଶର ନଦୀ, ପର୍ବତ, ତୀର୍ଥକ୍ଷେତ୍ର ଭୂମିର ବିଭିନ୍ନ ଅଞ୍ଚଳପ୍ରତି ଲୋକଙ୍କ ମନରେ ଶ୍ରଦ୍ଧାର ଭାବ ଜାଗରଣ କରିବା ଏହି ପର୍ଯ୍ୟାୟଭୁକ୍ତ ।

ସେହିଭଳି ଅନ୍ୟ ଏକ ଉଦ୍ୟମ ହେଲା ମାତୃଭୂମିରେ ବାସ କରୁଥିବା ନାଗରିକମାନଙ୍କ ମଧ୍ୟରେ ପରସ୍ପର ପ୍ରତି ସ୍ନେହ ଓ ସଦିଚ୍ଛାର ଭାବ ଜାଗ୍ରତ କରିବା । ଏ ଦିଗରେ ମଧ୍ୟ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗୁଡ଼ିକର ଅବଦାନ ଯଥେଷ୍ଟ । ଭିନ୍ନଭାଷା, ଭିନ୍ନ ବେଶଭୂଷା, ଭିନ୍ନ ପ୍ରଦେଶର ଅଧିବାସୀ, ଭିନ୍ନ ଖାଦ୍ୟପେୟ, ଭିନ୍ନ ଧର୍ମ ସଂପ୍ରଦାୟ ଇତ୍ୟାଦି ହେତୁ ବାହ୍ୟ ଦୃଷ୍ଟିରୁ ଆମ ଭିତରେ ଭିନ୍ନତା ଥିଲେ ମଧ୍ୟ ଆମେ ଏକ–ଆମେ ଗୋଟିଏ ଜାତିର– ଆମେ ସମସ୍ତେ ଭାରତୀୟ ଏଥିରେ ସନ୍ଦେହର ଅବକାଶ ନାହିଁ । ଆମର ଆଚାର, ବିଚାର, ରୀତି ନୀତି, ପର୍ବ, ପର୍ବାଣୀ, ଆଶା, ଆକାଂକ୍ଷା, ଆଧ୍ୟାତ୍ମିକ ଓ ନୈତିକ ଚିନ୍ତାଧାରା ସମାନ, ତେଣୁ ଏହି ଏକତାର ପୁସ୍ତକକୁ ଅଭିବୃଦ୍ଧି କରିବା କ୍ଷେତ୍ରରେ ସରକାରୀ ଉଦ୍ୟମ ଅପେକ୍ଷା ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗୁଡ଼ିକର ପଦକ୍ଷେପ ଅଧିକ ଫଳପ୍ରଦ ପ୍ରମାଣିତ ହେବ । ବିଭିନ୍ନ ପର୍ବପର୍ବାଣୀ ପାଳନ, ତୀର୍ଥଯାତ୍ରା, ପର୍ଯ୍ୟଟନ କେନ୍ଦ୍ର ଭ୍ରମଣ, ମେଳାର ଆୟୋଜନ, ସାଂସ୍କୃତିକ ପ୍ରତିନିଧି ଦଳ ବିନିମୟ ଇତ୍ୟାଦି ଏହି କାର୍ଯ୍ୟ ପରିସର ଅନ୍ତର୍ଭୁକ୍ତ ।

ଭୂମି ଓ ଜନସମୂହ ପରି ଜନସାଧାରଣଙ୍କ ମଧ୍ୟରେ ଥିବା ଐତିହାସିକ ଓ ସାଂସ୍କୃତିକ ସଂହତି ବିକାଶଶୀଳ ଜାତୀୟ ସଂହତି ଦୃଢ଼ କରିବା ଦିଗରେ ଅନ୍ୟତମ ଉପାୟ । ଏ ଦିଗରେ ଐତିହାସିକ, ସାହିତ୍ୟିକ, ସାଂସ୍କୃତିକ ଅନୁଷ୍ଠାନ ପ୍ରଭୃତି ଜନସାଧାରଣଙ୍କ ଆସ୍ଥାଭାଜନ ହୋଇ ପାରିବ ଓ ସେମାନେ ଯଥେଷ୍ଟ ପରିମାଣରେ ଏ କ୍ଷେତ୍ରରେ ତତ୍‌ପରତାର ସହିତ କାମ କରି ପାରିବେ । ଦେଶର ଇତିହାସ କୌଣସି ଜାତିର ମେରୁଦଣ୍ଡ ତାହାହିଁ ଜାତୀୟ ଚେତନା ଦେଇଥାଏ । ନିଜ ଜାତିର ଜୟ, ପରାଜୟ, ଭୌତିକ ଓ ଆଧ୍ୟାତ୍ମିକ ଅଗ୍ରଗତି ପ୍ରଭୃତିରୁ ଜାତୀୟଭାବ ପରିପୁଷ୍ଟ ହୁଏ । ଦେଶ ଓ ସମାଜ ପାଇଁ କାମ କରିଥିବା ମହାପୁରୁଷ ମାନଙ୍କ ଜୀବନ ସଂପର୍କରେ ଜନସାଧାରଣଙ୍କୁ ଅବହିତ କରାଇବା ପୁନଃ ପ୍ରଚାର ଆୟୋଜନ, ବ୍ୟକ୍ତିଗତ ସଫଳତା ପାଇଁ ସମ୍ବର୍ଦ୍ଧନା ଇତ୍ୟାଦି ଏହି ପର୍ଯ୍ୟାୟ ଭୁକ୍ତ ।

ତେଣୁ ପ୍ରତ୍ୟେକ କଥାରେ ସରକାରୀ ପଦକ୍ଷେପ, ସରକାରୀ ଅନୁଦାନ, ସରକାରୀ ଅନୁଗ୍ରହ ଉପରେ ନିର୍ଭର ନକରି ସମାଜର ସୁସ୍ଥ ଅଭିବୃଦ୍ଧି ନିମନ୍ତେ ଜନସାଧାରଣ ଘରୋଇ ସଂସ୍ଥା ଓ ସାଂସ୍କୃତିକ ଅନୁଷ୍ଠାନ ଗୁଡ଼ିକ ନିଜେ ଦାୟିତ୍ୱ ବହନ କଲେ ହିଁ ଦେଶର ପ୍ରକୃତ ସାମର୍ଥ ଉଦଭାସିତ ହେବ । ନଚେତ୍ ପରମୁଖାପେକ୍ଷୀ ହୋଇ ରହି ରହି ଅନ୍ୟ ଉପରେ ଦୋଷଦାୟି ନିଜ ଦାୟିତ୍ୱରୁ ଅନ୍ୟ ଉପରେ ଲଦିଲେ ବୃଥା ଆତ୍ମସନ୍ତୋଷ ଲାଭ କରାଯାଇ ପାରେ ସିନା ତଦ୍ୱାରା ଦେଶ ଜାତି ବା ସମାଜର କିଛି ମଙ୍ଗଳ ହେବନାହିଁ । ଜାପାନ, ଇସ୍ରାଏଲ ଇତ୍ୟାଦି ଛୋଟ ଛୋଟ ଦେଶରେ କିଭଳି ଜାତୀୟ ଚେତନା ସମାଜର ବିଭିନ୍ନ ଶ୍ରେଣୀ ଓ ବ୍ୟକ୍ତିବ୍ୟକ୍ତି ମଧ୍ୟରୁ ଫୁଟି ବାହାରୁଛି ଫଳତଃ ଜାତିର ସାମଗ୍ରିକ ଉନ୍ନତି ସମ୍ଭବ ହୋଇପାରିଛି ଓ ଦେଶର ଏକ ସ୍ୱତନ୍ତ୍ର ଭାବମୂର୍ତ୍ତୀ ପ୍ରତିଷ୍ଠା କରାଯାଇପାରିଛି ତାହା ଲକ୍ଷ୍ୟ କରାଯିବା ଉଚିତ । ରାଜନୈତିକ ନେତୃବୃନ୍ଦ ଦିଗ୍‌ଦର୍ଶନ ଦେଇ ପାରନ୍ତି । ଉଦ୍‌ବୋଧନ ଦେଇ ପାରନ୍ତି କିନ୍ତୁ ଜାତୀୟ ଚେତନା ପାଇଁ ସାମାଜିକ ଦୃଷ୍ଟିକୋଣ ଓ ଆଚରଣରେ ସଂଶୋଧନର ଆବଶ୍ୟକତା ରହିଛି । ତାହା ହେବ ଅଭ୍ୟନ୍ତରୀଣ ନିରୀକ୍ଷା ଦ୍ୱାରା । ସେଥିପାଇଁ ବାହ୍ୟ ଚାପ ବା ଶାସନ ନୁହେଁ । ଅନ୍ତରର ଉଦ୍ବେଗର ଆବଶ୍ୟକତା ରହିଛି । ସେଥିପାଇଁ ସାଂସ୍କୃତିକ ଅନୁଷ୍ଠାନ ଗୁଡ଼ିକର ଭୂମିକା ହିଁ ପ୍ରକୃଷ୍ଟ ।

ଭଲ ହେବା ପାଇଁ
ଭଲ କର ଆସେ
କର ଯେବେ ଆଶା
ନିଜ ମାତୃଭାଷା

ଗଙ୍ଗାଧର ମେହେର

# ଜାତୀୟ ବିଜ୍ଞାନ ନୀତି ପ୍ରଣୟନ

ଡଃ ଚନ୍ଦ୍ରକାନ୍ତ ମିଶ୍ର

ଆମ ଦେଶ ସ୍ୱାଧୀନ ହେବା ବେଳକୁ ବିଜ୍ଞାନ ଓ ଟେକ୍‌ନୋଲଜି ବଳରେ ଜାତୀୟ ପ୍ରଗତି ସାଧନ କରାଇ ପାରିବା ଭଳି ତଥା ଜନସାଧାରଣଙ୍କ ଜୀବନଧାରଣର ମାନରେ ଉନ୍ନତି ଘଟାଇବା କ୍ଷେତ୍ରରେ ବିଜ୍ଞାନ ଓ ଟେକ୍‌ନୋଲଜି ଉପଯୋଗ ଘଟାଇ ପାରିବା ଭଳି ଅବସ୍ଥାପନାର ସର୍ଜନା ସମ୍ଭବ ହୋଇନଥିଲା । ପରାଧୀନ ଭାରତବର୍ଷରେ ଅବଶ୍ୟ ସୃଷ୍ଟିଶୀଳ ପ୍ରତିଭାସଂପନ୍ନ ମୁଷ୍ଟିମେୟ ବୈଜ୍ଞାନିକ ପ୍ରକୃତିର ରହସ୍ୟୋଦ୍‌ଘାଟନ କଲେ ବୈଜ୍ଞାନିକ ଗବେଷଣା ଚଳାଇବାକୁ ଯତ୍ନବାନ୍ ହୋଇଥିଲେ । ଜଗଦୀଶ ଚନ୍ଦ୍ର ବୋଷ, ପ୍ରଫୁଲ୍ଲ ଚନ୍ଦ୍ର ରାୟ, ସତ୍ୟେନ୍ଦ୍ର ନାଥ ବୋଷ, ମେଘନାଦ ଶାହା ଓ ସି. ଭି. ରମଣ ପ୍ରମୁଖ ବୈଜ୍ଞାନିକମାନେ ନିଜ ନିଜ ଉଦ୍ୟମ ବଳରେ ଗବେଷଣା ଚଳାଇ ବିଜ୍ଞାନ ଜଗତକୁ ଋଦ୍ଧିମନ୍ତ କରିଥିବା ହେତୁ ଆନ୍ତଃରାଷ୍ଟ୍ରୀୟ କ୍ଷେତ୍ରରେ ସୁନାମ ଅର୍ଜନ କରିଥିଲେ । ମାତ୍ର ବୈଜ୍ଞାନିକ କ୍ରିୟାଶୀଳତା ତଥା ତତ୍‌ନିର୍ଭରଶୀଳ ଟେକ୍‌ନୋଲଜି ବା ପ୍ରଯୁକ୍ତି ବିଦ୍ୟା ଅବଲମ୍ବନରେ ଆମ ଦେଶର ସୁସଂଯତ ବିକାଶ ଘଟାଇବା ପାଇଁ ବିହିତ ପଦକ୍ଷେପ ଗ୍ରହଣ କରିବା ଉଦ୍ଦେଶ୍ୟରେ ପରିବେଶ ଏକାନ୍ତ ପ୍ରତିକୂଳ ହୋଇଥିଲା ।

ଆମ ଦେଶର ବିଜ୍ଞାନପ୍ରେମୀ ପ୍ରଧାନ ମନ୍ତ୍ରୀ ସ୍ୱର୍ଗୀୟ ପଣ୍ଡିତ ଜବାହରଲାଲ ନେହେରୁ ବିଜ୍ଞାନ ଓ ଟେକ୍‌ନୋଲଜି ବଳରେ ଆମ ଦେଶରୁ ଦାରିଦ୍ର୍ୟର ଅପସାରଣ ଘଟାଇବା ପାଇଁ ସଂକଳ୍ପବଦ୍ଧ ଉଦ୍ୟମ ଚଳାଇଲେ । ନବ ଭାରତର ନିର୍ମାତା ଭାବରେ ସେ ବିଜ୍ଞାନ ଉପରେ ଦୃଢ଼ ଆସ୍ଥା ସ୍ଥାପନ କରିଥିଲେ । ବୈଜ୍ଞାନିକ ମନୋବୃତ୍ତିର ପ୍ରସାର ଘଟାଇବା ଫଳରେ ଦେଶରୁ କୁସଂସ୍କାର ଓ ଅନ୍ଧ ବିଶ୍ୱାସ ଗୁଡ଼ିକର କ୍ରମ ବିଲୟ ଘଟାଇବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କୁ ବିଜ୍ଞାନ ସମ୍ମତ ପନ୍ଥା ଗୁଡ଼ିକର ଅନୁଗାମୀ କରାଇବା ପ୍ରତି ସେ ପ୍ରାଧାନ୍ୟ ଆରୋପ କରିଥିଲେ । ୧୯୪୭ ମସିହାରେ ଇଣ୍ଡିଆନ୍ ସାଇନ୍‌ସ୍ କଂଗ୍ରେସର ସାମୟିକ ଅଧିବେଶନରେ ସଭାପତିରୂପେ ଭାଷଣ ଦେବା ବେଳେ ସେ କହିଥିଲେ, ଜଣେ କ୍ଷୁଧାର୍ତ୍ତ ପୁରୁଷ ବା କ୍ଷୁଧାତୁରା ନାରୀ ସତ୍ୟର ମହନୀୟତା ହୃଦୟଙ୍ଗମ କରିବାର ଅବକାଶ ନାହିଁ । ସେ ଲୋଡ଼େ ଖାଦ୍ୟ । ଭାରତର ଜନସାଧାରଣ ଅର୍ଦ୍ଧାହାର ବା ଅନାହାରରେ କାଳାତିପାତ କରୁଛନ୍ତି । ଏମାନଙ୍କ ନିକଟରେ ସତ୍ୟର ତାତ୍ପର୍ଯ୍ୟ ବ୍ୟକ୍ତ କରିବା କିମ୍ବା ଈଶ୍ୱରଙ୍କ ମହିମା କୀର୍ତ୍ତନ କରିବା ଅଥବା ଜୀବନର ଗୁଣାତ୍ମକ ମୂଲ୍ୟବୋଧ ସଂପର୍କରେ ଏମାନଙ୍କୁ ବୁଝାଇବା କେବଳ ବାସ୍ତବ ପରିସ୍ଥିତିକୁ ଉପହାସ କରିବା ଭିନ୍ନ ଅନ୍ୟ କିଛି ନୁହେଁ । ଏମାନଙ୍କ ପାଇଁ ଖାଦ୍ୟ, ବାସଗୃହ, ଶିକ୍ଷା, ସ୍ୱାସ୍ଥ୍ୟର ରକ୍ଷଣାବେକ୍ଷଣ ଦିଗରେ ବିହିତ ବ୍ୟବସ୍ଥା କାର୍ଯ୍ୟକାରୀ କରିବାକୁ ହେବ । ଏ ଦେଶର ପ୍ରତ୍ୟେକ ନାଗରିକଙ୍କ ଜୀବନ ଧାରଣର ନ୍ୟୁନତମ ଚାହିଦା ପୂରଣ କରିବାକୁ ହେବ । ଏଣୁ ଭାରତରେ ବିଜ୍ଞାନ ସଂପର୍କରେ ଚିନ୍ତା କରିବା ବେଳେ ଏହି ଅଭାଗା ଭାରତବାସୀଙ୍କ ଦୁର୍ଦ୍ଦଶାକୁ ବିଚାରର ଅନ୍ତର୍ଭୁକ୍ତ କରିବାକୁହିଁ ପଡ଼ିବ ।"

ଏପରି ମହାନୁଭବତାର ବଶବର୍ତ୍ତୀ ହୋଇ ପଣ୍ଡିତ ନେହେରୁ ବିଜ୍ଞାନ ଓ ଟେକ୍‌ନୋଲଜି ଭିତ୍ତିକ ଅବସ୍ଥାପନା ସୃଷ୍ଟି କରିବା ଉଦ୍ଦେଶ୍ୟରେ ଭାରତୀୟ ବୈଜ୍ଞାନିକମାନଙ୍କ ସାହଚର୍ଯ୍ୟ ଓ ପରାମର୍ଶ ଲୋଡ଼ିଥିଲେ । ପଞ୍ଚବାର୍ଷିକ ଯୋଜନାଗୁଡ଼ିକ ଜରିଆରେ ଆମ ଦେଶର କୃଷି ଓ ଶିଳ୍ପ ଭିତ୍ତିକ ବିକାଶର ଧାରାକୁ ଫଳପ୍ରଦ ମୋଡ଼ ଦେବା ପାଇଁ ଯେଉଁମାନେ ତାଙ୍କ ଆସ୍ଥାଭାଜନ ତଥା ଶ୍ରଦ୍ଧାଭାଜନ ହେବା ସଙ୍ଗେ ସଙ୍ଗେ ପଥ ପ୍ରଦର୍ଶନକାରୀ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିଲେ, ସେମାନଙ୍କ ମଧ୍ୟରେ ପି. ସି. ମାହାଲାନୋବିସ୍, ହୋମି ଜାହାଙ୍ଗୀର ଭାଭା ଓ ଶାନ୍ତି ସ୍ୱରୂପ ଭଟ୍‌ନଗରଙ୍କ ନାମ ସ୍ମରଣୀୟ । ବିଜ୍ଞାନ ଶିକ୍ଷା, ବୈଷୟିକ ଶିକ୍ଷା ଓ ଗବେଷଣାର ସମୃଦ୍ଧି ସାଧନ ପାଇଁ ବିଭିନ୍ନ ପ୍ରକାର ଶିକ୍ଷାନୁଷ୍ଠାନ, ତାଲିମ୍ କେନ୍ଦ୍ର, ଗବେଷଣାଗାର ଗୁଡ଼ିକୁ ପ୍ରତିଷ୍ଠା କରିବା କ୍ଷେତ୍ରରେ ସ୍ୱାଧୀନତା ପ୍ରାପ୍ତି ପରେ ସେମାନେ ଯେଉଁ ପ୍ରକାର ଐକାନ୍ତିକ ଉଦ୍ୟମ ଚଳାଇଥିଲେ, ତାହାର ଫଳ ସ୍ୱରୂପ ଆଜି ଆମ ଦେଶ ବୈଜ୍ଞାନିକ ତଥା ପ୍ରଯୁକ୍ତି ବିଦ୍ୟାଗତ ଜନ ସମ୍ବଳ ଦୃଷ୍ଟିରୁ ସମଗ୍ର ପୃଥିବୀରେ ତୃତୀୟ ସ୍ଥାନ ଅଧିକାର କରିବାକୁ ସମର୍ଥ ହୋଇଛି । ମହାକାଶ ବିଜ୍ଞାନ ଏବଂ ତଦାଶ୍ରୟୀ ଟେଲିଯୋଗାଯୋଗ, ପାଣିପାଗ ବିଜ୍ଞାନ ଓ ଜାତୀୟ ପ୍ରାକୃତିକ ବିଭବଗୁଡ଼ିକର ସର୍ବେକ୍ଷଣ, ପରମାଣୁ ଶକ୍ତି ଉତ୍ପାଦନ ଓ ତାହାର ଶାନ୍ତିପୂର୍ଣ୍ଣ ଉପଯୋଗ, ଜୈବପ୍ରଯୁକ୍ତି ବିଦ୍ୟା, ମାଇକ୍ରୋଇଲେକ୍‌ଟ୍ରୋନିକ୍‌ସ ପ୍ରଭୃତି ବିଜ୍ଞାନ ଓ ଟେକ୍‌ନୋଲଜିର ଅତ୍ୟାଧୁନିକ ବିଭାଗଗୁଡ଼ିକ ସଂପର୍କରେ ଭାରତୀୟ ବିଶେଷଜ୍ଞମାନଙ୍କ ବୌଦ୍ଧିକ ଉଦ୍ୟମ ଗୁଣାତ୍ମକ ଦୃଷ୍ଟିରୁ ପୃଥିବୀର ଯେ କୌଣସି ବିଜ୍ଞାନୋନ୍ନତ ରାଷ୍ଟ୍ରର ସମକକ୍ଷ ହୋଇ ପାରିଛି ।

ଆମ ଦେଶର ସର୍ବାଙ୍ଗୀନ ପ୍ରଗତି ସାଧନ ଦିଗରେ ବିଜ୍ଞାନ ଓ ଟେକ୍‌ନୋଲଜିର ଅବଦାନଗୁଡ଼ିକୁ ଯଥାର୍ଥମାର୍ଗରେ ନିୟୋଜିତ କରିବା ପାଇଁ ତଥା ବୈଜ୍ଞାନିକ ମିଜାଜ୍ (Scientific temper) କୁ ଦେଶର ସାଂସ୍କୃତିକ ଅର୍ଥନୈତିକ ବାତାବରଣର ଅଙ୍ଗୀଭୂତ କରାଇବା ପାଇଁ ପଣ୍ଡିତ ନେହେରୁଙ୍କ ନେତୃତ୍ୱରେ ଗୋଟିଏ ବିଜ୍ଞାନ ନୀତି ପ୍ରଣୟନ କରାଯାଇଥିଲା । ଏହି ଐତିହାସିକ ନୀତିକୁ Scientific policy Resolution ନାମରେ ଅଭିହିତ କରାଯାଏ । ଏହା ୧୯୫୮ ମସିହା ମାର୍ଚ୍ଚ ମାସ ୪ ତାରିଖରେ ଭାରତ ସରକାରଙ୍କ ଦ୍ୱାରା ବୈଧାନିକ ଭାବରେ ଅନୁମୋଦିତ ହେଲା । ଏହି ନୀତି ଅନୁଯାୟୀ ଏଣିକି ଆମ ଦେଶର ପ୍ରଗତି ପାଇଁ ବିଜ୍ଞାନ ଓ ଟେକ୍‌ନୋଲଜି ଭିତ୍ତିକ ଲକ୍ଷ୍ୟଗୁଡ଼ିକୁ ସ୍ଥିର କରାଗଲା ।

ଏ ଜାତୀୟ ନୀତି କାର୍ଯ୍ୟକାରୀ ହେବାଠାରୁ ଇତ୍ୟବସରରେ ୨୫ ବର୍ଷ ବିତିଗଲଣି । ତେଣୁ ଆମେ ପଶ୍ଚାତ୍ ଦୃଷ୍ଟି ନିକ୍ଷେପ କରିବା ପୂର୍ବକ ବିଜ୍ଞାନ ଓ ଟେକ୍‌ନୋଲଜି ଜରିଆରେ ଆମ ଦେଶର ପ୍ରଗତି କ୍ଷେତ୍ରରେ ମିଳିଥିବା ସୁଫଳଗୁଡ଼ିକ ସଂପର୍କରେ ଅବଗତ ହେବା ସଙ୍ଗେ ସଙ୍ଗେ ଅତୀତର ଅଭିଜ୍ଞତାରୁ ଶିକ୍ଷା ଲାଭ କରି ଭବିଷ୍ୟତରେ କର୍ମପନ୍ଥା ନିର୍ଦ୍ଧାରଣ କରିବା ବିଜ୍ଞତାର ପରିଚୟକରୂପେ ଉପଲବ୍ଧ ହେଉଛି ।

ପଣ୍ଡିତ ନେହେରୁଙ୍କ ପଥପ୍ରଦର୍ଶନକାରୀ ନେତୃତ୍ୱର ସୂତ୍ରଧାରିଣୀ ରୂପେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ବିଜ୍ଞାନ ଓ ଟେକ୍‌ନୋଲଜି ଭିତ୍ତିକ ଜାତୀୟ ଉନ୍ନୟନମୂଳକ କାର୍ଯ୍ୟକ୍ରମଗୁଡ଼ିକର ସମୟୋଚିତ କାର୍ଯ୍ୟକାରିତା ଦିଗରେ ଅଗ୍ରାଧିକାର ଆରୋପ କରିଛନ୍ତି । ଜାତୀୟ ଉତ୍ପାଦନ କ୍ଷେତ୍ରରେ ବିଜ୍ଞାନସମ୍ମତ ପନ୍ଥାଗୁଡ଼ିକୁ କାର୍ଯ୍ୟକାରୀ କରାଯିବା ହେତୁ ଖାଦ୍ୟଶସ୍ୟ ଉତ୍ପାଦନ କ୍ଷେତ୍ରରେ ଆମେ ସ୍ୱାବଲମ୍ବୀ ହୋଇ ପାରିଛୁ । ୧୯୬୫-୬୬ ଆର୍ଥିକ ବର୍ଷରେ ଆମ ଦେଶରେ ବର୍ଷକୁ ୭୨·୩୫ ନିୟୁତ ଟନ ଖାଦ୍ୟଶସ୍ୟ ଉତ୍ପାଦିତ ହୋଇଥିବା ସ୍ଥଳେ ୧୯୮୨-୮୩ ଆର୍ଥିକ ବର୍ଷରେ ଏହାର ପରିମାଣ ୧୨୮·୩୫ ନିୟୁତ ଟନ ହୋଇ ପାରିଛି । ଆମ ଦେଶର କୃଷୀମାନେ ଉନ୍ନତ ବିହନ, ଉପଯୁକ୍ତ ଭୂକର୍ଷଣ ପ୍ରଣାଳୀ, ରାସାୟନିକ ସାର ଓ କୀଟନାଶକ ଦ୍ରବ୍ୟ ଓ ଶସ୍ୟକ୍ଷେତ୍ରକୁ ଯଥାନୁପାତିକ ଜଳ ଯୋଗାଣ ପ୍ରଭୃତି ପ୍ରକ୍ରିୟାଗୁଡ଼ିକୁ ଠିକଣାଭାବରେ ବ୍ୟବହାର କରିବାକୁ ସମର୍ଥ ହେବା ଦ୍ୱାରାହିଁ ସବୁଜ ବିପ୍ଳବର ବାସ୍ତବ ରୂପାୟନ ସଂଭବ ହୋଇଛି । ୧୯୬୫-୬୬ ଆର୍ଥିକ ବର୍ଷ ମଧ୍ୟରେ ଆମ ଦେଶର ଉତ୍ପାଦିତ ଇସ୍ପାତ୍, କୋଇଲା ଓ ଅଶୋଧିତ ଖଣିଜ ତୈଳର ପରିମାଣ ଯଥାକ୍ରମେ ୪,୫୧,୭୦·୩ ଓ ୩·୧୬ ନିୟୁତ ଟନ ହୋଇଥିବା ସ୍ଥଳେ ୧୯୮୨-୮୩ ଆର୍ଥିକ ବର୍ଷରେ ଏଗୁଡ଼ିକର ମୋଟ ଉତ୍ପାଦନର ପରିମାଣ ଯଥାକ୍ରମେ ୮·୦୫, ୧୩୭·୧ ଓ ୨୧.୧ ନିୟୁତ ଟନ୍ ହୋଇଛି । ୧୯୭୦ ମସିହା ବେଳକୁ ଆମ ଦେଶରେ ବର୍ଷ ପିଛା ୭୦ କୋଟି ଟଙ୍କାର ଇଲେକ୍‌ଟ୍ରୋନିକ୍ ମାଲ ଉତ୍ପାଦନ କରାଯାଉଥିବା ସ୍ଥଳେ ୧୯୮୦ ମସିହା ବେଳକୁ ପ୍ରାୟ ୭୦୦ କୋଟି ଟଙ୍କାର ଇଲେକ୍‌ଟ୍ରୋନିକ୍ ମାଲ ଉତ୍ପାଦନ କରିବା ସଂଭବ ହୋଇଛି । ପ୍ରତିରକ୍ଷା, ଶିକ୍ଷା, ଚିକିତ୍ସା, ପରିବହନ ଏବଂ ବେତାର, ଟେଲିଫୋନ ଓ ଟେଲିଭିଜନ ଭଳି ଯୋଗାଯୋଗ କ୍ଷେତ୍ରର ସମୃଦ୍ଧି ସାଧନ ପାଇଁ ଆଧୁନିକ ଟେକ୍‌ନୋଲଜି ନିର୍ଭରଶୀଳ କାର୍ଯ୍ୟକ୍ରମଗୁଡ଼ିକୁ କାର୍ଯ୍ୟକାରୀ କରାଯାଉଛି । ସର୍ବବିଧ କ୍ଷେତ୍ରଗୁଡ଼ିକୁ ଶକ୍ତି ଯୋଗାଇ ଦେବା ଉଦ୍ଦେଶ୍ୟରେ ବୃହତ୍ ଓ ନାତିବୃହତ୍ ଜଳ-ବିଦ୍ୟୁତ୍ କେନ୍ଦ୍ର, ତାପଜ ବିଦ୍ୟୁତ୍-କେନ୍ଦ୍ର ଓ ପାରମାଣବିକ ପ୍ରକ୍ରିୟକଗୁଡ଼ିକୁ ପ୍ରତିଷ୍ଠା କରାଯାଉଛି । ପୁଣି, ପରିବେଶର ଦୂଷୀତକରଣକୁ ରୋକିବା ସଙ୍ଗେ ସଙ୍ଗେ ଗ୍ରାମାଞ୍ଚଳକୁ ବିକେନ୍ଦ୍ରୀକରଣକ୍ଷମ ତଥା ନବୀକରଣକ୍ଷମ ଶକ୍ତିର ଉତ୍ସଗୁଡ଼ିକୁ ଯୋଗାଇ ଦେବା ଉଦ୍ଦେଶ୍ୟରେ ବର୍ତ୍ତମାନ ଜୋର୍‌ସୋର୍‌ରେ ଉଦ୍ୟମ ଚାଲିଛି । ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳରେ (୧୯୫୧—୫୬) ଉଭୟ ପ୍ଲାନ୍ ଓ ନନ୍‌ପ୍ଲାନ୍‌ଭିତ୍ତିକ ବ୍ୟୟ ଅଟକଳ ଅନୁଯାୟୀ ବିଜ୍ଞାନ ଓ ଟେକ୍‌ନୋଲଜି କ୍ଷେତ୍ରରେ ୨୦ କୋଟି ଟଙ୍କା ଖଟାଯାଇଥିବାସ୍ଥଳେ ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳରେ (୧୯୮୦—୮୫) ଏ ଦିଗରେ ପ୍ରାୟ ୩୩·୬୭ କୋଟି ଟଙ୍କା ବ୍ୟୟ କରାଯାଉଛି । ବିଜ୍ଞାନ ଓ ଟେକ୍‌ନୋଲଜି ଭିତ୍ତିକ ଅବସ୍ଥାପନା ଯୋଗୁଁ ଜାତୀୟ ଉତ୍ପାଦନର ଅଭିବୃଦ୍ଧି ଏପରି ରୂପ ଧାରଣ କରିବା ପରେ ସଂପ୍ରତି ଆତ୍ମନିର୍ଭରଶୀଳତା ପ୍ରତି ଗୁରୁତ୍ୱ ଆରୋପ କରାଯାଉଛି । ବିଜ୍ଞାନ ଓ ଟେକ୍‌ନୋଲଜିର ଭୂମିକା ସଂପର୍କରେ ମନ୍ତବ୍ୟ ଦେବା ବେଳେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଆତ୍ମନିର୍ଭରଶୀଳତା ପ୍ରତି ପ୍ରାଧାନ୍ୟ ଆରୋପ କରିବା ପୂର୍ବକ ସୂଚାଇଛନ୍ତି ଯେ, ବିଜ୍ଞାନ ଓ ଟେକ୍‌ନୋଲଜି ଆଧାରିତ ଯୋଜନାର ଆତ୍ମନିର୍ଭରଶୀଳତା ହିଁ ପ୍ରାଣ-କେନ୍ଦ୍ର ହେବା ଉଚିତ୍ । ଆମ ଦେଶର ଆକାର ଓ ସମସ୍ୟାଗୁଡ଼ିକ ପରିପ୍ରେକ୍ଷୀରେ ଏହା ବ୍ୟତୀତ ଅନ୍ୟ କୌଣସି ଜାତୀୟ ଲକ୍ଷ୍ୟ ପ୍ରତି ପ୍ରାଧାନ୍ୟ ଆରୋପ କରାଯିବାର ଅବକାଶ ନାହିଁ । ଆମେ ସମସ୍ତେ ଏପରି ଚିନ୍ତାଧାରା ପ୍ରତି ପ୍ରାଧାନ୍ୟ ଆରୋପ କରୁଥିଲେ ହେଁ ଆମ କାର୍ଯ୍ୟରେ ବହୁସଂଖ୍ୟକ ତ୍ରୁଟି ପୁଣି ପରିଲକ୍ଷିତ ହେଉଛି । ଜାତୀୟ ନିରାପତ୍ତା, ସମୟର ଗୁରୁତ୍ୱ, କାର୍ଯ୍ୟଦକ୍ଷତାର ନିର୍ଭରଯୋଗ୍ୟତା ଓ ବ୍ୟୟଭାର ଦୃଷ୍ଟିରୁ ଆମେ ଆନ୍ତର୍ଜାତୀୟ ବଜାରରୁ ଉନ୍ନତ ଟେକ୍‌ନୋଲଜି ଆମଦାନୀ କରିବାକୁ ବାଧ୍ୟ ହେଉଛୁ । ମାତ୍ର ଜାତୀୟ ଲକ୍ଷ୍ୟ ପରିପ୍ରେକ୍ଷୀରେ ବିଶ୍ଳେଷଣାତ୍ମକ ବିଚାର ଚଳାଇବା ଦ୍ୱାରା ଆମେ ଜାଣି ପାରୁଛୁ ଯେ ବିଦେଶରୁ କିଣି ବା ଉଧାର କରି ଆମେ ପ୍ରତିରକ୍ଷା ବା ଉନ୍ନୟନମୂଳକ ବ୍ୟାପାରଗୁଡ଼ିକରେ ବିଶେଷ ଆଗେଇ ପାରିବା ନାହିଁ । ଏଗୁଡ଼ିକ ଆମେ ନିଜେ ନିଜ ଦେଶରେହିଁ ସୃଷ୍ଟି କରିବାକୁ ପଡ଼ିବ । ସ୍ୱାବଲମ୍ବନଶୀଳତାର ତାତ୍ପର୍ଯ୍ୟକୁ ଆହୁରି ସ୍ପଷ୍ଟଭାବରେ ବୁଝାଇ ଦେବା ପାଇଁ ଶ୍ରୀମତୀ ଗାନ୍ଧୀ ସୂଚାଇଛନ୍ତି ଯେ ଯାବତୀୟ ଜିନିଷ ନିଜ ଦେଶରେ ତିଆରି କରିବା ଆତ୍ମନିର୍ଭରଶୀଳତାର ପ୍ରକୃତ ଅର୍ଥ ନୁହେଁ । ଦରକାର ବେଳେ ଯେ କୌଣସି ଜିନିଷ ତିଆରି କରି ପାରିବାର ଯୋଗ୍ୟତା ଅର୍ଜନ କରିବା ହିଁ ଏହାର ତାତ୍ପର୍ଯ୍ୟ ।

ଏପରି ଭାବରେ ସୁବୃହତ୍ ବୈଜ୍ଞାନିକ ଅବସ୍ଥାପନା ଓ ଜନସମ୍ବଳ ବିନିମୟରେ ଜାତୀୟ ଉତ୍ପାଦନର ଅଭିବୃଦ୍ଧି ପାଇଁ ବ୍ୟାପକ ଉଦ୍ୟମ ଚାଲିଥିଲେ ମଧ୍ୟ ପଣ୍ଡିତ ନେହେରୁଙ୍କ ସ୍ୱପ୍ନ ସଫଳ ହୋଇନାହିଁ । ଆମ ଦେଶର ଶତକଡ଼ା ୪୦ ଭାଗ ନାଗରିକ ଦାରିଦ୍ର୍ୟର ସୀମାରେଖା ତଳେ ନିଷ୍ପେଷିତ ଜୀବନ ଯାପନ କରୁଛନ୍ତି । ମାତ୍ର ମୋଟ ଜାତୀୟ ଉତ୍ପାଦନର ବିପୁଳାଂଶ କେବଳ ଉପଭୋଗୀ ଗୋଷ୍ଠୀର କବଳିତ ହେଉଛି । ଗ୍ରାମାଞ୍ଚଳର ତଥା ସହରିଆ ବସ୍ତି ଅଞ୍ଚଳର ଅବହେଳିତ ଜନତାର ଦୁର୍ଦ୍ଦଶା ମୋଚନ ଦିଗରେ ଆମ ଉଦ୍ୟମ ସାର୍ଥକ ହୋଇ ନାହିଁ । ଅବଶ୍ୟ ସାମ୍ୟବାଦୀ ଆଦର୍ଶକୁ ବାସ୍ତବ ରୂପ ଦେବା ପାଇଁ ଓ ସାମାଜିକ

-ନ୍ୟାୟ ପ୍ରତିଷ୍ଠା ପାଇଁ ବର୍ତ୍ତମାନ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ପ୍ରବର୍ତ୍ତିତ ୨୦ ଦଫା ସମ୍ବଳିତ କାର୍ଯ୍ୟକ୍ରମ ପ୍ରତି ଅଗ୍ରାଧିକାର ଆରୋପିତ ହୋଇଛି । ଏଥିପାଇଁ ଯେଉଁ ପ୍ରକାର ନିଷ୍ଠାପର ତଥା ଆନ୍ତରିକ ଉଦ୍ୟମ ଆବଶ୍ୟକ ହେଉଛି, ତାହା କେବଳ ବୈଜ୍ଞାନିକ ମନୋବୃତ୍ତି ସଂପନ୍ନ ଜନମତର ସ୍ତରରେ ତଥା ପ୍ରଚାର ମାଧ୍ୟମଗୁଡ଼ିକ ଜରିଆରେ ଦେଶପ୍ରେମୀ ବୁଦ୍ଧିଜୀବୀମାନଙ୍କ ପରାମର୍ଶ ଫଳରେ ଠିକଣା ପଥର ଅନୁଗାମୀ ହେବାର ଅବକାଶ ରହିଛି । ଆମ ଦେଶର ପ୍ରାକୃତିକ ବିଭବ ଓ ଜନସମ୍ବଳର ଯଥାର୍ଥ ଆନୁଷ୍ଠାନିକ ଉପଯୋଗ ସମ୍ଭବ ହୋଇ ପାରିଲେ ସାରା ଦେଶର ଜନସାଧାରଣଙ୍କ ଜୀବନ ପ୍ରବାହକୁ ସୁଖଶାନ୍ତିମୟ କରାଯାଇ ପାରିବ । ଏ ଦିଗରେ ବୈଜ୍ଞାନିକ ଓ ପ୍ରଯୁକ୍ତି ବିଦ୍ୟା ବିଶେଷଜ୍ଞମାନଙ୍କ ଭୂମିକା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଛି । ସଂପ୍ରତି ପରିବେଶ-ବିଭାଗ, ବିଜ୍ଞାନ ଓ ଟେକ୍ନୋଲୋଜି ବିଭାଗ, ମହାକାଶ ବିଭାଗ, ପରମାଣୁ ଶକ୍ତି ବିଭାଗ ପ୍ରଭୃତି କେନ୍ଦ୍ର ସରକାରଙ୍କର ଅନ୍ୟୂନ ୭ଟି ମନ୍ତ୍ରଣାଳୟରେ ଅଭିଜ୍ଞ ବୈଜ୍ଞାନିକମାନଙ୍କୁ ସଚୀବ ରୂପେ ନିଯୁକ୍ତି କରାଯାଇଛି । ସାରା ଦେଶର ଅବହେଳିତ, ଦୁଃସ୍ଥ ଜନସାଧାରଣଙ୍କ ଜୀବନ ଧାରଣର ମାନକୁ ଉନ୍ନୋନ୍ନତ କରାଇବା ପାଇଁ ଯେଉଁ ପ୍ରକାର ଶିକ୍ଷାଦୀକ୍ଷା, ଗବେଷଣା ଓ ପ୍ରଶାସନିକ କାର୍ଯ୍ୟକ୍ରମଗୁଡ଼ିକୁ କାର୍ଯ୍ୟକାରୀ କରାଯିବା ଆବଶ୍ୟକ ହେଉଛି, ତାହାର ଯଥାର୍ଥ ରୂପାୟନ ଦିଗରେ ସାମାଜିକ ଦାୟିତ୍ୱବୋଧ-ସଂପନ୍ନ ପ୍ରମୁଖ ଓ ପ୍ରବୀଣ ବୈଜ୍ଞାନିକମାନେ ବଳିଷ୍ଠ ନେତୃତ୍ୱ ପ୍ରଦର୍ଶନ କରି ପାରିଲେ ଏବଂ ସରକାର ଦୃଢ଼ ମନୋବଳ ସହକାରେ ଏ ଦିଗରେ ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ ଆମ ଦେଶକୁ ଏକ ସ୍ୱାବଲମ୍ବୀ ସୁଖଶାନ୍ତିପ୍ରଦ ରାଷ୍ଟ୍ରରେ ପରିଣତ କରିବାର ଉଦ୍ୟମ ନିଶ୍ଚିତ ଭାବରେ ଫଳପ୍ରଦ ହେବ ।

ଉପନିର୍ଦ୍ଦେଶକ, ବିଜ୍ଞାନ
ଭୁବନେଶ୍ୱର



ପଟାସ ସାର ଓ ବିନା ପଟାସ ସାରରେ ହୋଇଥିବା ଅମଳ

# ରଣପୁର ପ୍ରଜାମେଳି ଓ ରଘୁ ଦିବାକର

ଡଃ ଜଗନ୍ନାଥ ମହାନ୍ତି

୧୯୩୮ ମସିହା । ରଣପୁର ଗଡ଼ଜାତରେ ପ୍ରଜାମାନଙ୍କର ଦୁଃଖ ଆଉ ନିର୍ଯାତନା ସୀମାଟପିଥିଲା । ସେମାନେ ରାଜାଙ୍କର ବେଠିବେଗାରି ଆଉ ଭେଟିମାଗଣାଦେଇ ସର୍ବସ୍ୱାନ୍ତହେଲେ । ନିଜ ବାଡ଼ିବଗିଚାରେ ପନିପରିବା, ଫୁଲଫଳ ଚାଷ କରିବା, ନିଜ ପୋଖରୀରେ ମାଛଚାଷ କରିବା ଆଉ ନିଜ ଜାଗାରେ କୂଅପୋଖରୀ ଖୋଳାଇବା ମନା ଥିଲା । କୋଠାଘରତିନି କରିବା, ଯାଆଁଳି କବାଟ ଲଗାଇବା, ଏମିତିକି ପାହାଚ କରିବା ଥିଲା ଖୁବ୍ ଦୂରର କଥା । ବିବାହବ୍ରତ କରିବାରେ ସବାରିପାଲିଙ୍କି, ତୁରୀ-ମହୁରୀ, ଯୋଡ଼ାମଶାଲ ଆଦି ବ୍ୟବହାର କରିବାରେ ଭାରି କଟକଣା ଥିଲା । ପୁଅଝିଅଙ୍କୁ ହାତକୁ ଦିହାତ କରିବାରେ ଆଉ ପୋଷୁଆ ପୁଅ କରିବାରେ ରାଜାଙ୍କର ଅନୁମତି ଦରକାର ଥିଲା । ସଭା-ସମିତି କରି କୌଣସି କଥା ଆଲୋଚନା କରିବାତ ଦୂରର କଥା, ଖବର କାଗଜ ଖଣ୍ଡେ ପଢ଼ିବାକୁ ମଧ୍ୟ ମନାଥିଲା ।

ରଣପୁର ଲୋକମାନେ ଏସବୁ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଆନ୍ଦୋଳନ କଲେ । ଏଥିପାଇଁ ସେମାନଙ୍କର ଏକ ସଂଗଠନ "ପ୍ରଜାମଣ୍ଡଳ" ଗଢାହେଲା । "ପ୍ରଜାମଣ୍ଡଳକୀ ଜୟ" ନାଦରେ ଆକାଶପବନ କଂପି ଉଠିଲା । ଏହାଥିଲା ଇଙ୍ଗାରେ ହରିଶବ୍ଦ ! ରଣପୁର ରାଜ୍ୟର ନିରୀହମୂକ ଜନତାଙ୍କର ରଣହୁଙ୍କାର ! ରାଜା ଆଉ ତାଙ୍କ ପାଖ ଲୋକଙ୍କ ଅତ୍ୟାଚାର ବିରୁଦ୍ଧରେ ଦୃଢ଼ ପ୍ରତିବାଦ ।

ଏସବୁର ନେତୃତ୍ୱ ନେଇଥିଲେ ଯୁବକ ରଘୁନାଥ ମହାନ୍ତି । ତାଙ୍କର ଜନ୍ମ ୧୯୧୦ ମସିହା ଜୁନର ୧୮ ତାରିଖରେ । ତାଙ୍କର ପିତାମାତା ଥିଲେ ନଟବର ମହାନ୍ତି ଓ ଲବଣ୍ୟ ଦେବୀ । ରଣପୁର ଥାନାର ବାଦହଟ୍ଟ ଗାଁରେ ତାଙ୍କର ଜନ୍ମ । ୧୯୩୭ ମସିହାରେ ସେ ରେଭେନ୍ସା କଲେଜରେ ଆଇ. ଏ. ପଢ଼ୁଥିଲେ । ଛାତ୍ର ଅବସ୍ଥାରେ ମଧ୍ୟ ସମାଜର ଦୁଃଖସୁଖ, ଅନ୍ୟାୟଶୋଷଣ ସଂପର୍କରେ ଲେଖାଲେଖି କରୁଥିଲେ । ଆଇ. ଏ. ପଢ଼ିଲାବେଳକୁ ତାଙ୍କର ସାତଖଣ୍ଡି ବହି ଅରୁଣୋଦୟ ପ୍ରେସରୁ ପ୍ରକାଶିତ ହୋଇଥିଲା । ସେ ଜାତିଭାଇମାନଙ୍କର ଦୁଃଖ କଷ୍ଟ ସୀମା ଟପିବାରୁ ତା ବିରୁଦ୍ଧରେ କାର୍ଯ୍ୟକରିବାକୁ ନିଜର ପାଠପଢ଼ା ଛାଡ଼ିଲେ । ରଣପୁରରେ ପ୍ରଜାମଣ୍ଡଳ ଗଢ଼ିଲେ ଆଉ ତା ସଂପାଦକ ହେଲେ । ସେ ହେଲେ ଲୋକଙ୍କର ଆଶାଭରସାର ପାତ୍ର ।

ଏହି କାର୍ଯ୍ୟରେ ତାଙ୍କୁ ସବୁପ୍ରକାର ସାହାଯ୍ୟ କରିଥିଲେ ଆଉ ଜଣେ ଯୁବକ ଦିବାକର ପରିଡ଼ା । ୧୯୧୧ ମସିହା ନଭେମ୍ବର ୩୦ ତାରିଖରେ ତାଙ୍କର ଜନ୍ମ । ତାଙ୍କର ପିତା ହରିହର ପରିଡ଼ା ଆଉ ମାତା ତାରାଦେବୀ । ରଣପୁର ଥାନା ଗଡ଼ବାଣୀ ଗାଁରେ ତାଙ୍କର ଘର । ୧୯୩୭ ମସିହାରେ ସେ "ସମାଜ" ପ୍ରେସରେ କାର୍ଯ୍ୟ କରୁଥିଲେ । ରଘୁ ଓ ଦିବାକର ଏକାଠି କାମ କଲେ । କାୟାସାଥିରେ ଛାୟାପରି । ଏକମନ, ଏକପ୍ରାଣ ।

ପ୍ରଜାମଣ୍ଡଳ ଗଢ଼ିବାଯୋଗୁଁ ରାଜାଙ୍କର ରାଗ ପଞ୍ଚମକୁ ଉଠିଲା । ତାଙ୍କ ପାଖଲୋକେ ଆହୁରି ମାତିଲେ । ମଣ୍ଡଳର ନେତାମାନଙ୍କ ଘରବାଡ଼ି ଖାନତଲାସହେଲା । ସେମାନଙ୍କର ଜମି ବାଜ୍ୟାପ୍ତହେଲା । ଜେଲଜରିମାନା ଦଣ୍ଡ ବି ମିଳିଲା । ଅତ୍ୟାଚାର ସୀମା ଟପିବାରୁ ନେତାମାନେ ନିଜର ପିଲାପିଲିଙ୍କୁ ଖୋର୍ଦ୍ଧା ଖାସମାହାଲରେ ରଖିଦେଲେ । ନିଜେ ସଭାସମିତି କଲେ ପଟୁଆରରେ ଯାଇ "ପ୍ରଜାମଣ୍ଡଳକୀ ଜୟ", "ମହାତ୍ମା ଗାନ୍ଧୀକୀ ଜୟ", "ଅନ୍ଧାରୀ ଶାସନ ଲୋପପାଉ", "ଅତ୍ୟାଚାରୀ ଶାସନ ଲୋପ ପାଉ" ଆଦି ଧ୍ୱନିକଲେ । ଚଉଦିଗରେ ମଣିଷର ସୁଅ ଛୁଟିଲା । ବଣ-ପାହାଡ଼ କଂପି ଉଠିଲା ।

୧୯୩୯ ମସିହା ଜାନୁୟାରୀ ୪ ତାରିଖ । ରଣପୁର ଗଡ଼ରେ ଜନସାଧାରଣଙ୍କ ଦାବୀ ରାଜାଙ୍କ ଦରବାରରେ ପେଶ କରାଗଲା । ସେତେବେଳେ ରଣପୁର ରାଜାଙ୍କୁ ବୁଦ୍ଧି ବତାଇବାକୁ ଆଉ ଇଂରେଜ ସରକାରଙ୍କ ତରଫରୁ ବୁଝାସୁଝା କରିବାକୁ ଜଣେ ପଲିଟିକାଲ ଏଜେଣ୍ଟ ଥିଲେ । ନାଁ ତାଙ୍କର ମେଜର ବେଜେଲଗେଟ୍ । ସେ ସେତେବେଳେ ନୟାଗଡ଼ରେ ରହିଥିଲେ । ସେ ରଣପୁରରେ ସଂଗୀନ ଅବସ୍ଥା କଥା ଶୁଣିଲେ । ସେ ତରତର ହୋଇ ଅଳ୍ପ କେତେକ ସୈନ୍ୟଙ୍କୁ ଧରି ରଣପୁରକୁ ଗଲେ । ବାଟରେ ପଡ଼ିଲା ଲୋଧାଚୁଆ ଗାଆଁ । ସେଠାରେ ରାସ୍ତା ଉପରେ କଟା ଗଛସବୁ ଲଦି ହୋଇ ପଡ଼ିଥିଲା । ସେଠାରେ ଦୁଇଜଣ ଜଗୁଆଳି ଥିଲେ । ସେମାନଙ୍କୁ କଟାଗଛତକ ବାଟରୁ ଆଡ଼େଇ ଦେବାକୁ ହୁକୁମ ହେଲା । ସେମାନେ ତାକୁ ଶୁଣିଲେ ନାହିଁ । ସେମାନଙ୍କୁ ଗୁଳିମାଡ଼ ହେଲା । ସିପେହିମାନେ ରାସ୍ତା ସଫା କଲେ । ବେଜେଲ୍‌ଗେଟ୍ ରଣପୁର ଚାଲିଲେ ।

ରଣପୁର ଗଡ଼ରେ ସେତେବେଳେ ଲୋକାରଣ୍ୟ । ଆଜି ଛାଡ଼ିଦେଲେ ଆଜି ସରିଯିବ । ବେଜେଲ୍‌ଗେଟ୍ ପହଞ୍ଚିବାରୁ

ତାଙ୍କୁ ସମସ୍ତେ ଘେରିଗଲେ । ତାଙ୍କର ଗାଡ଼ି ଅଟକି ରହିଲା । ଆହତ ଲୋକମାନଙ୍କୁ ନେଇଯିବାପାଇଁ ଆଣିଥିବା ଶଗଡ଼ଗାଡ଼ି ସେଠାରେ ପହଞ୍ଚିଲା । ସେମାନଙ୍କୁ ଟାଙ୍ଗୀ ଡାକ୍ତରଖାନା ନେବାକୁ ଚେଷ୍ଟା କରାଗଲା । ମାତ୍ର ବେକେଲ୍‌ଗେଟ୍ ସେଇ ଗାଡ଼ିକୁ ଯିବାକୁ ମନା କଲେ । ଲୋକେ ଶୁଣିଲେ ନାହିଁ । ଖୁବ୍ ଧସ୍ତାଧସ୍ତି ଚାଲିଲା ।

ହଠାତ ସାହେବ ତାଙ୍କ ରିଭଲଭର ଗୁଳି ଛୁଟାଇଲେ । ଅର୍ଜୁନ ରାଉତ ନାମକ ଜଣେ ଲୋକ ତାଙ୍କ ଗୁଳିମାଡ଼ରେ ଢଳି ପଡ଼ିଲେ । ଆଉ ଗୁଳି କରିବା ପୂର୍ବରୁ ରଘୁନାଥ ଓ ଦିବାକର ପାଟିକରି ଉଠିଲେ—ଭାଇମାନେ, ଆଉ ଛାଡ଼ନ୍ତୁ ନାହିଁ । ସାହେବଙ୍କୁ ଉଚିତ ଶିକ୍ଷା ଦିଅ । ଏତିକିବେଳେ ତାଙ୍କୁ ଝାଲକରି ପାନେ ଦିଅ । ଦରମରା ଦୁଇଭାଇଙ୍କୁ ଟାଙ୍ଗୀ ଡାକ୍ତରଖାନା ଛାଡ଼ିଲା ନାହିଁ । ଜଣଙ୍କୁ ଗୁଳିମାରି ପକାଇ ଦେଲାଣି । ଆଉ ରକ୍ଷା ନାହିଁ । ଭାଇମାନେ ଲଗାଅ ।

ସେତେବେଳେ ଲୋକେତ ତାତିକରି ଥିଲେ । ଏଇତକ କଥାରେ ମାତି ଉଠିଲେ । ସତେଯେମିତି ଜଳନ୍ତା ନିଆଁରେ ପେଟ୍ରୋଲ ଢାଳି ଦିଆଗଲା । ସମସ୍ତେ ସାହେବଙ୍କୁ ବେଢ଼ିଗଲେ । ମଇଁଷିଶିଙ୍ଗ ଫଟା, ଯୁହିଁଲିବେଙ୍କଲୁ ଗୋଟା । ଯାହା ହାତରେ ଯାହା ପଡ଼ିଲା । ଠେଙ୍ଗାବାଡ଼ିଠାରୁ ଇଟାପଥର ! ବେକେଲଗେଟ୍ ମାଡ଼ ଖାଇ ଖାଇ ମରିପଡ଼ିଲେ ।

ରଘୁନାଥ ଓ ଦିବାକର ଅନ୍ୟମାନଙ୍କ ସହିତ ବନ୍ଦୀ ହେଲେ ଜେଲ୍‌ରେ ରହିଲେ । ଜଣେ ଗୋରା ଜଜ୍‌ଙ୍କୁ ଏଇ ମକଦ୍ଦମା ବିଚାର କରିବାକୁ ରଖାଗଲା । ଦୁଇତିନିବର୍ଷ ଧରି ମକଦ୍ଦମା ଚାଲିଲା । ଶେଷରେ ରାୟ ଦିଆଗଲା । ରଘୁନାଥ ଓ ଦିବାକରଙ୍କୁ ଫାଶି ହୁକୁମ୍ ହେଲା । ୧୧ଜଣ ଲୋକଙ୍କୁ ଯାବଜ୍ଜୀବନ କଳାପାଣିପାରି ଦଣ୍ଡ ମିଳିଲା । ଆଉ ଦୁଇଜଣଙ୍କୁ ଦୁଇବର୍ଷ ଜେଲଦଣ୍ଡ ଦିଆଗଲା ।

୧୯୪୧ ମସିହା ଅପ୍ରେଲ ୪ତାରିଖ । ବିହାରର ଭାଗଲପୁର ଜେଲ୍‌ରେ ରଘୁନାଥ ଓ ଦିବାକରଙ୍କୁ ଫାଶି ଦିଆଗଲା । ସାରା ଭାରତରେ ଦୁଃଖର ଛାୟା ଖେଳିଗଲା । ରଣପୁରର ଲୋକମାନେ ରାଗରେ ନିଆଁ ହୋଇଗଲେ । ଓଡ଼ିଶାସାରା ଏଇ ଘଟଣା ସମସ୍ତଙ୍କୁ ଜାତୀୟ ଭାବରେ ଉଦ୍‌ବୁଦ୍ଧକଲା ।

ବେକେଲଗେଟ୍ ହତ୍ୟାକାଣ୍ଡ ଖାଲି ଭାରତରେ ନୁହେଁ, ଇଂଲଣ୍ଡରେ ମଧ୍ୟ ଚହଳ ପକାଇ ଦେଲା । ବିଲାତର ଖବରକାଗଜ ଆଉ ପାର୍ଲାମେଣ୍ଟରେ ଖୁବ୍ ଆଲୋଚନା ଓ ସମାଲୋଚନା ଚାଲିଲା । ସେତେବେଳେ ବିଲାତର ଶାସନ-ଦାୟିତ୍ୱରେଥିବା ଜାତୀୟଦଳ ନିର୍ବାଚନରେ ହଟିଗଲେ । ବିରୋଧୀ ଶ୍ରମିକଦଳ ବହୁସଂଖ୍ୟାରେ ଭୋଟପାଇ ଜୟଲାଭ କଲେ । ସେଇଦଳର ସରକାର ଭାରତକୁ ସ୍ୱାଧୀନତା ଦେବାକଥା ଘୋଷଣା କଲେ । ରଘୁ-ଦିବାକରଙ୍କ ସ୍ୱପ୍ନ ସାର୍ଥକ ହେବାକୁ ବସିଲା ।

୧୯୪୭ ମସିହା ଅଗଷ୍ଟ ୧୫ତାରିଖରେ ଭାରତ ସ୍ୱାଧୀନ-ହେଲା । ଫିରିଙ୍ଗି ସରକାର ନିଜ ଦେଶକୁ ଫେରିଗଲେ । ଅନ୍ୟାୟ ଅତ୍ୟାଚାର ଓ ଶୋଷଣର କଳା ଅନ୍ଧାର ଲୁଚିଗଲା । ମୁକ୍ତିର ସୂର୍ଯ୍ୟ ସୁଖଶାନ୍ତିର ଆଲୋକ ବୁଣି ହସିହସି ଉଇଁ ଉଠିଲେ ।


କ୍ୱାଟର ନଂ ୩୧/୨
ଟାଇପ V-A
ୟୁନିଟ II
ଭୁବନେଶ୍ୱର


ଜାତି ପ୍ରେମ-ବହ୍ନି ପ୍ରଜ୍ୱଳିତ କର
ସ୍ୱାର୍ଥକୁ ଦିଅ ଆହୁତି ।
ସ୍ୱାର୍ଥ ମେଧ ଯଜ୍ଞେ ଡାକିଆଣେ ନାଚ
ଛାତିକୁ ମିଶାଇ ଛାତି ।

ମଧୁସୂଦନ

# ୧୮୫୭ ବିଦ୍ରୋହର ପ୍ରଥମ ଓଡ଼ିଆ ଶହୀଦ ଜଗୁ ଦେବାନ

**ନିହାର ରଞ୍ଜନ ପଟ୍ଟନାୟକ**

ପରାଧୀନତାର ଶୃଂଖଳରୁ ମୁକ୍ତ ହେବା ପାଇଁ ୧୮୫୭ ରେ ସଂଘଟିତ ମହାନ ଭାରତୀୟ ବିଦ୍ରୋହର ଯଜ୍ଞ ବେଦୀରେ ଆତ୍ମାହୁତି ଦେଇଥିବା ଶହୀଦମାନଙ୍କ ମଧ୍ୟରୁ ପ୍ରଥମ ଓଡ଼ିଆ ଥିଲେ ଜଗୁ ଦେବାନ । ସିଂହଭୂମ୍ ଅନ୍ତର୍ଗତ ପୋଡ଼ାହାଟ ରାଜା ଅର୍ଜୁନ ସିଂଙ୍କର ସେ ଥିଲେ ଲବ୍‌ଧପ୍ରତିଷ୍ଠ ଦେବାନ । ତାଙ୍କ କାର୍ଯ୍ୟକଳାପ ଉପରେ କିଞ୍ଚିତ ଆଲୋକପାତ କରିବା ଉକ୍ତ ପ୍ରବନ୍ଧର ଅବତାରଣା ।

ଏହା ଥିଲ ୧୮୫୭ ରେ ମହାନ ଭାରତୀୟ ବିଦ୍ରୋହ ସମୟର ଘଟଣା । ଜୁଲାଇ ୩୦ ତାରିଖ ଦିନ ହଜାରିବାଗସ୍ଥିତ ସିପାହୀ ସେନା ଛାଉଣୀରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହର ସୂତ୍ରପାତ ହୋଇଥିଲା । ଉକ୍ତ ଘଟଣା କ୍ରମେ କ୍ରମେ ପ୍ରସାର ଲାଭ କରିବାରୁ ଚ୍ଚାଇଁବସା ଠାରେ ଥିବା ରାମଗଡ଼ ବାଟାଲିଅନ ସେପ୍ଟେମ୍ବର ୩ ତାରିଖ ଦିନ ବିଦ୍ରୋହ ଆରମ୍ଭ କରିଥିଲେ । କ୍ରମେ କ୍ରମେ ସମଗ୍ର ସିଂହଭୂମ୍ ହେଲା ବିଦ୍ରୋହୀ-ଙ୍କର ଲୀଳା ଭୂମି । ଏହି ବିଦ୍ରୋହୀମାନଙ୍କୁ ପ୍ରଥମେ ଆଶ୍ରୟ ତଥା ସାହାଯ୍ୟ ଦେଇଥିଲେ ପୋଡ଼ାହାଟ ରାଜାଙ୍କର ଦେବାନ ଜଗୁ । ସେ ମଧ୍ୟ ବିଦ୍ରୋହୀମାନଙ୍କୁ ସାହାଯ୍ୟ କରିବା ପାଇଁ ପୋଡ଼ାହାଟର ରାଜା ଅର୍ଜୁନ ସିଂହଙ୍କୁ ପ୍ରବର୍ତ୍ତାଇଥିଲେ ।

କ୍ରମେ କ୍ରମେ ଜଗୁ ଦେବାନଙ୍କର ନିଷ୍ଠା ଓ କର୍ମ ପ୍ରେରଣା ପାଇଁ ତାଙ୍କୁ ସିଂହଭୂମିରେ ବିଦ୍ରୋହ ସଂଗଠନର ଦାୟିତ୍ୱ ଦିଆ-ଯାଇଥିଲା । ସେ ସିଂହଭୂମ୍‌ରେ ରହୁଥିବା କୋହ୍ଲମାନଙ୍କୁ ଉତ୍ତେଜିତ କରାଇ ବିଦ୍ରୋହରେ ଯୋଗ ଦେବା ପାଇଁ ପ୍ରବର୍ତ୍ତାଇ ଥିଲେ । ତାଙ୍କରି ନେତୃତ୍ୱରେ କେବଳ କୋହ୍ଲ ନୁହନ୍ତି, ସିଂହଭୂମ ଅଞ୍ଚଳର ଅନ୍ୟାନ୍ୟ ବ୍ୟକ୍ତି ବିଦ୍ରୋହରେ ଯୋଗ ଦେଇ-ଥିବାର ଜଣାଯାଏ । ପରେ ପରେ ରାଜା ଅର୍ଜୁନ ସିଂ ମଧ୍ୟ ଜଗୁ ଦେବାନଙ୍କ ସହ ହାତ ମିଳାଇ ବିଦ୍ରୋହର ନେତୃତ୍ୱ ନେଇଥିଲେ । ସେତେବେଳେ କ୍ୟାପ୍‌ଟେନ ବ୍ରିକ ଥାଆନ୍ତି ସିଂହଭୂମ୍‌ର ଡେପୁଟି କମିଶନର ଏବଂ ଟି: ଡାଲଟନ ଥାଆନ୍ତି ଛୋଟ ନାଗପୁର କମିଶନର । ଜଗୁ ଦେବାନଙ୍କ ନେତୃତ୍ୱରେ ସିଂହଭୂମ୍‌ରେ ବିଦ୍ରୋହ ପ୍ରଚଣ୍ଡ ରୂପ ଧାରଣ କରିବାରୁ ସେପ୍ଟେମ୍ବର ମାସ ୧୮ ତାରିଖ ଦିନ କ୍ୟାପ୍‌ଟେନ ବ୍ରିକ୍ ସିଂହଭୂମ୍‌ର ଦାୟିତ୍ୱ ଗ୍ରହଣ କରି ବିଦ୍ରୋହ ଦମନ କରିବା ପାଇଁ ପଦକ୍ଷେପ ଗ୍ରହଣ କରିଥିଲେ । ଏ ଦିଗରେ ସରାଇକଳାର ତତ୍‌କାଳୀନ ରାଜା ଚକ୍ରଧର ସିଂ ତାଙ୍କୁ ସାହାଯ୍ୟ ଦେଇଥିବାର ଜଣାଯାଏ । ସେ ପୋଡ଼ାହାଟର ରାଜାଙ୍କୁ ବିଦ୍ରୋହୀ ରୂପେ ଘୋଷଣା କଲେ । ସମ୍ବଲପୁରରୁ କ୍ୟାପ୍‌ଟେନ ଲି ଚ୍ଚାଇଁବସା ଯାଇଁ କ୍ୟାପ୍‌ଟେନ ବ୍ରିକ୍‌ଙ୍କୁ ସାହାଯ୍ୟ କଲେ । ମାତ୍ର ପୋଡ଼ାହାଟର ରାଜା ଅର୍ଜୁନ ସିଂ ଓ ତାଙ୍କ ନେତା ଜଗୁଙ୍କୁ କରଗତ କରି ହେଲା ନାହିଁ ।

ଏହି ଅର୍ଜୁନ ସିଂ ମୟୂରଭଞ୍ଜ ରାଜାଙ୍କର ଜାମାତା ବୋଲି ଜଣା ପଡ଼ିବାରୁ ମୟୂରଭଞ୍ଜ ରାଜାଙ୍କୁ ବ୍ରିକ୍ ସାହେବ ନିର୍ଦ୍ଦେଶ ଦେଇଥିଲେ ଯେ ବିଦ୍ରୋହରେ ଅଧିକ ଭାଗ ନ ନେବା ପାଇଁ ସେ ତାଙ୍କ ଜାମାତାଙ୍କୁ ପ୍ରବର୍ତ୍ତାଇବେ ଓ ଏଥି ସହିତ ସେ ଯେପରି ଆତ୍ମ ସମର୍ପଣ କରନ୍ତି ତାହା ମଧ୍ୟ ଦେଖିବେ । ଫଳରେ ଏହି ମର୍ମରେ ମୟୂରଭଞ୍ଜ ରାଜା ତାଙ୍କ ଜାମାତାଙ୍କୁ ଚିଠି ଲେଖିଥିଲେ । ସମ୍ଭବତଃ ତାଙ୍କରି ଦ୍ୱାରା ପ୍ରଭାବିତ ହୋଇ ରାଜା ଅର୍ଜୁନ ସିଂ ଶେଷରେ ଆତ୍ମ ସମର୍ପଣ କରିଥିଲେ । ମାତ୍ର ଜଗୁ ଦେବାନଙ୍କୁ ଧରିବା ସମ୍ଭବପର ହୋଇ ନ ଥିଲା । ଇଂରେଜ ମାନେ ଏଥିପାଇଁ କେନ୍ଦୁଝର ରାଜାଙ୍କର ସହାୟତା ଲୋଡ଼ିଥିଲେ । ସେ କେନ୍ଦୁଝରରୁ କିଶୋର ସିଂ, ରାମଚନ୍ଦ୍ର ସିଂ ଓ ଚିନ୍ତାମଣି ଭଞ୍ଜ ପୋଡ଼ାହାଟକୁ ପ୍ରେରଣ କରିଥିଲେ, ଜଗୁ ଦେବାନଙ୍କୁ ଧରିବା ପାଇଁ, ଇତି ମଧ୍ୟରେ ସମ୍ବଲପୁରରୁ କ୍ୟାପ୍‌ଟେନ ଲି, ପୋଡ଼ାହାଟ ଯାଇ ୧୮୫୭ ମସିହା ଡ଼ିସେମ୍ବର ୯ ତାରିଖ ଦିନ କେତେ ଜଣ ଶିଖ୍ ଏବଂ ପୋଡ଼ାହାଟ ରାଜାଙ୍କର କେତେଜଣ ଆତ୍ମୀୟ ଓ କେନ୍ଦୁଝରରୁ ଯାଇଥିବା କର୍ମଚାରୀଙ୍କ ସହାୟତାରେ ଜଗୁ ଦେବାନଙ୍କୁ ବନ୍ଦୀ କରିଥିଲେ । ପରେ ପରେ ତାଙ୍କର ବିଚାର ହେଲା ଏବଂ ଶେଷରେ ଚକ୍ରଧରପୁର ଠାରେ ରାଜାଙ୍କ ପ୍ରାସାଦ ସମ୍ମୁଖରେ ଜଗୁ ଦେବାନଙ୍କୁ ଫାଶୀ ଦିଆ ଯାଇଥିଲା । ଏହି ଦୃଷ୍ଟିରୁ ୧୮୫୭ର ମହାନ ବିଦ୍ରୋହର ସେ ହେଉଛନ୍ତି ପ୍ରଥମ ଓଡ଼ିଆ ଶହୀଦ । ତାଙ୍କୁ ଯଦି ଫାଶୀ ଦିଆଯାଇ ନ ଥାଆନ୍ତା, ସେ ୧୮୫୭ ବିଦ୍ରୋହରେ ଅଧିକ ସକ୍ରିୟ ଅଂଶ ଗ୍ରହଣ କରି ଅନ୍ୟ ଜଣେ ଜାତୀୟବାଦୀ ନେତା ରୂପେ ସମ୍ମାନିତ ହୋଇ ପାରିଥାଆନ୍ତେ ।

---

ଇତିହାସ-ଅଧ୍ୟାପକ, ବି: ଜେ: ବି: କଲେଜ
ଭୁବନେଶ୍ୱର-୧୪ ।

# ଭାରତୀୟ ସଂସ୍କୃତି ହୃଦୟର ସଂସ୍କୃତି

ଶ୍ରୀ ପ୍ରହରାଜ ସତ୍ୟନାରାୟଣ ନନ୍ଦ

ସଂସ୍କୃତି କ'ଣ: ଏପରି ପ୍ରଶ୍ନ ର ଉତ୍ତର ନିର୍ଣ୍ଣୟ କରିବା ସହଜ ନୁହେଁ । ସଂସ୍କୃତିକୁ ବୁଝି ହୁଏ ମାତ୍ର ବୁଝାଇ ହୁଏ ନାହିଁ । ସଂସ୍କୃତିର କୌଣସି ଦୁଇଟି ସଂଜ୍ଞା କସ୍ମିନ୍ କାଳେ ମଧ୍ୟ ଏକ ହେବ ନାହିଁ । ଅଥଚ ଅନେକ ସଂଜ୍ଞାରୁ ବୁଝାଯିବ ଯେ "ଜୀବନର ସମସ୍ୟା ବଳୀକୁ ସମାଧାନ କରିବା ପାଇଁ ଅଥବା ମାନବିକତା ଦୃଷ୍ଟିକୋଣରୁ ସାମାଜିକ ସଂପର୍କ ପ୍ରତିଷ୍ଠା କରିବା ପାଇଁ ମାନବ ସମାଜକୁ ଯେଉଁ ସବୁ ଆଦର୍ଶ, ପ୍ରେରଣା ଦିଏ, ସାମୁହିକ ଭାବରେ ତାହାକୁ ସଂସ୍କୃତି କୁହାଯାଏ ।" ସଂସ୍କୃତିର ବ୍ୟକ୍ତିକ ଦିଗକୁ ବିଚାର କରି ପ୍ରସିଦ୍ଧ ପାଶ୍ଚାତ୍ୟ କବି ଓ ସମାଲୋଚକ ମାଥ୍ୟୁ ଆରନ୍‌ଲଡ୍ କହିଛନ୍ତି, ସଂସ୍କୃତି ହେଉଛି ପରିପୂର୍ଣ୍ଣତାର ଅନୁଶୀଳନ, ମାଧୁର୍ଯ୍ୟ ଏବଂ ଆଲୋକର ନିର୍ଲିପ୍ତ ଅନ୍ୱେଷଣ । ସଂସ୍କୃତିର ସାମାଜିକ ତାତ୍ପର୍ଯ୍ୟ ଉପରେ ଗୁରୁତ୍ୱ ଆରୋପ କରି ଟଏଲର କହିଛନ୍ତି, "ଏହା ହେଉଛି ଜ୍ଞାନ, ବିଶ୍ୱାସ, କଳା, ନୈତିକତା, ରୀତି ନୀତି ଏବଂ ଅନ୍ୟାନ୍ୟ ଦକ୍ଷତା । ଏ ସବୁକୁ ମନୁଷ୍ୟ ସମାଜର ଜଣେ ସଦସ୍ୟ ରୂପେ ଆହରଣ କରିଥାଏ" । ମାତ୍ର ଏପରି ସଂଜ୍ଞାରେ ଭାରତୀୟ ସଂସ୍କୃତିର ଆଦ୍ୟ ଉନ୍ମେଷକୁ ସୀମିତ କରି ହୁଏ ନାହିଁ । ବେଦରେ ସୃଷ୍ଟି ସୂକ୍ତର ଯେଉଁ ବର୍ଣ୍ଣନା ରହିଛି ତାହା ଆମ ସଂସ୍କୃତିର ଉତ୍ସ କହିଲେ ଭୁଲ ହେବ ନାହିଁ ।

ଶତାବ୍ଦୀ ଶତାବ୍ଦୀ ଧରି ହୃଦୟର ନିଭୃତ ଗିରିଗୁହାରେ ନିତ୍ୟସତ୍ୟର ଯେଉଁ ନିର୍ଝର ନିନାଦିତ ଏହା ତାର ପ୍ରତିଧ୍ୱନି ମାତ୍ର । ସେଦିନ ମଣ୍ଡଳାକାରରେ ସୃଷ୍ଟି ଉଚ୍ଚାରଣ କରୁଥିବା ଋଷିବର୍ଗ ଆଜି ମଧ୍ୟ ପ୍ରତିଭାତ ହୁଅନ୍ତି ଆମ ମାନସପଟରେ—

ସେତେବେଳେ ଥିଲେ ନାହିଁ ପ୍ରାଣୀ ବା ଅପ୍ରାଣୀ
ପବନ ମଣ୍ଡଳ ଅବା ଗ୍ରିପାଖେ ବ୍ୟୋମ
କିସ ଢାଙ୍କି ରଖିଥିଲା ସବୁ ? କେଉଁଠି ? ବା କାହାଦ୍ୱାରା
ଥିଲା ସୁରକ୍ଷିତ ?

ସେତେବେଳେ ଥିଲା ଅବା ଜଳରାଶି ଗହନ ଗଭୀର ?

ସେତେବେଳେ ଥିଲା ନାହିଁ ମୃତ୍ୟୁ କିମ୍ବା ମରଣ ହୀନତା
ନ ଥିଲା ପ୍ରଭେଦ କିଛି ଆଲୋକ ଅନ୍ଧାର
ଉର୍ଦ୍ଧ୍ୱେ ତା'ର ଛାଡୁଥିଲା ଶାନ୍ତିର ନିଃଶ୍ୱାସ ମହାସତ୍ତା ସ୍ୱୟଂ
ପ୍ରତିଷ୍ଠିତ

ଏହା ବ୍ୟତିରେକ ଆଉ ନ ଥିଲା ତ କିଛି କିମ୍ବା ଉର୍ଦ୍ଧ୍ୱେ ଯା'ର ।

ପ୍ରଥମେ ଅନ୍ଧାର ଥିଲା ଅନ୍ଧାରେ ଆବୃତ
ଏ ବିଶ୍ୱ ବ୍ରହ୍ମାଣ୍ଡ ଆଉ ବାରି ମଧ୍ୟେ ନ ଥିଲା ପ୍ରଭେଦ
ଯାହା ଥିଲା ଆକାଶରେ ଶୂନ୍ୟରେ ଗୋପନ
ଅନୁଭବ ଶକ୍ତି ଦ୍ୱାରା କେବଳ ତା' ହେଲା ପ୍ରକଟିତ ।

ତା' ପରେ ପ୍ରଥମ ଥର ଅଭିଳାଷ ହେଲା ଜାଗରିତ
ମନର ପ୍ରଥମ ବୀଜ ମଧ୍ୟରେ ତାହାର
ଋଷିମାନେ ଖୋଜି ଖୋଜି ନିଜ ହୃଦୟରେ
ପାଇଲେ ଯୋଡୁଛି 'ନାହିଁ' ଜୀବ ସାଥେ ସଂପର୍କଜୀବର ॥
(ସୃଷ୍ଟି ସୂକ୍ତର ଅନୁବାଦ)

## ସଂସ୍କୃତିର ଆଦିପର୍ବ

ଆର୍ଯ୍ୟଜାତିର ଆଦିପର୍ବ ଅନୁଶୀଳନ କରି ଜଣେ କୃତବିଦ୍ ଐତିହାସିକ କହିଛନ୍ତି : ଭାରତବର୍ଷର ପ୍ରତିଷ୍ଠା ଯେଉଳି ଅନନ୍ତ କାଳର, ଭାରତରେ ଆର୍ଯ୍ୟଜାତିର ପ୍ରତିଷ୍ଠା ମଧ୍ୟ ସେହିଭଳି ଅନନ୍ତ କାଳ ବ୍ୟାପୀ । ଭାରତବର୍ଷ ହିଁ ଆର୍ଯ୍ୟ ଜାତିର ଉଦ୍ଭବ କ୍ଷେତ୍ର, ଭାରତବର୍ଷରେ ହିଁ ତା'ର ଉନ୍ନତି-ପରିପୁଷ୍ଟି ଏବଂ ଭାରତବର୍ଷରୁ ତାର ପ୍ରଭାବ ପ୍ରତିପତ୍ତି ଜଗତ ପରିବ୍ୟାପ୍ତ । ଆର୍ଯ୍ୟ ହିନ୍ଦୁମାନେ ଥିଲେ ବାସ୍ତବ ସତ୍ ସାମଗ୍ରୀର ଅଧିକାରୀ । ସେମାନେ ବହିର୍ଜଗତ ସହିତ ଅନ୍ତର୍ଜଗତର ସମନ୍ୱୟ ପ୍ରତିଷ୍ଠା କରିଥିଲେ । ଜ୍ଞାନ, ବିଜ୍ଞାନ, ଦର୍ଶନ, ସାହିତ୍ୟ, ଗଣିତ, କାବ୍ୟ, ଅଳଙ୍କାର, ଶୌର୍ଯ୍ୟ, ବୀର୍ଯ୍ୟରେ ସେମାନେ ଥିଲେ ଅତୁଳନୀୟ, ଅନନୁକରଣୀୟ ।

ଭାରତକୁ ଦେବ ଭୂମି କୁହାଯାଉଛି । ଆମର ସ୍ୱରୋଚି ସ୍ନେହମୟୀ ଜନନୀ ରହିଛନ୍ତି । ସେମାନେ ବେଦମାତା, ଦେଶମାତା, ଭୂ-ମାତା ଓ ସ୍ୱ-ମାତା । ଆମ ଦେଶରେ ଯେଉଁ ଚାରି ଯୁଗ କଳ୍ପିତ ହୋଇଛି ସେଗୁଡ଼ିକ ମାନବ ଇତିହାସରେ ସାଂସ୍କୃତିକ ବିବର୍ତ୍ତନ ସୂଚିତ କରେ । ସତ୍ୟ ଯୁଗରେ ମୁନି-ଋଷିମାନେ ସତ୍ୟ ସନ୍ଦର୍ଶନ ଓ ଲୋକହିତ ନିମନ୍ତେ ସେଗୁଡ଼ିକର

ବିନ୍ୟାସ କରନ୍ତି । ତ୍ରେତାରେ ସତ୍ୟାନୁମୋଦିତ ଦୈନନ୍ଦିନ ଜୀବନ ଯାପନ ହିଁ ବ୍ୟକ୍ତିର ଆଦର୍ଶ । ଦ୍ୱାପରରେ ବିଧାନ ଗୁଡ଼ିକ ରୀତିଗତ ଭାବେ ଅନୁସୃତ ହୁଏ ଏବଂ କଳିଯୁଗରେ ଏଇ ବିଧି ବିଧାନ ଉପେକ୍ଷିତ ହେବାରୁ ଜୀବନର ଲକ୍ଷ୍ୟଠାରୁ ମଣିଷ ଦୂରେଇ ଯାଏ । ପୁଣି ହୁଏ ସତ୍ୟର ଅଭ୍ୟୁଦୟ । ସମୟଚକ୍ର ଏଇ ପରି ଗଡ଼ି ଚାଲେ ।

ଭାରତ ଶବ୍ଦର ବିବିଧ ଅର୍ଥ ରହିଛି । 'ଭା' ର ଅର୍ଥ ଆଲୋକ । 'ରତ' ର ଅର୍ଥ ରତି ବା ଆସକ୍ତି । ଆଲୋକ ପ୍ରତି ଯେଉଁ ଦେଶର ଲୋକମାନେ ଆସକ୍ତ ସେମାନେ ହେଉଛନ୍ତି ଭାରତୀୟ । ସତ୍ୟସାଇ କହିଛନ୍ତି ଯେଉଁମାନେ ଭାବ, ରାଗ, ତାଳର ସଂହତି ରକ୍ଷା କରି ଉଚ୍ଚତର ମୂଲ୍ୟବୋଧ ଉପରେ ଆଧାରିତ ଜୀବନ ଯାପନ କରନ୍ତି ସେମାନେ ଭାରତୀୟ । ଚିନ୍ମୟାନନ୍ଦଙ୍କ ମତରେ ଭାରତ ହେଉଛି ବିଶ୍ୱକୁ ଆଲୋକ ପଥରେ ନେଉଥିବା ଦେଶ । ତେଣୁ ସଂସ୍କାର ବଶତଃ ଲୋକେ ଭାରତରେ ଜନ୍ମ ଲାଭ କରନ୍ତି ବୋଲି ଆମର ବିଶ୍ୱାସ ରହିଛି । ଆର୍ଯ୍ୟ ଶବ୍ଦର ମଧ୍ୟ ଏହାହିଁ ଆକ୍ଷରିକ ଅର୍ଥ । ଅନ୍ୟତ୍ର ଭା–ପ୍ରକାଶମ୍; ରତି–ପ୍ରକଟନ ଆକାଂକ୍ଷା ବୋଲି କୁହାଯାଇଛି । ପ୍ରଖ୍ୟାତ ମାର୍କିନ ଦାର୍ଶନିକ ଓ ଐତିହାସିକ ଭଲଲ ଡୁରାଣ୍ଟ କହିଛନ୍ତି ।

"India was the motherland of our race, and Sanskrit the mother of Europe's languages. She was the mother of our philosophy; mother through the Arabs, of much of our mathematics, mother, through the Budha of the ideals embodied in christianity; mother, through the village community, of selfgovernment and democracy. Mother India is in many ways the mother of us all."—ସେ ବିଶ୍ୱୋତ୍କର୍ଷ ନିଦାନଂ

ନିର୍ଦ୍ୱନ୍ଦରେ କୁହାଯାଇ ପାରେ ଯେ ଭାରତୀୟ ସଂସ୍କୃତି ବିଶ୍ୱବାସୀଙ୍କ ପାଇଁ ଅନୁକରଣୀୟ । ଭାରତକୁ ଦେବଭୂମି କହିବାର କାରଣ ଏହା ହେଉଛି ବେଦଭୂମି । ବେଦରେ ବିଶ୍ୱାସ ରଖିବା ଦ୍ୱାରା ଆମ ହୃଦୟ କରୁଣସେଚିତ ହୁଏ ଏବଂ ପ୍ରେମ ହୁଏ ସାର୍ବଜନୀନ । ତେଣୁ ସତ୍ୟସାଇ ଭାରତୀୟ ସଂସ୍କୃତିକୁ "ହୃଦୟର ସଂସ୍କୃତି" ବୋଲି କହିଛନ୍ତି, ଏହା ଭାବାତୀତ ଜ୍ଞାନରୁ ଜାତ । ଆଧ୍ୟାତ୍ମିକତା ହିଁ ଭାରତର ଆତ୍ମା । ପ୍ରାଚୀନ ଭାରତର ମହନୀୟତା ସଂପର୍କରେ ଶ୍ରୀ ଅରବିନ୍ଦ ରେନେସାଁ ଇନ୍ ଇଣ୍ଡିଆରେ ଲେଖିଛନ୍ତି –

## ଐକ୍ୟ ଚେତନା

ଆଧ୍ୟାତ୍ମିକତା ହେଉଛି ଭାରତୀୟ ମନର ଚାବିକାଠି । ଅସୀମ ଧାରଣା ଏହା ମଧ୍ୟରେ ଗୁମ୍ଫିତ । ଭାରତ ଆଦ୍ୟରୁ ଦେଖିଛି–ଏକ ବୁଦ୍ଧିବାଦର ବିବର୍ତ୍ତନ ଓ ଭ୍ରମ ବର୍ତ୍ତମାନ ଅଜ୍ଞାନ ଯୁଗରେ ଯେ ଅନ୍ତର୍ଦୃଷ୍ଟି ହରାଇ ନାହିଁ ଏବଂ ସେ ଜାଣିଛି ଯେ କେବଳ ଆଲୋକରେ ଜୀବନକୁ ଠିକ୍ ଭାବରେ ଦେଖି ହେବ ନାହିଁ କିମ୍ବା ବାହ୍ୟିକ ଶକ୍ତିରେ ପରିପୂର୍ଣ୍ଣଭାବେ ଏହାକୁ ଯାପନ କରିହେବ ନାହିଁ । ପାର୍ଥିବ ବିଧାନ ଏବଂ ଶକ୍ତିର ବୈଶିଷ୍ଟ୍ୟ ସଂପର୍କରେ ସେ ଅବହିତ ଥିଲା ; ପ୍ରାକୃତିକ ବିଜ୍ଞାନର ଗୁରୁତ୍ୱ ପ୍ରତି ତାର ତୀକ୍ଷ୍ଣ ଦୃଷ୍ଟି ରହିଥିଲା; ଦୈନନ୍ଦିନ ଜୀବନର କଳାକୁ କିପରି ଭାବରେ ସଙ୍ଗଠିତ କରିବାକୁ ହୁଏ ସେ ତାହା ଜାଣିଥିଲା ।

ମାତ୍ର ସେ ଦେଖିଲା ଯେ ପ୍ରକୃତ ଯଦି ଅପ୍ରାକୃତ ସହିତ ଠିକ୍ ଭାବରେ ସଂପର୍କିତ ନ ହୁଏ ତା ହେଲେ ତାର ପୂର୍ଣ୍ଣ ଅର୍ଥ ପ୍ରକଟିତ ହେବ ନାହିଁ । ସେ ଦେଖିଲା ଯେ ବିଶ୍ୱର ରହସ୍ୟ ମନୁଷ୍ୟର ସାଂପ୍ରତିକ ସଂପର୍କ ମାଧ୍ୟମରେ ବିଶ୍ଳେଷିତ ହୋଇ ପାରିବ ନାହିଁ କିମ୍ବା ବାହ୍ୟ ଚକ୍ଷୁରେ ଦେଖି ହେବ ନାହିଁ – ଅନ୍ତରାଳରେ ଅନ୍ୟ ଶକ୍ତିମାନ ରହିଛି–ମଣିଷ ମଧ୍ୟରେ ପ୍ରାୟ ତାର ଅଜ୍ଞାତରେ ଅନ୍ୟ ଶକ୍ତିମାନ ବିଦ୍ୟମାନ–ସେ କେବଳ ନିଜର କ୍ଷୁଦ୍ର ଅଂଶ ସଂପର୍କରେ ସଚେତନ । ଅଦୃଶ୍ୟ ସବୁବେଳେ ଦୃଶ୍ୟମାନକୁ ଘେରି ରହିଥାଏ–ଇନ୍ଦ୍ରିୟାତୀତ ଇନ୍ଦ୍ରିୟବାହ୍ୟକୁ ଢାଙ୍କି ରଖେ– ଠିକ୍ ଯେମିତି ଅସୀମ ସର୍ବଦା ସସୀମକୁ ପରିବେଷ୍ଟିତ କରେ । ସେ ମଧ୍ୟ ଦେଖିଥିଲା ନିଜକୁ ବଳି ଯିବାର ଏବଂ ପୂର୍ଣ୍ଣ ଭାବରେ ନିଜର ହୋଇ ଯିବାର ଶକ୍ତି ମଣିଷଠାରେ ଅଛି–ଏଇ ସବୁ ସତ୍ୟ ଏବେ ୟୁରୋପରେ ପରିଦୃଷ୍ଟ ହେବାକୁ ଆରମ୍ଭ କରିଛି ଏବଂ ଏବେ ମଧ୍ୟ ପରିଦୃଷ୍ଟ ହେଉଛି; ସାଧାରଣ ବୁଦ୍ଧିରେ ତାକୁ ବିଚାର କରିବା ଦୁରୂହ ବ୍ୟାପାର । ସେ ଦେଖିଥିଲା ମଣିଷ ଊର୍ଦ୍ଧ୍ୱରେ ଥିବା ଅସଂଖ୍ୟ ଦେବତା, ଦେବତାମାନଙ୍କ ଊର୍ଦ୍ଧ୍ୱରେ ଥିବା ଈଶ୍ୱର ଏବଂ ଈଶ୍ୱରଙ୍କ ଊର୍ଦ୍ଧ୍ୱରେ ନିଜର ଅବର୍ଣ୍ଣନୀୟ ଚିରନ୍ତନତା । ସେ ଦେଖିଥିଲା ଆମ ଜୀବନ ଊର୍ଦ୍ଧ୍ୱରେ ଅସଂଖ୍ୟ ଜୀବନ ରହିଛି–ଆମ ମନ ଊର୍ଦ୍ଧ୍ୱରେ ପାହାଡ଼ ପାହାଡ଼ ମନ ରହିଛି ଏବଂ ଏ ସବୁ ଊର୍ଦ୍ଧ୍ୱରେ ସେ ଦେଖିଥିଲା ଆତ୍ମାର ଦ୍ୟୁତି । ତା'ପରେ ସେ ଭାବାତୀତ ଦୃଷ୍ଟିରେ ଶାନ୍ତ ଏକାଗ୍ରତା, ଆଧ୍ୟାତ୍ମିକ କିମ୍ବା ପ୍ରାଞ୍ଜିକ ନୈତିକ ଅଥବା ପ୍ରାଣିକ ସାହାସରୁ ତାର କର୍ମ ବିରତ ହେଲା ନାହିଁ । କାରଣ ଏହା ଭୟ କିମ୍ବା କ୍ଷୁଦ୍ରତା ଜାଣି ନ ଥିଲା – ସେ ଘୋଷଣା କଲା ମଣିଷ ଯଦି ଜ୍ଞାନ ଓ ଇଚ୍ଛା ଶକ୍ତିକୁ ଠିକ ଭାବରେ ତାଲିମ ଦିଏ ତା ହେଲେ କୌଣସି ବିଷୟ ତା ହାତ ପାଖରୁ ଦୂରେଇ ଯିବ ନାହିଁ । ସେ ମନର ଏ ସବୁ ଶୈଳମାଳା ଅତିକ୍ରମ କରି ଆତ୍ମା ହୋଇ ପାରିବ, ଦେବତା ହୋଇ ପାରିବ, ଈଶ୍ୱର ହୋଇ ପାରିବ ଏବଂ ଅବର୍ଣ୍ଣନୀୟ ବ୍ରହ୍ମ ପାଲଟି ଯିବ । ଭାରତର ଉତ୍କର୍ଷ ପ୍ରମାଣିତ କରୁଥିବା ଯୁକ୍ତିଯୁକ୍ତ, ବାସ୍ତବତା, ବିଜ୍ଞାନ ଚେତନା ଓ ସଂହତ ପଦ୍ଧତି ମାଧ୍ୟମରେ ସେ ମାର୍ଗ ଅନ୍ୱେଷଣରେ ବ୍ରତୀ ହେଲା । ତେଣୁ ଯୁଗ ଯୁଗ ଧରି ଏଇ ଅନ୍ତର୍ଦୃଷ୍ଟି ଓ ଆଚରଣ ତାର ଆଧ୍ୟାତ୍ମିକତାରେ ଶକ୍ତିଶାଳୀ ଆତ୍ମିକ ମନୋଭାବ, ଅସୀମକୁ ଜାଣିବା ଓ ଧାରଣ କରିବା, ନିରାକରଣ ହୀନ ଧର୍ମ ଚେତନା, ଆଦର୍ଶ, ଯୋଗ, କଳା ଓ ଦର୍ଶନ ସ୍ୱାକ୍ଷରିତ ହୋଇଥିଲା...... ଗୋଟିଏ ଦିଗରେ ଅତୃପ୍ତ ଉଦାମତା, ନିଜକୁ ତନ୍ନ ତନ୍ନ କରି ଜାଣିବା ପାଇଁ ଜୀବନର ଅଭିଳାଷ ଅନ୍ୟ ପକ୍ଷରେ ସଂଗଠିତ ଚେତନା ଓ ବିଚାର ସମ୍ମତ ଶୃଙ୍ଖଳା, ସୁସଂହତ ଜ୍ଞାନ ଏବଂ ଉଚିତ ଛନ୍ଦ ଓ ପଦକ୍ଷେପ ଦ୍ୱାରା ଜୀବନ ପଥରେ ଗତି କରିବା ପାଇଁ ମନର ଅଭିଳାଷ । ଏପରି ଭାବେ ଅନ୍ତର୍ଲିଖିତ ଓ ପ୍ରାଧାନ୍ୟପ୍ରାପ୍ତ ଆଧ୍ୟାତ୍ମିକତା, ଅକ୍ଳାନ୍ତ ପ୍ରାଣିକ ସୃଜନଶକ୍ତି ଓ ଜୀବନ ଉତ୍ସାହ ଏବଂ ଉଭୟ ମଧ୍ୟରେ ଧ୍ୟାନରତ, ଗଭୀର ଭାବେ କର୍ମରେ ନିଯୁକ୍ତ ବୌଦ୍ଧିକ, ନୈତିକ ଓ କଳାତ୍ମକ ମନ ସମନ୍ୱିତ ଏକ ଶକ୍ତିଶାଳୀ, ଅନୁସନ୍ଧାନୀ ଓ ବିଚାରଶୀଳ ବୁଦ୍ଧି ପ୍ରାଚୀନ ସଂସ୍କୃତିର ଐକ୍ୟ ସୃଷ୍ଟି କରିଥିଲା ।

ଭାରତୀୟମାନଙ୍କର ବିଶ୍ୱାସ ଯେ ବେଦୋଧ୍ୟୟନ ହିଁ ସର୍ବଶ୍ରେଷ୍ଠ ଜ୍ଞାନ, ଏହା ଦ୍ୱାରା ମୃତ୍ୟୁକୁ ଜୟ କରାଯାଏ । ବେଦ ଶାଶ୍ୱତ ଆନନ୍ଦ ଜଗତକୁ ମାର୍ଗ ପ୍ରଦର୍ଶିତ କରେ । ବିଶ୍ୱର

ତାତ୍ପର୍ଯ୍ୟ ବୁଝିବା ପାଇଁ ମାନବବାଦ ସଂପର୍କରେ ଅବହିତ ହେବା ପାଇଁ ତଥା ଦିବ୍ୟତ୍ୱର ଆଲୋକରେ ଆତ୍ମାକୁ ଚିହ୍ନିବା ପାଇଁ ଭଗବାନ ଭାରତୀୟମାନଙ୍କୁ ବେଦ ପ୍ରଦାନ କରିଛନ୍ତି ।ଏହା ଅପୌରୁଷେୟ ଅର୍ଥାତ ମାନବ ସୃଷ୍ଟ ନୁହେଁ । ବେଦର ଆକ୍ଷରିକ ଅର୍ଥ ଜ୍ଞାନ । ଶାସ୍ତ୍ର କହିଲେ ଅନାଦି ଅନନ୍ତ ବେଦକୁ ବୁଝାଏ । ଦ୍ୱାଦଶ ଗୁଣର ଅଧିକାରୀ ହେବା ପାଇଁ ବେଦ ଆମକୁ ଉପଦେଶ ଦିଏ—

ତୃଦଲ ଅତୃଦଲସୋ ଅଦ୍ରୟୋଽଶ୍ରମଣା ଅଶୃଥିତା ଅମୃତ୍ୟବଃ ।
ଅନାତୁରା ଅଜରାଃ ସ୍ଥାମବିଷ୍ଣବଃ ସୁପୀବସୋ ଅତୃଷିତା ଅତୃଷ୍ଣଜଃ ।
(ଋକବେଦ ୧୦।୬୪।୧୧)

ବେଦ ବିଶ୍ୱବାସୀଙ୍କୁ ନିମ୍ନୋକ୍ତ ଦ୍ୱାଦଶ ଉପଦେଶ ପାଳନଦ୍ୱାରା ମହାନ ହେବା ପାଇଁ ଆହ୍ୱାନ ଜଣାଉଛନ୍ତି—

(୧) ହେ ମନୁଷ୍ୟ, ତୁମେ ଅବିଦ୍ୟା, ଅନ୍ଧକାର ଓ ଅଧର୍ମ ନାଶ କର ।

(୨) ଅଭେଦ୍ୟ ହୁଅ, ଯେପରି ସଂଶୟ, ବିଘ୍ନ ବାଧା, ନାସ୍ତିକତା ଓ ଅଧାର୍ମିକତା ତୁମ ମଧ୍ୟରେ ପ୍ରବେଶ ନ କରେ ।

(୩) ପର୍ବତ ପରି ସମୁଚ୍ଚ ହୁଅ, ମେଘ ପରି ଉଦାର ହୁଅ

(୪) ଶ୍ରମ ଭୀରୁ ହୁଅ ନାହିଁ

(୫) ଅଶିଥିଳ ହୁଅ । ଆଳସ୍ୟ, ପ୍ରମାଦ, ତୁମକୁ ସ୍ପର୍ଶ ନ କରୁ

(୬) ମୃତ୍ୟୁ ରହିତ ହୁଅ; ଅର୍ଥାତ ଚାରିତ୍ରିକ, ନୈତିକ, ଧାର୍ମିକ ମୃତ୍ୟୁ ନ ହେଉ

(୭) ରୋଗରହିତ ଓ ସୁସ୍ଥ ହୁଅ

(୮) ବାର୍ଦ୍ଧକ୍ୟ ରହିତ ହୁଅ । ନିୟମିତ ପାନାହାର, ବ୍ୟାୟାମ ତଥା ବ୍ରହ୍ମଚର୍ଯ୍ୟ ପାଳନ ଦ୍ୱାରା ବାର୍ଦ୍ଧକ୍ୟକୁ ପ୍ରତିହତ କର ।

(୯) ଉଦ୍ୟୋଗୀ, ପୁରୁଷାର୍ଥୀ ଏବଂ ପ୍ରଗତିଶୀଳ ହୁଅ ।

(୧୦) ହୃଷ୍ଟ ପୁଷ୍ଟ ହୁଅ । କ୍ଷୀଣକାୟ ହୁଅ ନାହିଁ ।

(୧୧) ସନ୍ତୁଷ୍ଟ ରହ

(୧୨) ମୋହରହିତ ନିସ୍ପୃହ ହୁଅ :

ଭାରତୀୟ ମାନେ ଜାଣିଥିଲେ :

ନର ଦେହ ନୁହେ ହୀନ ମୃତ୍ତିକା
ନାରାୟଣ ତାର ଜୀବନ ରସ
ମହାଚେତନାର ଅଂଶ ସେ ଏକ
ବିକାଶ ପାଇଁକି ଶରୀର ବାସ ।।

## ଉପନିଷଦ କାହାଣୀ

ବେଦ ମାନବ ଅନୁଭୂତିର ଆଦ୍ୟତମ ଅଭିବ୍ୟକ୍ତି । ଏହାର ଭାଷା ପ୍ରତୀକାତ୍ମକ । ଏହାର ଶୁଦ୍ଧତା ଅତୁଳନୀୟ । ଏହା ସାର୍ବଜନୀନ ସଂସ୍କୃତିରେ ବିଶ୍ୱାସୀ । ଗୁରୁଶିଷ୍ୟ ପରମ୍ପରା ଉପନିଷଦ ଯୁଗର ବିଶେଷ ଅବଦାନ । ପରମ ସତ୍ୟକୁ ଜାଣିଲେ ସବୁ ବିଷୟ ବୁଝିହୁଏ । ତେଣୁ ପରମତତ୍ତ୍ୱ ଜାଣିବା ପାଇଁ ଜୀବନବ୍ୟାପୀ ପ୍ରଯତ୍ନ କରିବାକୁ ହୁଏ । ଅନ୍ୟୁନ ୫,୦୦୦ ବର୍ଷର ଏହି ପ୍ରାଚୀନ ସଂସ୍କୃତିକୁ ଜଣେ ଅନ୍ୟ ଜଣକୁ ବୁଝାଇବା ସମ୍ଭବ ନୁହେଁ । ବିବିଧତା ଓ ବିଚିତ୍ରତା ମଧ୍ୟରେ ଐକ୍ୟ ରକ୍ଷାକରି ଭାରତ ନିଜ ସଂସ୍କୃତିର ବୈଶିଷ୍ଟ୍ୟ ଯୁଗେ ଯୁଗେ ପ୍ରତିପାଦିତ କରି ଆସିଛି । ସବୁ ମାର୍ଗରେ ପରିପୂର୍ଣ୍ଣତା ଲାଭ ନିମନ୍ତେ ଉଦ୍ୟମ କରିଛି । ମନ, ବୁଦ୍ଧି ଓ ଶରୀରର ସମନ୍ୱିତ ବିକାଶ ଆମ ସଂସ୍କୃତିର ଏକ ବିଶେଷ ଦିଗ । ସେଥିପାଇଁ ଆଚରଣ ବିଧି ଶାସ୍ତ୍ର ପୁରାଣମାନଙ୍କରେ ବର୍ଣ୍ଣିତ ହୋଇଛି । ସତ୍ୟଂବଦ, ଧର୍ମଂଚର - କ୍ଷୁଦ୍ର ବାକ୍ୟ ହେଲେହେଁ ତାର ମହତ୍ତ୍ୱ ଅପରିସୀମ । ସତ୍ୟକାମ, ଉପମନ୍ୟୁ, ନଚିକେତା, ଜାବାଳିଙ୍କ ଉପାଖ୍ୟାନ ପରିପୂର୍ଣ୍ଣ ଜୀବନ ଯାପନ ନିମନ୍ତେ ଆହ୍ୱାନ ବ୍ୟତୀତ ଅନ୍ୟ କିଛି ନୁହେଁ । ପଳାୟନ ନୁହେଁ, ବିଶ୍ୱାସ, ପ୍ରୟାସ ଓ ଆଶିଷ ହିଁ ସେମାନଙ୍କ ସାର୍ଥକତାର ଚାବିକାଠି ।

ହରପ୍ପା ଭାରତୀୟମାନଙ୍କ ବୈଷୟିକ ସିଦ୍ଧିର ସ୍ୱାକ୍ଷର ବହନ କରିଛି । ମହୀଶୂର ଓରିଏଣ୍ଟାଲ ଗ୍ରନ୍ଥାଳୟରେ ଥିବା ଭରଦ୍ୱାଜଙ୍କ ଶାସ୍ତ୍ରରେ ବିମାନ ବିଜ୍ଞାନର ଜଟିଳ ତତ୍ତ୍ୱ ବ୍ୟାଖ୍ୟା କରାଯାଇଛି । ଆୟୁର୍ବେଦ, ରସାୟନ କ୍ଷେତ୍ରରେ ମଧ୍ୟ ଭାରତର ସାଫଲ୍ୟ ବିଶ୍ୱବିଶ୍ରୁତ । ଆମ ଦେଶରେ ସାମାଜିକ ରୀତି ନୀତିଗୁଡ଼ିକ ସଂସ୍କାରଧର୍ମୀ । ବ୍ରତ, ଉପନୟନ, ବିବାହ, ଗୃହପ୍ରତିଷ୍ଠା ଏସବୁ ଜୀବନକୁ ଦିବ୍ୟାୟିତ କରିବା ନିମନ୍ତେ ଉଦ୍ଦିଷ୍ଟ । ତେଣୁ ଆମର ଶାନ୍ତିମନ୍ତ୍ର—"ସର୍ବେ ଭବନ୍ତୁ ସୁଖୀନଃ" ଆମର ପ୍ରାର୍ଥନା ; ଧୀୟୋୟନଃ ପ୍ରଚୋଦୟାତ୍—ଆମମାନଙ୍କର ବୁଦ୍ଧି ଜ୍ୟୋତିର୍ମୟ ହେଉ ।

## ବର୍ଣ୍ଣ ବୈଷମ୍ୟ ନାହିଁ

ବୈଦିକ ଯୁଗ ବା ପୁରାଣ ଯୁଗରେ ବର୍ଣ୍ଣ ବୈଷମ୍ୟର ନାମଗନ୍ଧ ନାହିଁ । ଶୂଦ୍ରମାନଙ୍କ ମଧ୍ୟରେ ମହର୍ଷି ରହିଛନ୍ତି, ବ୍ରାହ୍ମଣଙ୍କ ମଧ୍ୟରେ ଧୁନ୍ଧୋଳି ରହିଛନ୍ତି । ଲିଙ୍ଗଭେଦ, ଜାତିଭେଦ ନାହିଁ । ବ୍ୟାସ, ବାଲ୍ମୀକିଙ୍କ ବାସ୍ତବତା ଅପେକ୍ଷା ପ୍ରତୀକାତ୍ମକ ମୂର୍ତ୍ତି ମନକୁ ଅଧିକ ସ୍ପର୍ଶ କରେ । ପୁରାଣ ସଂସ୍କୃତି ଧର୍ମ ଭିତ୍ତିକ ଜୀବନ ଯାପନ ପାଇଁ ଶିକ୍ଷା ଦିଏ । ଜୀବନରେ ମୂଲ୍ୟବୋଧର ବିକାଶ ଘଟାଇବା ପାଇଁ ଚରିତ୍ର ମାଧ୍ୟମରେ ଉଚ୍ଚତର ମୂଲ୍ୟବୋଧର ବିଜୟ ଘୋଷିତ କରେ । ଶିବି, ସାବିତ୍ରୀ, ମାର୍କଣ୍ଡେୟ, ହରିଶ୍ଚନ୍ଦ୍ର ଏ ସବୁର ଦୃଷ୍ଟାନ୍ତ ।

ଗୀତା ହେଉଛି ଆମ ସଂସ୍କୃତିର ଆତ୍ମା । ଏଥିରେ କର୍ମ, ଭକ୍ତି ଓ ଜ୍ଞାନାଚରଣର ପନ୍ଥା ଏବଂ ବିଧିବିଧାନ ବିସ୍ତୃତ ଭାବରେ ବୁଝାଇ ଦିଆଯାଇଛି । ଗୀତାରେ ଆମର ଖାଦ୍ୟପେୟ କିପରି ହେବା ଉଚିତ କୁହାଯାଇଛି । ବେଦ ଉପନିଷଦ ଏବଂ ପୁରାଣର ଉପଦେଶକୁ ଯେତେବେଳେ ବ୍ୟକ୍ତି ନିଜର ସ୍ୱାର୍ଥ ହାସଲ ପାଇଁ ପ୍ରୟୋଗ କଲା, ଯଜ୍ଞବିଧି ଯେତେବେଳେ ନିନ୍ଦିତ ହେଲା, ଯେତେବେଳେ ପଶୁବଳି ପ୍ରବଳ ହେଲା, ସେତେବେଳେ ବୁଦ୍ଧ ମହାବୀରଙ୍କର ଆବିର୍ଭାବ ଘଟିଲା । ଉଭୟ ପ୍ରେମ ଓ ଅହିଂସା ମନ୍ତ୍ର ପ୍ରଚାର କଲେ । ବୁଦ୍ଧ ପଞ୍ଚଶୀଳ ପ୍ରବର୍ତ୍ତିତ କଲେ, ନୈତିକ ଆଚରଣ ଉପରେ ଅଧିକ ଗୁରୁତ୍ୱ ଆରୋପ କଲେ ।

୭୮୦ ଖ୍ରୀଷ୍ଟାବ୍ଦରେ ବୈଦିକ ସଂସ୍କୃତି ପୁନଃପ୍ରବର୍ତ୍ତିତ ହେଲା ଆଚାର୍ଯ୍ୟ ଶଙ୍କରଙ୍କ ନେତୃତ୍ୱରେ । ଶଙ୍କର ଥିଲେ ଭାରତୀୟ ଜ୍ଞାନର ମୂର୍ତ୍ତ ପ୍ରତୀକ । ରାମାନୁଜ ଓ ମାଧ୍ୱାଚାର୍ଯ୍ୟ ଭକ୍ତି ସ୍ରୋତ

ପ୍ରବାହିତ କଲେ । ସନାତନ ସଂସ୍କୃତି ଆରଥରେ ପ୍ରମାଣିତ କଲା ଭାରତର ଅର୍ଥ (ଭା) ଆଲୋକ (ରତ) ପ୍ରକାଶକାରୀ: ଆତ୍ମାଲୋକରେ ଉଦ୍ଭାସିତ ହୋଇ ଜୀବନ ଯାପନ କରିବା ଭାରତବାସୀଙ୍କର ବୈଶିଷ୍ଟ୍ୟ । ଏ ଦେଶରେ ସଙ୍ଗୀତ ସାହିତ୍ୟ ସ୍ଥାପତ୍ୟର ଲକ୍ଷ୍ୟ ଜୀବନକୁ ଶୁଦ୍ଧତର ଓ ଶୁଭ୍ରତର କରିବା । ନିଜକୁ ଦେବରେ ରୂପାନ୍ତରିତ କରିବା ।

ମଧ୍ୟ ଯୁଗରେ ଆଧ୍ୟାତ୍ମିକ ସ୍ୱାର୍ଥପରତା ପୁଣି ବୃଦ୍ଧି ପାଇଲା । ଆଫଗାନ, ମୁସଲମାନ ବା ଇଂରେଜ ଶାସନ କିନ୍ତୁ ଭାରତୀୟ ସଂସ୍କୃତିର ପ୍ରବାହ ବ୍ୟାହତ କରିପାରିଲା ନାହିଁ । ଆକବରଙ୍କ ଭଳି ସମ୍ରାଟ ଉଦାରତାର ପରମ ଦୃଷ୍ଟାନ୍ତ । ମୀରାବାଈ, ଆକା ମହାଦେବୀ ଥିଲେ ଭାରତୀୟ ଭାବଧାରାର ମୂର୍ତ୍ତିପ୍ରତୀକ ।

## ଆଧୁନିକ ଯୁଗ

ଆମ ସଂସ୍କୃତିର ନବ ଜାଗରଣ ଆଣିଲେ ରାଜା ରାମ ମୋହନ ରାୟ । ସେ ପାଶ୍ଚାତ୍ୟ ଶିକ୍ଷା ପଦ୍ଧତି ପ୍ରଚଳିତ କଲେ । ହିନ୍ଦୁ ଧର୍ମରୁ କୁସଂସ୍କାର ଦୂର କରିବା ପାଇଁ ବ୍ରହ୍ମ ସମାଜ ପ୍ରତିଷ୍ଠା କଲେ । ଦୟାନନ୍ଦ ସରସ୍ୱତୀ ଆର୍ଯ୍ୟସମାଜ ପ୍ରତିଷ୍ଠା କଲେ ଏବଂ ଭାରତୀୟର ଆଚରଣ ଉପରେ ବିଶେଷ ଗୁରୁତ୍ୱ ଦେଲେ । ସେ ବେଦ ବିଦ୍ୟାର ଅନ୍ତରାର୍ଥ ଉଦ୍ଘାଟିତ କଲେ ଏବଂ ନିରଂହକାର ଜୀବନଯାପନ ପାଇଁ ଶ୍ରମ ଓ ସେବା ସପକ୍ଷରେ ଯୁକ୍ତି ବାଢ଼ିଥିଲେ ।

ରାମକୃଷ୍ଣ ପରମହଂସ ଏବଂ ସ୍ୱାମୀ ବିବେକାନନ୍ଦ ସର୍ବ-ଧର୍ମ ସମନ୍ୱୟ କ୍ଷେତ୍ରରେ ନୂତନ ଭୂମିକା ଗ୍ରହଣ କରିଥିଲେ । ରାମକୃଷ୍ଣ ନୀତି କଥା ମାଧ୍ୟମରେ ଧର୍ମାଦର୍ଶ ବୁଝାଇଥିଲେ । ବିବେକାନନ୍ଦ ଭାରତୀୟମାନଙ୍କୁ ଜୀବନରେ ମହାନ୍ ଲକ୍ଷ୍ୟ ହାସଲ ଦିଗରେ ସଂକଳ୍ପବଦ୍ଧ ହେବା ପାଇଁ ଆହ୍ୱାନ ଜଣାଇ-ଥିଲେ । ଶ୍ରୀ ଅରବିନ୍ଦ ଜାତୀୟତାବାଦ ଏବଂ ପୂର୍ଣ୍ଣାଙ୍ଗ ଯୋଗଦ୍ୱାରା ବ୍ୟକ୍ତିତ୍ୱ ସମୃଦ୍ଧ କରିବାପାଇଁ ଉପଦେଶ ଦେଇଥିଲେ । ଗାନ୍ଧିଜୀ, ନେହେରୁ ଗୋଖେଲେ, ତିଳକ, ରବୀନ୍ଦ୍ରନାଥ ଥିଲେ ସତ୍ୟନିଷ୍ଠ ଦେଶବ୍ରତୀ । ପ୍ରାଣ ପାତକରି ଦେଶ ଓ ଜାତିକୁ ସମୃଦ୍ଧ କରିବା ପାଇଁ ସେମାନେ ଭାରତବାସୀଙ୍କୁ ଉତ୍ସାହିତ କରିଥିଲେ । ରାମମୋହନଙ୍କ ପରବର୍ତ୍ତୀ କାଳୀନ ଭାରତୀୟ ସଂସ୍କୃତି ସମ୍ପର୍କରେ ଡକ୍ଟର ଗୋକାକ କହିଛନ୍ତି –

*ଆତ୍ମାଜ୍ଞାନ ଓ ଆତ୍ମସଂଯମ ପ୍ରାଚୀନ ଭାରତର ସଂସ୍କୃତିରେ ଗୁରୁତ୍ୱ ଲାଭ କରିଥିଲା । ଆଧୁନିକ ଯୁଗରେ ଏହା ସହିତ ସାମୂହିକ ଆଧ୍ୟାତ୍ମିକ ଚେତନା ସଂଯୋଜିତ ହେଲା ।

*ପଦାର୍ଥର ଦୈବତ୍ୱ ପୁନର୍ପୋଷିତ ହେଉ । ଏହା ଆକାଶ ପୃଥିବୀର ମିଳନ ଭଳି ଆଦର୍ଶ ଓ ବାସ୍ତବର ମହାମିଳନ ।

*ମଣିଷର ସାଂସ୍କୃତିକ ଏବଂ ଆଧ୍ୟାତ୍ମିକ ପରିପୂର୍ଣ୍ଣତା ମଧ୍ୟରେ ତା ଜୀବନର ପ୍ରବୃତ୍ତି, ଧୀ, ଅନୁଭୂତି ଓ ଅନ୍ତର୍ଦୃଷ୍ଟି ସମସ୍ତ ପ୍ରତିଭାର ପୂର୍ଣ୍ଣ ବିକାଶ ଅନ୍ତର୍ଗତ ହେବା ଉଚିତ ।

*ପାପ ପ୍ରତି ମନୋଭାବ । ପାପ ଏକ ଦୁର୍ଗୁଣ ଏହାକୁ ସୁଗୁଣରେ ରୂପାନ୍ତରିତ କରାଯିବା ଉଚିତ । ପାପର ଅଭିବୃଦ୍ଧି ଯୋଗୁ ଭଗବାନ ମର୍ତ୍ତ୍ୟକୁ ଆସନ୍ତି ।

*ବ୍ୟକ୍ତିଗତ ମୁକ୍ତି ମଣିଷର ଶେଷ ଲକ୍ଷ୍ୟ ନୁହେଁ, ପ୍ରେମ ସମୃଦ୍ଧ ଆଦର୍ଶ ସମାଜ ପ୍ରତିଷ୍ଠା ହିଁ ପ୍ରକୃତ ଆଭିମୁଖ୍ୟ । ସାମୂହିକ ଚେତନା ସ୍ୱକୀୟ ରୀତିରେ ପରମ ସତ୍ୟ ଉପଲବ୍ଧି କରିବା ଉଚିତ ।

*ଆତ୍ମା, ବିଶ୍ୱ ଆତ୍ମା ଏବଂ ଭାବାତୀତ ଦୈବତ୍ୱ ଅସ୍ତିତ୍ୱର ଏଇ ତ୍ରିସୂତ୍ର ଯେତେବେଳେ ଏକୀଭୂତ ହୁଏ ସେତେବେଳେ ଆମେ ମହା ଜୀବନର ସନ୍ଧାନ ପାଉ ।

ସତ୍ୟ ହେଉଛି ଭାରତୀୟ ସଂସ୍କୃତିର ନିଃଶ୍ୱାସ । ବୈଷୟିକ, ମାନସିକ ଓ ଆଧ୍ୟାତ୍ମିକ ପ୍ରଗତି ହାସଲ ପାଇଁ ଆମ ଦେଶରେ ଅନାଦି କାଳରୁ ସନାତନ ଧର୍ମ ଅନୁସୃତ ହୋଇଛି । ପ୍ରେମ, ଶାନ୍ତି, ଅହିଂସା, ଦୟା, କ୍ଷମା, ସହିଷ୍ଣୁତା, ଶୁଚିତା ସବୁ ଯୁଗରେ ସବୁ ଧର୍ମର ଲୋକମାନଙ୍କ ପାଇଁ । ତେଣୁ ହୃଦୟ ଶୁଦ୍ଧତର ଶୁଭ୍ରତର କରିବାହିଁ ଭାରତୀୟ ସଂସ୍କୃତିର ଆଦର୍ଶ । ମୂଲ୍ୟବୋଧ ସମ୍ପର୍କରେ ଜ୍ଞାନ ହାସଲ ଏବଂ ସେହି ଜ୍ଞାନକୁ ଆଚରଣରେ ପ୍ରକଟିତ କରିବାକୁ ହେବ । ତାହାହେଲେ ଆମର ଯାତ୍ରା ସଫଳ ହେବ । ଆମେ ଅସତ୍‌ରୁ ସତ୍‌କୁ, ଅନ୍ଧାରରୁ ଆଲୋକକୁ, ଏବଂ ମୃତ୍ୟୁରୁ ଅମୃତକୁ ଯାଇପାରିବା ।

ଆମେମାନେ ଭାରତୀୟ ସଂସ୍କୃତି ଜାଣିବା, ବୁଝିବା ଅଥବା ଆଚରଣ କରିବା ଯେତେ ଜରୁରୀ ତାହାଠାରୁ ବେଶୀ ଆବଶ୍ୟକ ଆମର ଭବିଷ୍ୟତ ବଂଶଧରମାନଙ୍କୁ ଏହି ଆଦର୍ଶରେ ଉଦ୍‌ବୁଦ୍ଧ କରିବା । ଏଇ ସଂସ୍କୃତି ସନାତନ । ସନାତନର ଅର୍ଥ ନିତ୍ୟ ନୂତନ । କହିବା ବାହୁଲ୍ୟ ଯେ, ଏଇ ସଂସ୍କୃତି ଆମ ମନରୁ କ୍ଳାନ୍ତି ଅବସାଦ ଦୂର କରିବ ଏବଂ ଆନନ୍ଦ ଓ ଆଲୋକ ଭରିଦେବ । ଆନନ୍ଦାତ୍ ଇମାନି ଭୂତାନି ଜାୟନ୍ତେ

ସ୍ୱାଧୀନତା ହେଉଛି, ଜାତିର ଏକ ଅନମନୀୟ ଆତ୍ମଶକ୍ତି, କଠୋର ସାଧନା ଓ ସଙ୍କଳ୍ପର ପ୍ରତୀକ ।

ଜାନକୀ ବଲ୍ଲଭ ପଟ୍ଟନାୟକ

# ଜୟ ଜୟ ଭାରତ ଜନନୀ ନମସ୍ତେ

ଶ୍ରୀ ଉଦୟ ନାରାୟଣ ପାଠିଶର୍ମ୍ମା

(ବସନ୍ତ ରାଗେଣ ଗୀୟତେ ।)

—୧—

ନଗ-କୁଳ-ନାୟକ-ତୁଙ୍ଗ-ହିମାଳୟ-ହୀରକ-ମୁକୁଟ-ବତଂସେ !
ତରଳ-ତରଙ୍ଗ-ତରଣିତନୟାସିତ-ବେଣି-କଳିତ-ସୁମ-ହଂସେ !
ଜୟ ଜୟ ଭାରତଜନନି ! ନମସ୍ତେ
କୀର୍ତ୍ତିବିଶୋଭିନି ! ବୈଭବଶାଳିନି ! ନିତ୍ୟ-ନିଖିଳ-ଜନ-ଶସ୍ତେ ॥

—୨—

ସହ୍ୟ-ମହେନ୍ଦ୍ର-କୁଳାଚଳ-ଯାମଳ-କୁଣ୍ଡଳ-ମଣ୍ଡିତ-କର୍ଣ୍ଣେ !
ଅମର-ସରିଦମଳ-ମୌକ୍ତିକମାଳିନି ! ନିର୍ଝର-ବସତି-ସବର୍ଣ୍ଣେ !
ଜୟ ଜୟ ଭାରତଜନନି ! ନମସ୍ତେ
କୀର୍ତ୍ତିବିଶୋଭିନି ! ବୈଭବଶାଳିନି ! ନିତ୍ୟ-ନିଖିଳ-ଜନ-ଶସ୍ତେ ॥

—୩—

ବିନ୍ଧ୍ୟ-ଧରାବଳି-ମଞ୍ଜୁଳ-ମେଖଳିକା-ପରିଲସଦବଲଗ୍ନେ !
ଊର୍ମ୍ମିଳ-ନୀରଧି-ନୀର-ଦୁକୂଳିନି ! ସେତୁ-ସୁନୂପୁର-ଲଗ୍ନେ !
ଜୟ ଜୟ ଭାରତଜନନି ! ନମସ୍ତେ
କୀର୍ତ୍ତିବିଶୋଭିନି ! ବୈଭବଶାଳିନି ! ନିତ୍ୟ-ନିଖିଳ-ଜନ-ଶସ୍ତେ ॥

—୪—

ତ୍ୱମସି ସଲୋହିତ-ସିନ୍ଧୁ-ପ୍ରାଚୀ-ବ୍ରାହ୍ମୀ-ମେକଳକନ୍ୟା
ତାପୀ-ଗୋଦା-କୃଷ୍ଣା-ଭଦ୍ରା-କାବେରୀ-ଜଳ-ଧନ୍ୟା ।
ଜୟ ଜୟ ଭାରତଜନନି ! ନମସ୍ତେ
କୀର୍ତ୍ତିବିଶୋଭିନି ! ବୈଭବଶାଳିନି ! ନିତ୍ୟ-ନିଖିଳ-ଜନ-ଶସ୍ତେ ॥

—୫—

ଭାର୍ଗବ-ରାଘବ-ମାଧବ-ପାଦ-ସରୋଜ-ପରାଗ-ପବିତ୍ରେ !
ଜୀନ-ତଥାଗତ-ଶଙ୍କର-ନାନକ-ଘୋଷିତ-ବାଦ-ବିଚିତ୍ରେ !
ଜୟ ଜୟ ଭାରତଜନନି ! ନମସ୍ତେ
କୀର୍ତ୍ତିବିଶୋଭିନି ! ବୈଭବଶାଳିନି ! ନିତ୍ୟ-ନିଖିଳ-ଜନ-ଶସ୍ତେ ॥

—୬—

ଖ୍ରିଷ୍ଟ-ମହମ୍ମଦ-ବଦନ-ବିନିଃସୃତ-ବଚନ-ସୁଧା-ରସ-କୋଷେ !
ଜ୍ଞାନ-ବିଭାକର-ଖର-କର-ନିର୍ଜ୍ଜିତ-ଭୌତିକତା-ଘନ-ଦୋଷେ !
ଜୟ ଜୟ ଭାରତଜନନି ! ନମସ୍ତେ
କୀର୍ତ୍ତିବିଶୋଭିନି ! ବୈଭବଶାଳିନି ! ନିତ୍ୟ-ନିଖିଳ-ଜନ-ଶସ୍ତେ ॥

—୭—

ଲଣ୍ଠନ-ମଣ୍ଡନ-ଚଣ୍ଡ-କୁଶାସନ-ଦଣ୍ଡ-ବିଖଣ୍ଡନ-ବୁଦ୍ଧେ !
ତିଳକ-ଲଜପତ-ଭଗତ-ଶୁକ-ଜୀବିତପାତ-କଥା-ସ୍ମୃତି-ଶୁଦ୍ଧେ !
ଜୟ ଜୟ ଭାରତଜନନି ! ନମସ୍ତେ
କୀର୍ତ୍ତିବିଶୋଭିନି ! ବୈଭବଶାଳିନି ! ନିତ୍ୟ-ନିଖିଳ-ଜନ-ଶସ୍ତେ ॥

—୮—

ଗାନ୍ଧି-ଜବାହର-ଶାନ୍ତି-ସୁଶୀଳିତ-ନୟ-ନିରପେକ୍ଷ-ଦୁରନ୍ତେ !
ଜନଗଣ-କଣ୍ଠ-ସମୁଦ୍‌ଗତ-"ଜନଗଣ"-ଗାନ-ନିନାଦିତ-ଦିଗନ୍ତେ !
ଜୟ ଜୟ ଭାରତଜନନି ! ନମସ୍ତେ
କୀର୍ତ୍ତିବିଶୋଭିନି ! ବୈଭବଶାଳିନି ! ନିତ୍ୟ-ନିଖିଳ-ଜନ-ଶସ୍ତେ ॥

—୯—

ତ୍ରିରୁଚି-ବିଭାସିତ-ଚକ୍ର-ସମଞ୍ଚିତ-ମୁକ୍ତ-ପତାକିନି ! ରମ୍ୟେ !
ଦୀପ୍ତି-ଶିଖାବଳ-ରଙ୍ଗ-ବିନୋଦିନି ! ଜନଗଣରାଗିଣି ! ନମ୍ୟେ !
ଜୟ ଜୟ ଭାରତଜନନି ! ନମସ୍ତେ
କୀର୍ତ୍ତିବିଶୋଭିନି ! ବୈଭବଶାଳିନି ! ନିତ୍ୟ-ନିଖିଳ-ଜନ-ଶସ୍ତେ ॥

—୧୦—

ବିଶ୍ୱହିତୈଷିଣି ! ଶାନ୍ତିବିଘୋଷିଣି ! ମାନବତନ୍ତ୍ର-ଗରିଷ୍ଠେ !
ଶୋଷଣ-ପେଷଣ-ଘୋର-ବିରୋଧିନି ! ସାମ୍ୟ-ବିଚାର-ବରିଷ୍ଠେ !
ଜୟ ଜୟ ଭାରତଜନନି ! ନମସ୍ତେ
କୀର୍ତ୍ତିବିଶୋଭିନି ! ବୈଭବଶାଳିନି ! ନିତ୍ୟ-ନିଖିଳ-ଜନ-ଶସ୍ତେ ॥

ସହକାରୀ ନିର୍ଦ୍ଦେଶକଃ,
ରାଜ୍ୟ-ପରିସଂଖ୍ୟାନାର୍ଥନୀତି-ସଂସ୍ଥା,
ଭୁବନେଶ୍ୱରମ୍

# ପ୍ରଗତି ପ୍ରସଙ୍ଗ

## ପୁରୀ ସହରର ସର୍ବାଙ୍ଗୀନ ସମୃଦ୍ଧି କରାଯାଉଛି

### ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ

ରାଜ୍ୟର ପ୍ରାଚୀନତମ ସହର ଓ ପବିତ୍ର ତୀର୍ଥସ୍ଥାନ ଭାବରେ ସୁବିଦିତ ପୁରୀ ସହରର ସର୍ବାଙ୍ଗୀନ ଉନ୍ନତି ଦିଗରେ ସରକାର ବିଶେଷ ପଦକ୍ଷେପ ନେଉଛନ୍ତି ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପ୍ରକାଶ କରିଛନ୍ତି ।

ଜୁନ ୨୯ ତାରିଖ ସନ୍ଧ୍ୟାରେ ପୁରୀଠାରେ ପୂର୍ତ୍ତବିଭାଗ ଦ୍ୱାରା ନିର୍ମିତ 'ନିର୍ମାଣ ନିବାସ' ନାମକ ତ୍ରିତଳ ବିଶିଷ୍ଟ ଏକ ବିରାଟ ଡ଼ାକବଙ୍ଗଳା ଉଦ୍‌ଘାଟନକରି ମୁଖ୍ୟମନ୍ତ୍ରୀ କହିଲେ ଯେ ପୁରୀ ସହରର ରାସ୍ତାଘାଟ ଓ ଶିକ୍ଷାନୁଷ୍ଠାନ ନିର୍ମାଣ ଏବଂ ପାନୀୟ ଜଳଯୋଗାଣ ଇତ୍ୟାଦି ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ ତ୍ୱରାନ୍ୱିତ ହୋଇଛି । ଏହା ବ୍ୟତୀତ ଏହାକୁ ଏକ ବିଶିଷ୍ଟ ପର୍ଯ୍ୟଟନ କେନ୍ଦ୍ରରେ ପରିଣତ କରିବା ଲାଗି ପର୍ଯ୍ୟଟକମାନଙ୍କ ସୁବିଧା ପାଇଁ ସହରର ବିଭିନ୍ନ ସ୍ଥାନରେ କେତେକ ବଡ଼ ହୋଟେଲ ନିର୍ମିତ ହେଲଣି । ତଥାପି ମଧ୍ୟମ ଆୟକାରୀ ପର୍ଯ୍ୟଟକମାନଙ୍କ ପାଇଁ ଏଠାରେ ସସ୍ତା ଧରଣର ବହୁ ସଂଖ୍ୟକ ହୋଟେଲ ନିର୍ମାଣ କରିବା ଆବଶ୍ୟକ ବୋଲି ସେ ମତବ୍ୟକ୍ତ କରିଥିଲେ । ବର୍ତ୍ତମାନ ସମୁଦ୍ର ବେଳାଭୂମିରେ ୨୫ ଲକ୍ଷ ଟଙ୍କା ବ୍ୟୟରେ ୪୮ ଶଯ୍ୟା ବିଶିଷ୍ଟ ଏକ ବିରାଟ ହୋଟେଲ ନିର୍ମିତ ହେଉଛି ଏବଂ ସଂସ୍କୃତ ବିଶ୍ୱବିଦ୍ୟାଳୟରେ ୫୦ ଲକ୍ଷ ଟଙ୍କା ବ୍ୟୟରେ ଏକ ପାଠାଗାର ବେସରକାରୀ ଉଦ୍ୟମରେ ନିର୍ମାଣ ପାଇଁ ଉଦ୍ୟମ ହେଉଛି । ଏହା ବ୍ୟତୀତ ସ୍ୱର୍ଗଦ୍ୱାର ଶ୍ମଶାନର ରକ୍ଷଣାବେକ୍ଷଣ କରିବା, ମନ୍ଦିର ପ୍ରାଙ୍ଗଣରେ ମହାପ୍ରସାଦ ସେବନଶାଳା ଏବଂ ସହରରେ ଏକ ଆଧୁନିକ ଟାଉନ୍‌ହଲ୍ ନିର୍ମାଣ ଦିଗରେ ବ୍ୟବସ୍ଥା କରାଯିବ ବୋଲି ଶ୍ରୀ ପଟ୍ଟନାୟକ ସୂଚନା ଦେଇଥିଲେ । ସହର ମଧ୍ୟରେ କୌଣସି କଳକାରଖାନା ନିର୍ମିତ ହେବନାହିଁ ବୋଲି ଦର୍ଶାଇ ମୁଖ୍ୟମନ୍ତ୍ରୀ କହିଲେ ଯେ ଏତଦ୍ୱାରା ସହରର ବାୟୁମଣ୍ଡଳ ଓ ପରିବେଶ ଦୂଷିତ ହେବନାହିଁ । ବର୍ତ୍ତମାନ ନବନିର୍ମିତ ଡ଼ାକବଙ୍ଗଳା ପର୍ଯ୍ୟଟକମାନଙ୍କ ଅବସ୍ଥାନ ପାଇଁ ବିଶେଷ ସହାୟକ ହେବ ବୋଲି ଆଶା ପ୍ରକାଶ କରି ମୁଖ୍ୟମନ୍ତ୍ରୀ କହିଲେ ଯେ ଡ଼ାକବଙ୍ଗଳା ନିକଟସ୍ଥ ଗାନ୍ଧୀଜୀଙ୍କ ପ୍ରତିମୂର୍ତ୍ତିର ରକ୍ଷଣାବେକ୍ଷଣ ଦାୟିତ୍ୱ ପୂର୍ତ୍ତ ବିଭାଗ ବହନ କରିବେ । ସହରର ଜଳ ନିଷ୍କାସନ ଏକ ପ୍ରଧାନ ସମସ୍ୟା ବୋଲି ଉଲ୍ଲେଖ କରି ସେ କହିଲେ ଯେ ଏହାର ସମାଧାନ ପାଇଁ ସରକାର ଆବଶ୍ୟକ ଅର୍ଥ ଯୋଗାଇ ଦେବେ ।

ଏହି ଉତ୍ସବରେ ପୂର୍ତ୍ତ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ଅଧ୍ୟକ୍ଷତା କରି କହିଲେ ଯେ ଗତବର୍ଷ ଜାନୁଆରୀ ପହିଲାରେ ଏହାର ଭିତ୍ତିପ୍ରସ୍ତର ସ୍ଥାପିତ ହୋଇ ଚଳିତ ବର୍ଷ ଜୁନ୍ ୨୮ ତାରିଖରେ ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହୋଇଛି । ମକଦ୍ଦମା ଲାଗି ରହିଥିବାରୁ ଗତବର୍ଷରେ ପ୍ରାୟ ୬ ମାସ ଯାଏ ନିର୍ମାଣ କାର୍ଯ୍ୟ ବନ୍ଦ ହୋଇଥିଲା । ତୃତୀୟ ମହଲକୁ ମାତ୍ର ୫୫ ଦିନ ମଧ୍ୟରେ ସଂପୂର୍ଣ୍ଣ କରାଯାଇଛି ବୋଲି ଦର୍ଶାଇଥିଲେ ।

ପ୍ରାରମ୍ଭରେ ବିଭାଗୀୟ ଶାସନ ସଚିବ ତଥା ଯନ୍ତ୍ରୀ ମୁଖ୍ୟ ଶ୍ରୀ ପ୍ରହଲ୍ଲାଦ ପଟ୍ଟନାୟକ ସ୍ୱାଗତ ଭାଷଣ ପ୍ରସଙ୍ଗରେ କହିଲେ ଯେ ୨୬ ଲକ୍ଷ ୨୪ ହଜାର ଟଙ୍କା ବ୍ୟୟ ଅଟକଳରେ ନିର୍ମିତ ଏହି ନିବାସରେ ସମୁଦାୟ ୧୩ଟି ଦ୍ୱି-ଶଯ୍ୟା ବିଶିଷ୍ଟ 'ସୁଟ୍' ରହିଛି । ଦୁଇବର୍ଷ ମଧ୍ୟରେ କୌଣସି ପ୍ରକଳ୍ପର ନିର୍ମାଣ ପାଇଁ ପୂର୍ବଭଳି ସିମେଣ୍ଟ ଓ ଲୁହାଛଡ଼ର ଅଭାବ ରହୁନାହିଁ ବୋଲି ସୂଚନା ଦେଇ ଶ୍ରୀ ପଟ୍ଟନାୟକ ଏ ଦିଗରେ ପୂର୍ତ୍ତମନ୍ତ୍ରୀଙ୍କ ଆନ୍ତରିକ ଉଦ୍ୟମ ରହିଛି ବୋଲି କହିଥିଲେ ।

---

## ଚକବନ୍ଦୀ ଉତ୍ପାଦନ ବୃଦ୍ଧିରେ ସହାୟକ ହେବ

ଗତ ଜୁଲାଇ ୨୩ ତାରିଖ ଦିନ ସମ୍ବଲପୁର ଜିଲ୍ଲାର ରେଙ୍ଗାଲି ନିକଟସ୍ଥ ବିଶାଳଖିଣ୍ଡାଠାରେ ଏକ ସାଧାରଣ ସଭାରେ ଉଦ୍‌ବୋଧନ ଦେଇ ରାଜସ୍ୱ ଓ ପରିବହନ ମନ୍ତ୍ରୀ ଶ୍ରୀ ବାସୁଦେବ ମହାପାତ୍ର କହିଲେ ଯେ କୃଷି କ୍ଷେତ୍ରରୁ ଅଧିକ ଉତ୍ପାଦନ ଲକ୍ଷ୍ୟରେ ରାଜ୍ୟ ସରକାର ଚକବନ୍ଦୀ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରୁଛନ୍ତି । ଜଳସେଚନ ସୁବିଧା ତଥା କୃଷି କ୍ଷେତ୍ରରେ ବୈଜ୍ଞାନିକ ପ୍ରଣାଳୀର ପ୍ରୟୋଗ ପାଇଁ ବଡ଼ ବଡ଼ ଜମି ଦରକାର । ସେଥିପାଇଁ ଛୋଟ ଛୋଟ ଜମିକୁ ଭାଙ୍ଗି ଚାଷୀର ସୁବିଧା ପାଇଁ ଗୋଟିଏ ଗୋଟିଏ ସ୍ଥାନରେ ବଡ଼ ବଡ଼ ଚକମାନ ଦିଆଯାଉଛି । ଏହି ଉତ୍ସବରେ ରାଜସ୍ୱ ମନ୍ତ୍ରୀ ଶ୍ରୀ ମହାପାତ୍ର ୧୨୦ ଜଣ ଭୂମିହୀନଙ୍କୁ ୮୪ ଏକର ଜମିର ପଟ୍ଟା ବଣ୍ଟନ କରିଥିଲେ । ଏବଂ ସେହି ଜମିକୁ ଉଠିଆ କରିବା ପାଇଁ ୯୯ ଜଣଙ୍କୁ ୩୦,୬୦୦ ଟଙ୍କା ଆର୍ଥିକ ସାହାଯ୍ୟ ବଣ୍ଟନ କରିଥିଲେ । ଭାଷଣ ପ୍ରସଙ୍ଗରେ ଶ୍ରୀ ମହାପାତ୍ର କହିଲେ ଯେ ଚକବନ୍ଦୀ କାର୍ଯ୍ୟକୁ ଠିକ୍ ଭାବେ କାର୍ଯ୍ୟକାରୀ କରିବାକୁ ରାଜ୍ୟ ସରକାର କେବଳ ଜଳସେଚିତ ଅଞ୍ଚଳରେ ଏହାକୁ କାର୍ଯ୍ୟକାରୀ କରାଉଛନ୍ତି । ଏହି

କାର୍ଯ୍ୟକ୍ରମରେ ସାଧାରଣ କୃଷକମାନଙ୍କର ଅଧିକ ସାହାଯ୍ୟ
ସହଯୋଗ ପାଇବା ପାଇଁ ଚକବନ୍ଦୀ ପାଇଁ ଥିବା ଗ୍ରାମ୍ୟ କମିଟିରେ
ଶତକଡ଼ା ୭୫ ଭାଗ କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କ ମତ ନିଆଯାଇଛି ।
ଗ୍ରାମ୍ୟ କମିଟିର ପରାମର୍ଶ ନେଇ ସରକାରୀ କର୍ମଚାରୀମାନେ
କାର୍ଯ୍ୟ କରୁଥିବାରୁ ଚାଷୀଙ୍କ ମଧ୍ୟରେ ଥିବା ଅସନ୍ତୋଷ ଦୂର
ହୋଇପାରିବ ବୋଲି ଶ୍ରୀ ମହାପାତ୍ର ଆଶା ପ୍ରକାଶ କରିଥିଲେ ।

## ପ୍ରାକୃତିକ ବିପର୍ଯ୍ୟୟ କମିଟି ବୈଠକ

ଜୁଲାଇ ୩ ତାରିଖ ପୂର୍ବାହ୍ନରେ ସଚିବାଳୟଠାରେ ମୁଖ୍ୟମନ୍ତ୍ରୀ
ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ରାଜ୍ୟ-
ସ୍ତରୀୟ ପ୍ରାକୃତିକ ବିପର୍ଯ୍ୟୟ କମିଟି ବୈଠକ ଅନୁଷ୍ଠିତ
ହୋଇଥିଲା । ଏଥିରେ ସଦସ୍ୟ ଥିବା ଏମ୍. ଏଲ୍. ଏ.ମାନେ,
ମନ୍ତ୍ରୀମଣ୍ଡଳର ସଦସ୍ୟବୃନ୍ଦ, ବିଭିନ୍ନ ବିଭାଗୀୟ କର୍ମକର୍ତ୍ତା ଯୋଗ
ଦେଇଥିଲେ । ରାଜସ୍ୱ ବିଭାଗ ଶାସନ ସଚିବ ଶ୍ରୀ ପ୍ୟାରୀ
ମୋହନ ମହାପାତ୍ର ଗତବର୍ଷରେ ଗୃହୀତ ବିବରଣୀ ପ୍ରଦାନ
କରିବା ପରେ ତାହା ବିଶେଷ ଭାବେ ଆଲୋଚିତ ହୋଇ ଗୃହୀତ
ହୋଇଥିଲା ।

ରାଜସ୍ୱ ଓ ପରିବହନ ମନ୍ତ୍ରୀ ଶ୍ରୀ ବାସୁଦେବ ମହାପାତ୍ର
ଏହି ବୈଠକ ପରିଚାଳନା କରି ଚଳିତ ବର୍ଷ ରାଜ୍ୟରେ ଘଟିଥିବା
ମରୁଡ଼ି, ଘରପୋଡ଼ି, କରକାପାତ, ବାତ୍ୟା ଓ ବନ୍ୟାରେ ଘଟିଥିବା
କ୍ଷୟକ୍ଷତି ବିଷୟରେ ଆଲୋଚନା କରି ଏହିସବୁ ପ୍ରାକୃତିକ
ବିପର୍ଯ୍ୟୟର ସମ୍ମୁଖୀନ ହେବା ପାଇଁ ସମସ୍ତ ପ୍ରକାର ପଦକ୍ଷେପ
ନିଆଯାଇଛି ଓ ଭବିଷ୍ୟତରେ ଯଦି କୌଣସି ପ୍ରକାର ପ୍ରାକୃତିକ
ବିପର୍ଯ୍ୟୟ ଦେଖାଯାଏ, ତା'ର ସମ୍ମୁଖୀନ ହେବାକୁ ରାଜ୍ୟ
ସରକାର ପ୍ରସ୍ତୁତ ଅଛନ୍ତି ବୋଲି କହିଥିଲେ । ଏଥିରେ ସମସ୍ତଙ୍କ
ସହଯୋଗ ସେ କାମନା କରିଥିଲେ । ବନ୍ୟାପୂର୍ବରୁ ନଦୀ-
ବନ୍ଧଗୁଡ଼ିକ ଯେପରି ସୁଦୃଢ଼ ରଖାଯିବ, ଦୁର୍ବଳ ଓ ଘାଇ
ହୋଇଯିବା ସଂଭାବନା ଥିବା ନଦୀ, କେନାଲ ବନ୍ଧଗୁଡ଼ିକ
ମଜବୁତ କରାଯିବା, ବନ୍ୟାଜଳ ନିଷ୍କାସନ କରାଯିବା ଦିଗରେ
ଓ ତତ୍ ସଂବନ୍ଧୀୟ ଖବର ପରିବେଷଣରେ ଜଳସେଚନ ବିଭାଗ
ତତ୍ପର ରହିବା, ଲୋକମାନଙ୍କୁ ବନ୍ୟା ବିପତ୍ତିରୁ ଉଦ୍ଧାର କରିବା-
ପାଇଁ ଆବଶ୍ୟକୀୟ ସଂଖ୍ୟକ ଡଙ୍ଗାର ବ୍ୟବସ୍ଥା କରାଯିବା,
ଆଶ୍ରୟସ୍ଥଳୀ ନିର୍ମାଣ, ଖାଦ୍ୟ, ଔଷଧ, ଗୋ-ଖାଦ୍ୟ ପ୍ରଭୃତିର
ଯୋଗାଣ, ଅଗମ୍ୟସ୍ଥାନ ଗୁଡ଼ିକରେ ଖାଦ୍ୟଦ୍ରବ୍ୟ ଓ ଶସ୍ୟ
ମହଜୁଦ ରଖିବା, ବେତାର ଯନ୍ତ୍ର କେନ୍ଦ୍ର ସ୍ଥାପନ କରିବା, ଗୋରୁ
ଗାଈଙ୍କ ପାଇଁ ଔଷଧ, ବନ୍ୟା ସମୟରେ ସର୍ବସାଧାରଣଙ୍କ
ସ୍ୱାସ୍ଥ୍ୟରକ୍ଷା, ଉଦ୍ଧାର କାର୍ଯ୍ୟ ପ୍ରଭୃତି ବିଷୟରେ ବିଶଦ ଆଲୋଚନା
ହୋଇ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିମାନ ଗ୍ରହଣ କରାଯାଇଥିଲା ଏବଂ
ସଂପୃକ୍ତ ବିଭାଗଗୁଡ଼ିକୁ ଏହିସବୁ କାର୍ଯ୍ୟକାରୀ କରିବାର ଦାୟିତ୍ୱ
ଦିଆଯାଇଥିଲା । ଗତ ମାସ ବଂଶଧାରା ନଦୀ ବନ୍ୟାରେ
ଗଞ୍ଜାମର କାଶୀନଗର ଓ କୋରାପୁଟର ଗୁଣୁପୁର ଅଞ୍ଚଳରେ
ଯେଉଁ ପରିମାଣରେ କ୍ଷୟକ୍ଷତି ଘଟିଛି, ସେଥିପାଇଁ ୭ ଲକ୍ଷ
ଟଙ୍କା ମଂଜୁର କରାଯାଇଛି ଓ ଅଧିକ ପରିମାଣର ଅର୍ଥ ଦେବା
ପାଇଁ ବିଚାର କରାଯାଉଛି ବୋଲି ରାଜସ୍ୱ ମନ୍ତ୍ରୀ ଶ୍ରୀ ମହାପାତ୍ର
ବୈଠକରେ ପ୍ରକାଶ କରିଥିଲେ । ବନ୍ୟାଜଳରେ ଧୋଇହୋଇ
ଯାଇଥିବା ଧାନଚଲି ପୁଣି ଯୋଗାଇ ଦେବା ପାଇଁ କୃଷି ବିଭାଗ
ଦ୍ୱାରା ଗୃହୀତ ବ୍ୟବସ୍ଥା, କ୍ଷତିଗ୍ରସ୍ତ ଲୋକଙ୍କୁ ବିଭିନ୍ନ ପ୍ରକାର ଋଣ
ଓ ଆର୍ଥିକ ସାହାଯ୍ୟ ଦେବା ବିଷୟରେ ମଧ୍ୟ ଆଲୋଚନା
କରାଯାଇଥିଲା । ଏହି ବୈଠକରେ ଉପସ୍ଥିତ ଥିବା ୩ଟି
ଡିଭିଜନର ରାଜସ୍ୱ କମିଶନରମାନେ ସେମାନଙ୍କ ଅଞ୍ଚଳର
ପରିସ୍ଥିତି ସଂପର୍କରେ ବର୍ଣ୍ଣନା କରିଥିଲେ ।

କୃଷିମନ୍ତ୍ରୀ ଶ୍ରୀ ସୋମନାଥ ରଥ, ଅର୍ଥମନ୍ତ୍ରୀ ଶ୍ରୀ ରଘୁନାଥ
ପଟ୍ଟନାୟକ, ପୂର୍ତ୍ତ ଓ ନଗର ଉନ୍ନୟନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ବସନ୍ତ
କୁମାର ବିଶ୍ୱାଳ, ଜଳସେଚନ ଓ ଶକ୍ତି ରାଷ୍ଟ୍ରମନ୍ତ୍ରୀ ଶ୍ରୀ ନିରଞ୍ଜନ
ପଟ୍ଟନାୟକ, ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟ ପୁନର୍ଗଠନ ରାଷ୍ଟ୍ରମନ୍ତ୍ରୀ
ଶ୍ରୀ ଭଜମନ ବେହେରା, ଶିଳ୍ପ ଓ ଯୋଗାଣ ରାଷ୍ଟ୍ର ମନ୍ତ୍ରୀ
ଶ୍ରୀ କିଶୋର ଚନ୍ଦ୍ର ପଟେଲ ଆଲୋଚନାରେ ଅଂଶ ଗ୍ରହଣ
କରିଥିଲେ ।

## ଭାର୍ଗବୀ ସେତୁର ଶୁଭାରମ୍ଭ

ଗତ ଜୁନ୍ ୨୯ ତାରିଖରେ ପବିତ୍ର ନେତ୍ରୋତ୍ସବ ଉପଲକ୍ଷେ
ପୁରୀ ପ୍ରୋଜେକ୍ଟ ଡିଭିଜନ ଅନ୍ତର୍ଗତ ଡେଲାଙ୍ଗ-ବ୍ରହ୍ମଗିରି
ରାସ୍ତାର ଧର୍ମକାର୍ତ୍ତୀ ଗ୍ରାମ ନିକଟରେ ଭାର୍ଗବୀ ନଦୀ ଉପରେ
ଏକ ଉଚ୍ଚ ସେତୁ ନିର୍ମାଣ ପାଇଁ ପୂର୍ତ୍ତ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ବସନ୍ତ କୁମାର
ବିଶ୍ୱାଳ ଭିତ୍ତି ପ୍ରସ୍ତର ସ୍ଥାପନ କରିଛନ୍ତି । ୩୦ ଲକ୍ଷ ୭୫
ହଜାର ଟଙ୍କା ବ୍ୟୟ ଅଟକଳରେ ଆରମ୍ଭ କରାଯାଇଥିବା ଏହି
ସେତୁ ପାଇଁ ସରକାର ପ୍ରଶାସନିକ ମଂଜୁରୀ ଦେଇଛନ୍ତି ।
ନିର୍ମାଣ କାର୍ଯ୍ୟର ଦାୟିତ୍ୱ ବହନ କରିଛନ୍ତି ଓଡ଼ିଶା ସେତୁ ନିର୍ମାଣ
ନିଗମ ।

ଏ ଉପଲକ୍ଷେ ସେଠାରେ ଆୟୋଜିତ ଏକ ବିରାଟ ଜନ
ସମାବେଶରେ ଅଧ୍ୟକ୍ଷତା କରିଥିଲେ ଶିକ୍ଷା ଓ ଯୁବକଲ୍ୟାଣ
ମନ୍ତ୍ରୀ ଶ୍ରୀ ଗଙ୍ଗାଧର ମହାପାତ୍ର । ମୁଖ୍ୟ ଅତିଥି ରୂପେ
ଉଦ୍‌ବୋଧନ ଦେଇ ପୂର୍ତ୍ତମନ୍ତ୍ରୀ କହିଲେ ଯେ ବହୁଦିନରୁ
ଦାବୀ ହେଉଥିବା ଏହି ସେତୁର ନିର୍ମାଣ କାର୍ଯ୍ୟ ବର୍ଷକ ମଧ୍ୟରେ
ସଂପୂର୍ଣ୍ଣ ହେବ । ଫଳରେ ଡେଲାଙ୍ଗରୁ ବ୍ରହ୍ମଗିରି ଦେଇ ପୁରୀ
ସହରକୁ ବର୍ଷସାରା ଯାତାୟତ କରିହେବ । ଏହାବ୍ୟତୀତ
ବ୍ରହ୍ମଗିରି, ସତ୍ୟବାଦୀ, ଡେଲାଙ୍ଗ ଓ ପିପିଲି ବ୍ଲକ୍ ଅନ୍ତର୍ଗତ
ବହୁ ଜନ ବହୁଳ ଗ୍ରାମ ମଧ୍ୟରେ ବର୍ଷସାରା ରାସ୍ତା ଯୋଗା-
ଯୋଗ ସ୍ଥାପିତ ହୋଇପାରିବ । ସେ ପୁଣି କହିଲେ ଯେ
ଡେଲାଙ୍ଗ-ବ୍ରହ୍ମଗିରି ରାସ୍ତାର ଗୁରୁତ୍ୱ ଦୃଷ୍ଟିରୁ ସରକାର ଏହି
ସେତୁର ଖର୍ଚ୍ଚ ସମେତ ସମଗ୍ର ରାସ୍ତାର ଉନ୍ନତି ବାବଦରେ
ସମୁଦାୟ ୧ କୋଟି ୧୬ ଲକ୍ଷ ୩୫ ହଜାର ଟଙ୍କା ବ୍ୟୟ
ବ୍ୟବସ୍ଥା କରିଛନ୍ତି । ପୁରୀ ଜିଲ୍ଲାରେ ରାସ୍ତା ଓ ସେତୁ ନିର୍ମାଣ
ଦିଗରେ ସରକାରୀ ଉଦ୍ୟମ ଅବ୍ୟାହତ ରହିଛି ବୋଲି ସୂଚନା
ଦେଇ ପୂର୍ତ୍ତମନ୍ତ୍ରୀ କହିଲେ ଯେ ପୂର୍ବତନ ସରକାରଙ୍କ ସମୟରୁ
ଅସଂପୂର୍ଣ୍ଣ ରହିଥିବା ୪ଟି ସେତୁକୁ ୬୭ ଲକ୍ଷ ଟଙ୍କା ବ୍ୟୟରେ
ସଂପୂର୍ଣ୍ଣ କରାଯାଇଛି । ଏହା ବ୍ୟତୀତ ଗତ ୪ ବର୍ଷରେ
୩ କୋଟି ୩୧ ଲକ୍ଷ ଟଙ୍କାରେ ଆରମ୍ଭ ହୋଇଥିବା ୧୪ଟି
ସେତୁ ମଧ୍ୟରୁ ଆଠିଗୋଟି ୫ଟି ସେତୁ ପୂର୍ଣ୍ଣାଙ୍ଗ ହେଲଣି ଏବଂ

ସେଗୁଡ଼ିକରେ ୧ କୋଟି ୫୧ ଲକ୍ଷ ଟଙ୍କା ବ୍ୟୟ କରାଯାଇଛି ବୋଲି ସେ କହିଥିଲେ । ଏହି ୫ଟି ସେତୁ ହେଲା– ଜାହୁଆ ନାଳ ସେତୁ, ଗୋବରା ସେତୁ, କୁଣଡହ୍ରା ସେତୁ, ଗବକୁଣ୍ଡ କଟଠାରେ ସେତୁ ଏବଂ ଲୁଣି ଯୋର ସେତୁ ।

ଶିକ୍ଷାମନ୍ତ୍ରୀ ଶ୍ରୀ ମହାପାତ୍ର ଜିଲ୍ଲାରେ ରାସ୍ତା ଯୋଗାଯୋଗର ବ୍ୟାପକ ପ୍ରସାର ଲାଗି ଯେଉଁ ପଦକ୍ଷେପ ନିଆଯାଇଛି, ତାହା ପ୍ରଶଂସନୀୟ ବୋଲି ମତବ୍ୟକ୍ତ କରି କହିଲେ ଯେ ବ୍ରହ୍ମଗିରି ଅଞ୍ଚଳରେ ବିଭିନ୍ନ ଉନ୍ନୟନମୂଳକ ଯୋଜନା କାର୍ଯ୍ୟକାରୀ ହେଉଛି । ଖଜୁରିଆଠାରେ ଏକ ଚିକିତ୍ସା କେନ୍ଦ୍ର ନିର୍ମାଣ ପାଇଁ ହୋଇଥିବା ଦାବୀକୁ ସରକାର ଗ୍ରହଣ କରିଛନ୍ତି । ସେହିପରି ୫୬ ଲକ୍ଷ ଟଙ୍କା ବ୍ୟୟରେ ମାଣିକ ପାଟଣା ଠାରେ ଏକ ଆଧୁନିକ ଚିକିତ୍ସାଳୟ ମଧ୍ୟ ନିର୍ମିତ ହେବ ବୋଲି ସେ ପ୍ରକାଶ କରିଥିଲେ । ଶ୍ରୀ ମହାପାତ୍ର ଭାଷଣ ପ୍ରସଙ୍ଗରେ କହିଲେ ଯେ ସରକାର ରାଜ୍ୟ ବାସୀଙ୍କର ଆଶା ଆକାଂକ୍ଷା ପୂରଣ କରୁଥିବାରୁ ରାଜ୍ୟରେ ଦୃଢ଼ ଶାସନ ଓ ରାଜନୈତିକ ସ୍ଥିରତା ବଜାୟ ରହିପାରିଛି ।

ପ୍ରାରମ୍ଭରେ ପୂର୍ତ୍ତ ବିଭାଗ ଶାସନ ସଚିବ ତଥା ଯନ୍ତ୍ରୀ ମୁଖ୍ୟ ଶ୍ରୀ ପ୍ରହ୍ଲାଦ ପଟ୍ଟନାୟକ ସ୍ୱାଗତ ଭାଷଣ ଦେଇ କହିଲେ ଯେ ଏହି ସେତୁର ଦୈର୍ଘ୍ୟ ହେବ ୬୦ ମିଟର ଓ ଏଥିରେ ୩ଟି ଫୁକାର ନିର୍ମିତ ହେବ । ଏତଦ୍ୱାରା ୧ ଲକ୍ଷ ଶ୍ରମ ଦିବସ ସୃଷ୍ଟି ହୋଇ ପାରିବ ବୋଲି ସେ କହିଥିଲେ ।

---

## ସେତୁ ଉଦ୍‌ଘାଟିତ

ଗତକାଲି ପୂର୍ତ୍ତ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ୫ ନମ୍ବର ଜାତୀୟ ରାଜପଥରେ ବ୍ରହ୍ମପୁରଠାରୁ ୧୨ କି. ମି. ଦୂରବର୍ତ୍ତୀ ଅନନ୍ତପୁର ନାଳ ଉପରେ ନବ ନିର୍ମିତ ଏକ ସେତୁ ଉଦ୍‌ଘାଟନ କରିଛନ୍ତି । ୧୨ ଲକ୍ଷ ୪୦୦ ଟଙ୍କା ବ୍ୟୟ ଅଟକଳରେ ଏହି ସେତୁର ନିର୍ମାଣ କାର୍ଯ୍ୟ ଜାତୀୟ ରାଜପଥ ଡିଭିଜନଙ୍କ ଉଦ୍ୟମରେ ମାତ୍ର ୪ ମାସ ମଧ୍ୟରେ ସଂପୂର୍ଣ୍ଣ କରାଯାଇଛି । ଦୁଇଟି ଫୁକାର ବିଶିଷ୍ଟ ଏହି ସେତୁର ଦୈର୍ଘ୍ୟ ପ୍ରାୟ ୨୨ ମିଟର ଏବଂ ଉଭୟ ପାର୍ଶ୍ୱରେ ସମୁଦାୟ ୨୧୦ ମିଟର ଦୈର୍ଘ୍ୟର ସଂଯୋଗକାରୀ ରାସ୍ତା ନିର୍ମିତ ହୋଇଛି । ଏହା ନିର୍ମିତ ହେବା ଫଳରେ ୧୬,୫୦୦ ଶ୍ରମ ଦିବସ ସୃଷ୍ଟି ହୋଇ ପାରିଥିଲା ।

ସେଠାରେ ପୂର୍ବରୁ ଥିବା ପୁରାତନ ସେତୁଟି ଓଜନଦାର ଓ ଦ୍ରୁତଗାମୀ ଯାନବାହାନ ଗୁଡ଼ିକର ଯାତାୟତ ପାଇଁ ସଂପୂର୍ଣ୍ଣ ଭାବରେ ଅନୁପଯୋଗୀ ହୋଇ ଯାଇଥିଲା । ତେଣୁ, ତାହାକୁ ଭାଙ୍ଗି ଏକ ନୂତନ ସେତୁ ନିର୍ମାଣ କରିବା ଆବଶ୍ୟକ ପଡ଼ିଲା ।

---

## କ୍ଷୁଦ୍ର ଓ କୁଟୀର ଶିଳ୍ପ

ଗତ ଆର୍ଥିକ ବର୍ଷରେ କଳାହାଣ୍ଡି ଜିଲ୍ଲାରେ ୧ କୋଟି ୪ ଲକ୍ଷ ୧୬ ହଜାର ଟଙ୍କା ବିନିଯୋଗରେ ୧୬୭ଟି କ୍ଷୁଦ୍ରଶିଳ୍ପ ଏବଂ ୪୯ ଲକ୍ଷ ୭୭ ହଜାର ଟଙ୍କା ବିନିଯୋଗରେ ୩୫୮୫ଟି କୁଟୀର ଶିଳ୍ପ ପ୍ରତିଷ୍ଠା କରାଯାଇ ସଂପୃକ୍ତ ବର୍ଷ ପାଇଁ ଜିଲ୍ଲାରେ ଉଭୟ ଶିଳ୍ପ ନିମନ୍ତେ ଧାର୍ଯ୍ୟ ହୋଇଥିବା ଲକ୍ଷ୍ୟ ଅତିକ୍ରମ କରାଯାଇ ପାରିଛି । ଜିଲ୍ଲାରେ ଗତ ଆର୍ଥିକ ବର୍ଷ ୧୬୦ଟି କ୍ଷୁଦ୍ର ଶିଳ୍ପ ଏବଂ ୨୫୦୦ଟି କୁଟୀର ଶିଳ୍ପ ପ୍ରତିଷ୍ଠା କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିଲା ।

ପ୍ରତିଷ୍ଠିତ କ୍ଷୁଦ୍ରଶିଳ୍ପ ମାଧ୍ୟମରେ ୧୨୨୬ ଜଣ ଏବଂ କୁଟୀର ଶିଳ୍ପ ମାଧ୍ୟମରେ ୪୨୯୧ ଜଣ ବ୍ୟକ୍ତିଙ୍କୁ କାମ ଯୋଗାଇ ଦିଆଯାଇଛି ।

---

## ମାତୃଭୂମିର ସେବାରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ରୋଟାରିଆନମାନେ ଧ୍ୟାନ ଦିଅନ୍ତୁ

ଜୁଲାଇ ୧୬ ସନ୍ଧ୍ୟାରେ ଭୁବନେଶ୍ୱର କ୍ଲବର ବାର୍ଷିକ ଅଭିଷେକ ଉତ୍ସବରେ ମୁଖ୍ୟ ଅତିଥିରୂପେ ଯୋଗ ଦେଇ ରାଜ୍ୟପାଳ ଶ୍ରୀ ବିଶ୍ୱମ୍ଭରନାଥ ପାଣ୍ଡେ ଆବେଗପୂର୍ଣ୍ଣ ଭାଷାରେ ରୋଟାରିଆନ୍‌ମାନେ ଦେଶର ଅସହାୟ, ଅବହେଳିତ ଓ ପୀଡ଼ିତ ଜନତାର ସେବା କରିବାରେ ଧ୍ୟାନ ଦେବା ପାଇଁ ଆହ୍ୱାନ ଦେଇଥିଲେ । ଶ୍ରୀ ପାଣ୍ଡେ କହିଲେ ଯେ ଆମେ ସମସ୍ତେ ଭାରତ ମାତାର ସନ୍ତାନ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ମାନବ ସେବା କରିବା ଆମର ପରମ କର୍ତ୍ତବ୍ୟ ଓ ଚରମ ଧର୍ମ । ଏଥିପାଇଁ ସେ ପୁରାଣର ବହୁ ଦୃଷ୍ଟାନ୍ତ ଦର୍ଶାଇ ହିନ୍ଦୁ, ଶିଖ୍, ଖ୍ରୀଷ୍ଟିୟାନ୍, ପାର୍ଶି, ବୁଦ୍ଧ ଓ ଜୈନ ଧର୍ମରେ ଏହି ମାନବ ସେବାକୁ ଶୀର୍ଷ ସ୍ଥାନ ଦିଆଯାଇଛି । ରୋଟାରିଆନ୍‌ମାନେ ବିଶ୍ୱବ୍ୟାପୀ ନିଜର ସଙ୍ଗଠନ ପ୍ରତିଷ୍ଠା କରିଛନ୍ତି । ନୂତନ ବିଶ୍ୱର ସେବା ଆବିଷ୍କାର କରିବା ପାଇଁ ସେମାନେ ସର୍ବ ପ୍ରଥମେ ନିଜ ରାଜ୍ୟର ଆଦିବାସୀ, ହରିଜନ ଓ ଗରିବ ଜନସାଧାରଣଙ୍କ ସେବାରେ ଧ୍ୟାନ ଦିଅନ୍ତୁ । ଉପକୂଳବର୍ତ୍ତୀ ଅଞ୍ଚଳରୁ କୁଷ୍ଠରୋଗ ନିବାରଣ ଦିଗରେ, ଅନୁନ୍ନତ ଓ ଅବହେଳିତ ଆଦିବାସୀ ଓ ହରିଜନ ଅଧ୍ୟୁଷିତ ଅଞ୍ଚଳମାନଙ୍କରୁ କୁ ସଂସ୍କାର ଦାରିଦ୍ର୍ୟ, ଅଜ୍ଞାନ ଦୂର କରିବାରେ ରୋଟାରିଆନ୍‌ମାନେ କାର୍ଯ୍ୟକ୍ରମ ଗ୍ରହଣ କରନ୍ତୁ । ଶ୍ରୀ ପାଣ୍ଡେ ୧୯୩୦ ମସିହାରେ ବମ୍ବେ ସହରର ଫଡିମାବେନ୍ କିପରି ପୋଲିଓ ରୋଗୀମାନଙ୍କ ସେବାରେ ଆତ୍ମୋତ୍ସର୍ଗ କରି ଶେଷରେ ପ୍ରତିଷ୍ଠା ଲାଭ କରିଥିଲେ, ସେ ବିଷୟ ଉଲ୍ଲେଖ କରି ପ୍ରତ୍ୟେକ ନିଜ ନିଜ ଉଦ୍ୟମ ବଳରେ ଅସାଧ୍ୟ କାର୍ଯ୍ୟ ସାଧନ ଦିଗରେ ଅଗ୍ରସର ହେଲେ ପ୍ରାକୃତିକ ସଂପଦରେ ଭରପୂର ଓଡ଼ିଶା ରାଜ୍ୟର ଦୁଃଖ ଦୂର ହେବ ବୋଲି ଉଦ୍‌ବୋଧନ ଦେଇଥିଲେ ।

ଏହି ଉତ୍ସବରେ ବିଦାୟୀ ସଭାପତି ରୋଟାରିଆନ୍ ଢାପାନାଙ୍କ ଅନୁପସ୍ଥିତିରେ ରୋଟାରିଆନ୍ ଶ୍ରୀ ଶ୍ରୀନିବାସ ସାହୁ ସଭାକାର୍ଯ୍ୟ ପରିଚାଳନା କରିଥିଲେ । ନବ ନିର୍ବାଚିତ ସଭାପତି ରୋଟାରିଆନ୍ ଶ୍ରୀ ଧୀରେନ୍ଦ୍ର ନାଥ ପାଢ଼ୀ ଆଗାମୀ ବର୍ଷର କାର୍ଯ୍ୟକ୍ରମ ଘୋଷଣା କରି ସେଥିରେ ସମସ୍ତଙ୍କ ସାହାଯ୍ୟ ଓ ସହଯୋଗ କାମନା କରିଥିଲେ । ଭୁବନେଶ୍ୱର ରୋଟାରୀ

କ୍ଲବର ପୂର୍ବତନ ସଂପାଦକ ତଥା ମୁଖ୍ୟ ଶାସନ ସଚିବ ଶ୍ରୀ ଜ୍ଞାନସ୍ୱରଙ୍କୁ ସମ୍ମାନୀତ ରୋଟାରିଆନ୍ ହିସାବରେ ଗ୍ରହଣ କରାଯାଇ ତାଙ୍କ କାର୍ଯ୍ୟର ଉଚ୍ଚ ପ୍ରସଂଶା କରାଯାଇଥିଲା ।

ବିଦାୟୀ ସଂପାଦକ ରୋଟାରିଆନ୍ ଶ୍ରୀ ନରେନ୍ଦ୍ର କୁମାର ମିଶ୍ର ବାର୍ଷିକ ବିବରଣୀ ପ୍ରଦାନ କରି ଗତବର୍ଷ ମଧ୍ୟରେ ବିଭିନ୍ନ ସ୍ତରରେ ୪ ଜଣ ମେଧାବୀ ଛାତ୍ରଙ୍କୁ ୫୦ ଟଙ୍କା ଲେଖାଏ ବୃତ୍ତି ପ୍ରଦାନ, ବିଭିନ୍ନ ସ୍କୁଲ, କଲେଜ ଛାତ୍ର ଛାତ୍ରୀଙ୍କ ମଧ୍ୟରେ ବିଭିନ୍ନ ପ୍ରକାର ପ୍ରତିଯୋଗିତାର ଆୟୋଜନ ଓ ପୁରସ୍କାର ପ୍ରଦାନ, ଦୃଷ୍ଟିହୀନ, ମୂକ ଓ ବଧିର ବିଦ୍ୟାଳୟଠାରେ ବାର୍ଷିକ କ୍ରୀଡ଼ା ପ୍ରତିଯୋଗିତାର ଆୟୋଜନ, ଏ ଦିଗରେ ରାଜ୍ୟ ସମବାୟ ବ୍ୟାଙ୍କର ଆର୍ଥିକ ସାହାଯ୍ୟ, ଉପରୋକ୍ତ ବିଦ୍ୟାଳୟ ଛାତ୍ର-ଛାତ୍ରୀଙ୍କ ସ୍ୱାସ୍ଥ୍ୟରକ୍ଷା ଦିଗରେ ଡାକ୍ତରୀ ପରୀକ୍ଷା ଓ ଚିକିତ୍ସାର ସୁବିଧା, ବର୍ଷକ ମଧ୍ୟରେ ବାଲିପାଟଣା ଓ ନିମାପଡ଼ା ଠାରେ ଦୁଇଟି ଚକ୍ଷୁ ଚିକିତ୍ସା ଶିବିର ସ୍ଥାପନ କରି ୧୧୫ ଜଣଙ୍କ ଚକ୍ଷୁରେ ଅସ୍ତ୍ରୋପଚାର ଓ ୬୯୦ ଜଣଙ୍କର ଚକ୍ଷୁ ଚିକିତ୍ସା କରାଯାଇଥିଲା ବୋଲି ପ୍ରକାଶ କରିଥିଲେ । ଶାରୀରିକ ଅକ୍ଷମ ଛାତ୍ର, କର୍ମଚାରୀ ଓ ସାଧାରଣ ଲୋକଙ୍କୁ ମଧ୍ୟ ଚିକିତ୍ସା ଓ ଯାତାୟତ ଦିଗରେ କ୍ଲବ୍ ସାହାଯ୍ୟ ପ୍ରଦାନ କରିଥିଲେ । ଭୁବନେଶ୍ୱର କ୍ଲବ୍‌ରେ ଦୁଇଟି ଗ୍ରାମକୁ ଆଦର୍ଶ ଗ୍ରାମରେ ପରିଣତ କରିବା ପାଇଁ ବିଭିନ୍ନ ସେବାମୂଳକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ରାଜ୍ୟ ବାହାର ବହୁ ପ୍ରତିଷ୍ଠିତ ବ୍ୟକ୍ତି କ୍ଲବ୍ ପରିଦର୍ଶନ କରି ଉଦ୍‌ବୋଧନ ଦେଇଛନ୍ତି । କ୍ଲବ୍ ପ୍ରତିନିଧିମାନେ ମଧ୍ୟ ବାହାର ରାଜ୍ୟ କ୍ଲବ୍ ପରିଦର୍ଶନରେ ଯାଇଛନ୍ତି । ସର୍ବୋପରି ଏହି କ୍ଲବ୍‌ର କାର୍ଯ୍ୟ କଳାପ ଉଚ୍ଚ ପ୍ରଶଂସିତ ହୋଇଛି ।

ଏହି ଉତ୍ସବରେ ଜଣେ ଅନ୍ଧ ଗାୟକ ଓ ବେହେଲା ବାଦକଙ୍କୁ ଶ୍ରୀ ପାଣ୍ଡେ ଗୋଟିଏ ବେହେଲା ପ୍ରଦାନ କରିଥିଲେ । ବିଭିନ୍ନ ସ୍ତରରେ ୯ ଜଣ ଉଚ୍ଚ ଶିକ୍ଷିତ କର୍ମଦକ୍ଷ ସଦସ୍ୟଶ୍ରେଣୀଭୁକ୍ତ ହୋଇଥିଲେ । ଡିଷ୍ଟ୍ରିକ୍ଟ ଗଭର୍ଣ୍ଣର ଡାକ୍ତର କେ. ସତ୍ୟନାରାୟଣ ରାଓ ସେମାନଙ୍କୁ ରୋଟାରିଆନ୍‌ମାନଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟ ସଂପର୍କରେ ବୁଝାଇଥିଲେ । ଚଳିତ ମାସ ସୁଦ୍ଧା କ୍ଲବରେ ୬୨ ଜଣ ସଭ୍ୟ ଶ୍ରେଣୀଭୁକ୍ତ ଅଛନ୍ତି । ରୋଟାରିଆନ୍ ଶ୍ରୀ ଏମ୍. ଡି. ରାଓ କ୍ଲବ୍‌ର ସଂପାଦକ ଅଛନ୍ତି । କ୍ଲବ୍‌ରେ ନିୟମିତ ଉପସ୍ଥାନ ଓ କାର୍ଯ୍ୟକ୍ରମରେ ଯୋଗଦାନ କରୁଥିବା ସଦସ୍ୟମାନଙ୍କୁ ପୁରସ୍କୃତ କରାଯାଇଥିଲା । ରୋଟାରିଆନ୍ ଶ୍ରୀ ଏସ୍. ଏନ୍. ମିଶ୍ର ଉଦ୍ୟୋଗୀମାନଙ୍କ ଉଦ୍ୟମର ପ୍ରଶଂସା କରିଥିଲେ ।

ଏହି ଉତ୍ସବରେ ବହୁ ଉଚ୍ଚ ପଦସ୍ଥ ସରକାରୀ ଓ ବେସରକାରୀ ବ୍ୟକ୍ତି, ସାମ୍ବାଦିକ, ଭଦ୍ର ମହିଳା, ନିକଟବର୍ତ୍ତୀ ରୋଟାରି କ୍ଲବ୍ ଗୁଡ଼ିକର ସଦସ୍ୟ ଯୋଗ ଦେଇ ପରିବେଶକୁ ଉତ୍ସବ ମୁଖରୀତ କରିଥିଲେ । ଏକ ଗମ୍ଭୀରପୂର୍ଣ୍ଣ ଶୃଙ୍ଖଳିତ ବାୟୁମଣ୍ଡଳ ମଧ୍ୟରେ ସମସ୍ତ କାର୍ଯ୍ୟ ସଂପନ୍ନ ହୋଇଥିଲା ।

## ଫୁଲବାଣୀରେ ଉଦ୍ୟାନ ଦିବସ

ଆଦିବାସୀ ଓ ହରିଜନ ଅଧ୍ୟୁଷିତ କନ୍ଧମାଳ ସବ୍‌ଡିଭିଜନରେ ଚଳିତବର୍ଷ ୧ଲକ୍ଷ କଲମୀ ଓ ଚାରା ରୋପଣ କରାଯିବା ସଙ୍ଗେ ସଙ୍ଗେ ପ୍ରାୟ ୩୦୦ଏକରରେ ଫଳ ଉଦ୍ୟାନ କରାଯିବା ନିମନ୍ତେ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନିଆଯାଉଛି । ଗତ ଜୁଲାଇ ୫ତାରିଖରେ ଫୁଲବାଣୀ ନିକଟବର୍ତ୍ତୀ ବଣଡ଼ା ଆଶ୍ରମ ସ୍କୁଲରେ ଆୟୋଜିତ ଉଦ୍ୟାନ ଦିବସ ଉତ୍ସବରେ ଉଦ୍ୟାନ ବିଶେଷଜ୍ଞ ସୂଚାଇଥିଲେ ଯେ ଫୁଲବାଣୀ ଜିଲ୍ଲାର ମୃତ୍ତିକା, ଜଳବାୟୁ ଏବଂ ପ୍ରାକୃତିକ ପରିବେଶ ଫଳ ଉଦ୍ୟାନ ନିମନ୍ତେ ବିଶେଷ ଅନୁକୂଳ । ତେଣୁ, ବ୍ୟାପକ ଫଳଚାଷ ଜରିଆରେ ଏ ଅଞ୍ଚଳର ଗରିବ ହରିଜନ ଓ ଆଦିବାସୀମାନଙ୍କ ଅର୍ଥନୈତିକ ବିକାଶ ନିମନ୍ତେ ଜିଲ୍ଲା ଗ୍ରାମ ଉନ୍ନୟନ ସଂସ୍ଥା, ସମ୍ମିଳିତ ଆଦିବାସୀ ବିକାଶ ସଂସ୍ଥା ତଥା ଅନ୍ୟାନ୍ୟ ସଂପୃକ୍ତ ବିଭାଗର ମିଳିତ ଉଦ୍ୟମରେ ଉଦ୍ୟାନ କାର୍ଯ୍ୟକ୍ରମକୁ ଅଗ୍ରାଧିକାର ଭିତ୍ତିରେ କାର୍ଯ୍ୟକାରୀ କରାଯାଉଛି । ଏହି କାର୍ଯ୍ୟକ୍ରମ ଅନୁଯାୟୀ ନଡ଼ିଆ, ଆମ୍ବ, ଲେମ୍ବୁ, ପଣସ, ଡାଳିମ୍ବ, କଦଳୀ ଆଦି ୧ଲକ୍ଷ କଲମୀ ଓ ଚାରା ରୋପଣ କରାଯିବ । ଏହାଛଡ଼ା ୧୦୦ ଏକରରେ ମିଶ୍ରିତ ଉଦ୍ୟାନ ଏବଂ ୨୦୦ ଏକରରେ ଫଳ ଉଦ୍ୟାନ କରାଯାଇ ଗ୍ରାମାଂଚଳ ଗରିବ ପରିବାରଙ୍କୁ ଥଇଥାନ କରାଯିବ । ୫୦ ଏକର ସରକାରୀ ଅନାବାଦୀ ଜମିରେ ଫଳ ଉଦ୍ୟାନ କରିବାପାଇଁ ମଧ୍ୟ ସ୍ଥିର ହୋଇଛି । ଏ ଅଞ୍ଚଳର ୫ହଜାର ଗରିବ ଆଦିବାସୀଙ୍କ ବାଡ଼ିରେ ଗୋଟିଏ କରି ୫ ହଜାର ଫଳଗଛ ଲଗାଇବାପାଇଁ ମଧ୍ୟ ଆଉ ଏକ କାର୍ଯ୍ୟକ୍ରମ ରହିଛି । 'ପିଲାଟିଏକୁ ଗଛଟିଏ' ଯୋଜନା ଚଳିତବର୍ଷ ୨୦ଟି ସ୍କୁଲରେ ଆରମ୍ଭ କରାଯିବ । 'ରୋଷ ବଗିଚା' କାର୍ଯ୍ୟକ୍ରମ ଅନୁଯାୟୀ ୧୫ ହଜାର ଟଂକା ବ୍ୟୟରେ ୩୦୦ ଜଣଂକ ବାଡ଼ିରେ ପନିପରିବା ଚାଷ ଆରମ୍ଭ କରାଯିବ ।

ଫୁଲବାଣୀ ଜିଲ୍ଲାପାଳ ଶ୍ରୀ ବିପିନ ବିହାରୀ ମହାନ୍ତି ଏହି ଉତ୍ସବରେ ଗାଁ ଗହଳର ଗରିବ ଆଦିବାସୀ ଓ ହରିଜନ ଚାଷୀଙ୍କୁ ଏହି କାର୍ଯ୍ୟକ୍ରମର ସୁଯୋଗ ନେବାପାଇଁ ପରାମର୍ଶ ଦେଇଥିଲେ । ଏହି ଉତ୍ସବରେ କୃଷି ବିଶ୍ୱବିଦ୍ୟାଳୟର ବିଶେଷଜ୍ଞ ସମେତ ବିଭିନ୍ନ ବିଭାଗୀୟ କର୍ମକର୍ତ୍ତା ଯୋଗଦାନ କରିଥିଲେ ।

## ଫଳବୃକ୍ଷ ଓ ଜଙ୍ଗଲ ସୁରକ୍ଷା

ଗତ ଜୁଲାଇ ୧୪ ତାରିଖ ଦିନ ହରିଜନ ଓ ଆଦିବାସୀ କଲ୍ୟାଣ ମନ୍ତ୍ରୀ ଶ୍ରୀ ରାମଚନ୍ଦ୍ର ଉଲକା କୋରାପୁଟ ଜିଲ୍ଲାର ରାୟଗଡ଼ା ବ୍ଲକ ଅନ୍ତର୍ଗତ କାଟିବାଲିସାଠାରେ ଅନୁଷ୍ଠିତ ବନ ମହୋତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଏହାକୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଥିଲେ । ଏହି ଉପଲକ୍ଷେ ଆୟୋଜିତ ସାଧାରଣ ସଭାରେ ଉଦ୍‌ବୋଧନ ଦେଇ ଶ୍ରୀ ଉଲକା ଫଳବୃକ୍ଷ ଓ ଜଙ୍ଗଲ ସୁରକ୍ଷା ଉପରେ ଗୁରୁତ୍ୱ ଦେଇଥିଲେ । ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ବିଂଶସୂତ୍ରୀ ଅର୍ଥନୈତିକ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରି ଏହାର ସାଫଲ୍ୟ ପାଇଁ ଉଦ୍ୟମ ଜାରି ରଖିବାକୁ ଶ୍ରୀ ଉଲକା ସରକାରୀ ଓ ବେସରକାରୀ ଲୋକଙ୍କୁ ପରାମର୍ଶ ଦେଇଥିଲେ । ଆଦିବାସୀ ଓ ହରିଜନମାନଙ୍କୁ ଲକ୍ଷ୍ୟକରି ଶ୍ରୀ ଉଲକା କହିଲେ ଯେ ବିଦ୍ୟା ଆହରଣ କରି ଶିକ୍ଷିତ ନ ହେଲେ, ଆଦିବାସୀ ଓ ହରିଜନ ଲୋକଙ୍କ ସର୍ବାଙ୍ଗୀନ ଉନ୍ନତି ସମ୍ଭବ ନୁହେଁ । ଏହି ପରିପ୍ରେକ୍ଷୀରେ ସେ ସେମାନଙ୍କୁ

ମଦ ଛାଡ଼ ଓ ପାଠପଢ଼ାର ଆହ୍ୱାନ ଦେଇଥିଲେ । ସଭାସ୍ଥଳରେ ଶ୍ରୀ ଉଲକା ୪୦ଟି ଆଦିବାସୀ ପରିବାରଙ୍କୁ ୧୮ଟି ଲେଖାଏଁ ଗଡ଼ିଆ ଘର ବଣ୍ଟନ କରିଥିଲେ ଓ ୮ଟି ଗୋଟି ଶ୍ରମିକଙ୍କ ଥଇଥାନପାଇଁ ପ୍ରତ୍ୟେକ ପରିବାରଙ୍କୁ ୪ହଜାର ଟଙ୍କା ପ୍ରଦାନ କରିଥିଲେ । ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା ଓ ଦରିଦ୍ରତମ ପରିବାରଙ୍କ ଥଇଥାନ କାର୍ଯ୍ୟକ୍ରମ ବାବଦରେ ପରିବାର ପିଛା ୬ହଜାର ଟଙ୍କା ଓ ୧୦ ଜଣ ବ୍ୟକ୍ତିଙ୍କୁ ହଳବଳଦ ପାଇଁ ଆର୍ଥିକ ସାହାଯ୍ୟ ପ୍ରଦାନ କରିଥିଲେ ।

---

## ପଶୁପାଳନ ବିଭାଗର ବିଭିନ୍ନ କାର୍ଯ୍ୟକ୍ରମ

ରାଜ୍ୟ ପଶୁପାଳନ ବିଭାଗଦ୍ୱାରା ବିଭିନ୍ନ ଅଞ୍ଚଳରେ ବିଭିନ୍ନ ପ୍ରକାର କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯାଇ ସଫଳତା ହାସଲ କରାଯାଇଛି । ଗତ ଜାନୁୟାରୀ ମାସରେ ଏହି ବିଭାଗ ଦ୍ୱାରା ୫ଲକ୍ଷ ୭୦ ହଜାର ୭୩ଟି ପଶୁ ଚିକିତ୍ସିତ ହୋଇଛନ୍ତି, ୩ ଲକ୍ଷ ୭୬ ହଜାର ୪୩୮ଟି ପଶୁଙ୍କୁ ଇଞ୍ଜେକ୍‌ସନ୍ ଦିଆଯାଇଛି ଏବଂ ୧ ଲକ୍ଷ ୧ ହଜାର ୬୭ଟି ପଶୁଙ୍କୁ ଧରାଣ କରାଯାଇଛି ।

ବ୍ରହ୍ମପୁର ଦୁଗ୍ଧ ଯୋଗାଣ ଯୋଜନା ଦ୍ୱାରା ୪୨,୧୬୦ ଲିଟର ଦୁଗ୍ଧ ବିକ୍ରୀ କରାଯାଇଛି । ଢେଙ୍କାନାଳର କାଳିମାଟି ଅଗ୍ରଗାମୀ ଯୋଜନାନୁଯାୟୀ ୮୬,୯୮୦ ଲିଟର ଦୁଗ୍ଧ ସଂଗ୍ରହ କରାଯାଇ ଢେଙ୍କାନାଳ ସହରରେ ବିକ୍ରୟ କରାଯାଇଛି ।

କଟକ ଜିଲ୍ଲାରେ ୧୧୪ଟି ବାଛୁରୀ, ୩ଟି ବତକ, ପୁରୀ ଜିଲ୍ଲାରେ ୨୯ଟି ବାଛୁରୀ, ଢେଙ୍କାନାଳ ଜିଲ୍ଲାରେ ୧୬ଟି ବାଛୁରୀ, ସମ୍ବଲପୁର ଜିଲ୍ଲାରେ ୨୫ଟି ବାଛୁରୀ, କୋରାପୁଟର ରାୟଗଡ଼ାଠାରେ ୧୧ଟି ଘୁଷୁରୀ ଓ ବଲାଙ୍ଗୀର ଜିଲ୍ଲାରେ ୧୪ଟି ମେଣ୍ଢା ପାଳନ କରାଯାଇଛି । କେନ୍ଦୁଝର ଜିଲ୍ଲା କୁକୁଡ଼ା ପାଳନ ଫାର୍ମଠାରେ ୩୯୪ଟି କୁକୁଡ଼ା ପାଳନ କରଯାଇ ମାସକ ମଧ୍ୟରେ ୫,୫୮୫ଟି ଅଣ୍ଡା ଗଞ୍ଜାମ ଜିଲ୍ଲାର ଭଞ୍ଜନଗର ଫାର୍ମରେ ୯୬୨ଟି କୁକୁଡ଼ା ପାଳନ କରାଯାଇ ୪,୭୭୯ଟି ଅଣ୍ଡା, କୋରାପୁଟ ଫାର୍ମରେ ୧,୧୦୮ଟି କୁକୁଡ଼ାପାଳନ ଓ ୧୨,୫୪୦ଟି ଅଣ୍ଡା, ଭୁବନେଶ୍ୱର ଫାର୍ମରେ ୧୯୧୦ଟି କୁକୁଡ଼ା ଓ ୮,୩୯୩ଟି ଅଣ୍ଡା ଏବଂ ଅନୁଗୁଳ ଫାର୍ମରେ ୬୨୬୭ଟି କୁକୁଡ଼ା ଓ ୬୨,୮୫୬ଟି ଅଣ୍ଡା ଉତ୍ପାଦନ କରାଯାଇଛି ।

---

## ଶିକ୍ଷାନୁଷ୍ଠାନଗୁଡ଼ିକ ରାଜନୀତିର ଦୂରରେ ରହିବା ଉଚିତ : ମହାପାତ୍ର

ପୁରୀ ଜିଲ୍ଲା ଖଣ୍ଡପଡ଼ା ନିର୍ବାଚନମଣ୍ଡଳୀ ଅନ୍ତର୍ଗତ ଭାପୁର ବ୍ଲକରେ ଥିବା ଗୋଳାପୋଖରୀ ହାଇସ୍କୁଲର ରୌପ୍ୟଜୟନ୍ତୀ ଉତ୍ସବ ଗତ ଜୁଲାଇ ୧୧ ତାରିଖରେ ଅନୁଷ୍ଠିତ ହୋଇଥିଲା । ଏହି ଉତ୍ସବରେ ଶିକ୍ଷା ଓ ଯୁବ କଲ୍ୟାଣ ମନ୍ତ୍ରୀ ଶ୍ରୀ ଗଙ୍ଗାଧର ମହାପାତ୍ର ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ । ହାଇସ୍କୁଲ ପ୍ରାଙ୍ଗଣରେ ଏକ ସାଧାରଣ ସଭା ହୋଇଥିଲା । ଉକ୍ତ ସଭାରେ ଶ୍ରୀ ମହାପାତ୍ର କହିଲେ ଯେ ଖଣ୍ଡପଡ଼ାର ଐତିହ୍ୟ ଅତି ମହାନ୍ । ସାମନ୍ତ ଚନ୍ଦ୍ରଶେଖରଙ୍କ ପରି ଜ୍ୟୋତିର୍ବିଦ୍‌ଙ୍କୁ ଏ ମାଟି ଜନ୍ମ ଦେଇଥିଲା । ଜ୍ୟୋତିଷ ଶାସ୍ତ୍ରକୁ ତାଙ୍କର ଦାନ ଅତୁଳନୀୟ । ସେହି ମହାନ୍ ବ୍ୟକ୍ତିଙ୍କୁ ସ୍ମରଣୀୟ ରଖିବାକୁ ତାଙ୍କ ନାମରେ ପୁରୀ ମହାବିଦ୍ୟାଳୟକୁ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ ରଖାଯାଇଛି ।

ପ୍ରତ୍ୟେକ ଶିକ୍ଷାନୁଷ୍ଠାନ ଏକ ପବିତ୍ର ଓ ସାଧନ ପୀଠ । ଏଥିରେ ରାଜନୀତି ପ୍ରବେଶ କଲେ ପବିତ୍ରତା ନଷ୍ଟ ହେବା ସଙ୍ଗେ ସଙ୍ଗେ ଶିକ୍ଷାର ଅବନତି ମଧ୍ୟ ଘଟେ । ତେଣୁ, ଶିକ୍ଷାନୁଷ୍ଠାନମାନଙ୍କୁ ରାଜନୀତିଠାରୁ ଦୂରରେ ରଖିବାକୁ ସମାଜର ସବୁ ଶ୍ରେଣୀର ଲୋକ ଯତ୍ନବାନ ହେବା ନିତାନ୍ତ ଜରୁରୀ ଓ ଆବଶ୍ୟକ । ପ୍ରତ୍ୟେକ ଶିକ୍ଷାନୁଷ୍ଠାନ ଶୃଙ୍ଖଳାର ମୂଳପୀଠ ଓ ଦେଶ ଓ ଜାତିର ଉନ୍ନତିର ମାନଦଣ୍ଡ । ତେଣୁ, ଏଗୁଡ଼ିକ ସୁସ୍ଥରୂପେ ପରିଚାଳିତ ହେଲେ ଛାତ୍ରମାନଙ୍କର ମଙ୍ଗଳ ହେବା ସଙ୍ଗେ ସଙ୍ଗେ ଜାତୀୟ ସଂହତି ଦୃଢ଼ ହେବବୋଲି ଶ୍ରୀ ମହାପାତ୍ର କହିଥିଲେ ।

---

## ପଲ୍ଲୀବସ୍ତ୍ର କେନ୍ଦ୍ର ଉଦ୍‌ଘାଟିତ

ଗତ ଜୁଲାଇ ୧୦ ତାରିଖ ଦିନ ଜଗତସିଂହପୁର ସବ୍‌ଡ଼ିଭିଜନ ଅନ୍ତର୍ଗତ ନାଉଗାଁ ବ୍ଲକ୍‌ଠାରେ ପଲ୍ଲୀବସ୍ତ୍ର କେନ୍ଦ୍ର ଗୃହ ରାଜସ୍ୱ ଓ ପରିବହନ ମନ୍ତ୍ରୀ ଶ୍ରୀ ବାସୁଦେବ ମହାପାତ୍ର ଉଦ୍‌ଘାଟନ କରିଥିଲେ । ସେ କହିଲେ ଯେ ଏହି ଅଞ୍ଚଳର ଅସହାୟ ଓ ଅବହେଳିତ ମହିଳାମାନେ ଏହାଦ୍ୱାରା ବିଶେଷ ଉପକୃତ ହେବେ । ଗରିବ, ଅସହାୟ ଓ ଅବହେଳିତ ଲୋକଙ୍କ ଥଇଥାନ ପାଇଁ ଯେଉଁସବୁ ଯୋଜନା କାର୍ଯ୍ୟକାରୀ ହେଉଛି, ଏହି ଯୋଜନା ସେଗୁଡ଼ିକ ମଧ୍ୟରୁ ଅନ୍ୟତମ । ସରକାର ଏହି କେନ୍ଦ୍ର ପରିଚାଳନା କରିବାର ସବୁ ଦାୟିତ୍ୱ ବହନ କରୁଛନ୍ତି । ଏଥିରେ ୨୯ଜଣ ମହିଳା ତାଲିମ ପାଇବେ । ଏହି କେନ୍ଦ୍ର ଅଧିକ ଲୋକପ୍ରିୟ ହୋଇ ଏହାର ଉଦ୍ଦେଶ୍ୟ ସାଧନ କରିପାରିବ, ସେ ଦିଗରେ ସ୍ଥାନୀୟ ଲୋକଙ୍କ ସହଯୋଗ ଶ୍ରୀ ମହାପାତ୍ର କାମନା କରିଥିଲେ ।

ସେଦିନ ଶ୍ରୀ ମହାପାତ୍ର କାମୁଗାଁସ୍ଥିତ କଣ୍ଢେଇଆ ହାଇସ୍କୁଲର ପୁରସ୍କାର ବିତରଣୀ ଉତ୍ସବରେ ଯୋଗଦେଇ ଶିକ୍ଷାର ମାନବୃଦ୍ଧି ଶୃଙ୍ଖଳିତ ଜୀବନଯାପନ ଓ ସଂହତି ରକ୍ଷା ଦିଗରେ ସମସ୍ତଙ୍କର ମିଳିତ ଉଦ୍ୟମପାଇଁ ଉପସ୍ଥିତ ଶିକ୍ଷକ, ଛାତ୍ର ଓ ଜନସାଧାରଣଙ୍କୁ ଉଦ୍‌ବୋଧନ ଦେଇଥିଲେ ।

---

## ଗଞ୍ଜାମ ଜିଲ୍ଲାରେ କ୍ଷୁଦ୍ର ଓ କୁଟୀର ଶିଳ୍ପ ପ୍ରତିଷ୍ଠା

ଗଂଜାମ ଜିଲ୍ଲାରେ ଗତ ଆର୍ଥିକ ବର୍ଷରେ ୩କୋଟି ୩୧ଲକ୍ଷ ୭୧ ହଜାର ଟଂକା ବିନିଯୋଗରେ ୩୨୧ଟି କ୍ଷୁଦ୍ରଶିଳ୍ପ ଏବଂ ୨କୋଟି ୭୦ଲକ୍ଷ ୭୫ ହଜାର ଟଂକା ବିନିଯୋଗରେ ୯,୯୨୮ଟି କୁଟୀରଶିଳ୍ପ ପ୍ରତିଷ୍ଠାକରାଯାଇ ସେଗୁଡ଼ିକରେ ଯଥାକ୍ରମେ, ୨୯୦୮ ଜଣ ଓ ୧୪,୮୨୨ଜଣ ବ୍ୟକ୍ତିଙ୍କୁ ନିଯୁକ୍ତି ସୁବିଧା ଯୋଗାଇ ଦିଆଯାଇଛି । ଉଭୟ ଶିଳ୍ପରେ ଗତ ଆର୍ଥିକବର୍ଷପାଇଁ ଧାର୍ଯ୍ୟ କରାଯାଇଥିବା ଲକ୍ଷ୍ୟ ଅତିକ୍ରମ କରାଯାଇପାରିଛି । ଗତ ଆର୍ଥିକ ବର୍ଷରେ ଜିଲ୍ଲାରେ ୨ଶହ ୯୦ଟି କ୍ଷୁଦ୍ରଶିଳ୍ପ ଏବଂ ୫,୦୦୦ କୁଟୀରଶିଳ୍ପ ପ୍ରତିଷ୍ଠାପାଇଁ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିଲା ।

---

## ସମ୍ବଲପୁରରେ ରାଷ୍ଟ୍ରୀୟ ସଂହତି ଦିବସ

ଗତ ୨୭ ତାରିଖରେ ରାଷ୍ଟ୍ରୀୟ ସଂହତି ଦିବସ ସମ୍ବଲପୁର ଜିଲ୍ଲାରେ ମହାସମାରୋହରେ ପାଳନ କରାଯାଇଥିଲା । ଏହି ଉପଲକ୍ଷେ ସମ୍ବଲପୁରର ସମସ୍ତ ମନ୍ଦିର, ମସ୍‌ଜିଦ୍ ଓ ଚର୍ଚ୍ଚରେ ପ୍ରାର୍ଥନା କରାଯାଇଥିଲା ଓ ନାରୀ ସେବା ସଦନଠାରେ ଗୋଟିଏ ସଭାର ଆୟୋଜନ କରାଯାଇଥିଲା । ଏହି ସଭାରେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ୍ ଓ ଶିଖ୍ ସଂପ୍ରଦାୟର ବହୁ ଲୋକ ଯୋଗ ଦେଇଥିଲେ । ଏହି ସଭାରେ ବାଣିଜ୍ୟ, ଶ୍ରମ ଓ କର୍ମ ଯୋଗାଣ ମନ୍ତ୍ରୀ ଶ୍ରୀ ଉପେନ୍ଦ୍ର ଦୀକ୍ଷିତ ସଭାପତିତ୍ୱ କରିଥିଲେ । ସଭାର ଆରମ୍ଭରେ ବିଭିନ୍ନ ଧର୍ମାବଲମ୍ବୀ ଗୁରୁମାନେ ତାଙ୍କର ପବିତ୍ର ଧର୍ମଗ୍ରନ୍ଥ ପାଠ କରିଥିଲେ ଓ ଛୋଟ ଛୋଟ ପିଲାମାନେ ଦେଶାତ୍ମବୋଧ ଗୀତ ଗାଇଥିଲେ ।

---

## ଅନ୍ଧତ୍ୱ ଦୂରୀକରଣ ପାଇଁ ବ୍ୟାପକ ଯୋଜନା

ଅନ୍ଧତ୍ୱର ପ୍ରତିରୋଧ ଏବଂ ତାହାର ଦୂରୀକରଣ ସଂପର୍କରେ ଆଲୋଚନା କରିବା ପାଇଁ ଜୁଲାଇ ୨ ତାରିଖରେ ସଚିବାଳୟଠାରେ ରାଜ୍ୟସ୍ତରୀୟ କମିଟିର ବୈଠକ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଯୁଗଳ କିଶୋର ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ଅନ୍ଧତ୍ୱ ଦୂରୀକରଣ ପାଇଁ ଗ୍ରାମାଞ୍ଚଳରେ ବସବାସ କରୁଥିବା ଜନସାଧାରଣ, ଯେଉଁମାନଙ୍କ ପାଇଁ ଚକ୍ଷୁ ଚିକିତ୍ସା ବ୍ୟବସ୍ଥାର ପର୍ଯ୍ୟାପ୍ତ ସୁବିଧା ନାହିଁ, ସେମାନଙ୍କର ଚକ୍ଷୁ ଚିକିତ୍ସା ତଥା ଅସ୍ତ୍ରୋପଚାର ଜରିଆରେ ଅନ୍ଧତ୍ୱ ଦୂରୀକରଣ ପାଇଁ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ପକ୍ଷରୁ ଚକ୍ଷୁ ଡାକ୍ତରମାନଙ୍କ ସହଯୋଗରେ ଯେଉଁ ଉଦ୍ୟମ ହେଉଛି, ଶ୍ରୀ ପଟ୍ଟନାୟକ ତାହାର ଭୂୟସୀ ପ୍ରଶଂସା କରିଥିଲେ ଏବଂ ଏ କାର୍ଯ୍ୟକ୍ରମ ଫଳରେ ବହୁ ପରିମାଣରେ ଏଥିପ୍ରତି ଲୋକଙ୍କର ଆଗ୍ରହ ଜାତ ହୋଇଛି । ଏହାକୁ ପ୍ରଧାନମନ୍ତ୍ରୀଙ୍କ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ କରାଯାଇଛି । ଗ୍ରାମାଞ୍ଚଳରେ ଚକ୍ଷୁ ଚିକିତ୍ସା ଶିବିରମାନ ଖୋଲଯାଇ ରୋଗ ନିର୍ଣ୍ଣୟ କରିବା ସଙ୍ଗେ ସଙ୍ଗେ ଆବଶ୍ୟକ ସ୍ଥଳେ ଅସ୍ତ୍ରୋପଚାର କରାଯାଇଥାଏ ଏବଂ ଏଥିପାଇଁ ସରକାରୀ ସହାୟତାରେ ଯୋଗାଇ ଦିଆଯାଇଥାଏ । ଏହି ଜାତୀୟ କାର୍ଯ୍ୟକ୍ରମର ସଫଳତା ପାଇଁ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକର ସହଯୋଗ କାମନା କରିବା ସଙ୍ଗେ ସଙ୍ଗେ ଗତବର୍ଷ ପରି ଚଳିତ ବର୍ଷ ୩୦ ହଜାର ଚକ୍ଷୁ ଅସ୍ତ୍ରୋପଚାର ଲକ୍ଷ୍ୟ ହାସଲ ଅତିକ୍ରମ କରିବା ପାଇଁ ନିଷ୍ଠାପର ଉଦ୍ୟମ କରିବାକୁ ଶ୍ରୀପଟ୍ଟନାୟକ ଅନୁରୋଧ କରିଥିଲେ । ରାଜ୍ୟର ପ୍ରତ୍ୟେକ ମେଡିକାଲ କଲେଜକୁ ଚକ୍ଷୁ ଚିକିତ୍ସା ଉଦ୍ଦେଶ୍ୟରେ ଗୋଟିଏ କରି ଭ୍ରାମ୍ୟମାଣ ୟୁନିଟ୍ ଯୋଗାଇ ଦିଆଯାଇଛି । ଏହି ୟୁନିଟ୍‌ଗୁଡ଼ିକ ବିଭିନ୍ନ ଜିଲ୍ଲାର ଗ୍ରାମାଞ୍ଚଳକୁ ଯାଇ ମାସିକ ଅନ୍ୟୁନ ୨ଟି ଚକ୍ଷୁ ଚିକିତ୍ସା ଶିବିର ଆୟୋଜନ କରିପାରିବେ । ଶିବିରରେ ଡାକ୍ତରମାନେ ଚକ୍ଷୁରୋଗୀମାନଙ୍କର ରୋଗ ନିର୍ଣ୍ଣୟ କରି ଆବଶ୍ୟକ ସ୍ଥଳେ ଅସ୍ତ୍ରୋପଚାର କରିଥାନ୍ତି ଏବଂ ପ୍ରତି ଶିବିରରେ କରାଯାଇଥାଏ । ଏକଶହ ପର୍ଯ୍ୟନ୍ତ ଅସ୍ତ୍ରୋପଚାର ଏହା ବ୍ୟତୀତ ସଂପୃକ୍ତ ଅଞ୍ଚଳ ସ୍କୁଲ ଛାତ୍ରଛାତ୍ରୀମାନଙ୍କର ଚକ୍ଷୁ ପରୀକ୍ଷା କରି ଚଷମା ବ୍ୟବହାର ପାଇଁ ପରାମର୍ଶ ଦିଆଯାଇଥାଏ ଏବଂ ଆବଶ୍ୟକ ସ୍ଥଳେ ମାଗଣାରେ ଚଷମା ଯୋଗାଇ ଦିଆଯାଇଥାଏ । ରାଜ୍ୟର ୬୦ଟି ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରକୁ ଚକ୍ଷୁ ଚିକିତ୍ସା ସହାୟକ ଏବଂ ଆବଶ୍ୟକ ପଡୁଥିବା ଯନ୍ତ୍ରପାତି ଯୋଗାଇ ଦେବା ପାଇଁ ପଦକ୍ଷେପ ନିଆଯାଇଛି । ବର୍ତ୍ତମାନ ସୁଦ୍ଧା ୨୩ଟି କେନ୍ଦ୍ରକୁ ଚକ୍ଷୁ ଚିକିତ୍ସା ସହାୟକ ଯୋଗାଇ ଦିଆଯାଇ ସାରିଲାଣି ଏବଂ ଅବଶିଷ୍ଟ ୩୭ଟି କେନ୍ଦ୍ରକୁ ଚକ୍ଷୁ ଚିକିତ୍ସା ସହାୟକ ଯୋଗାଇ ଦେବା ପାଇଁ ପଦକ୍ଷେପ ନିଆଯାଇଛି । ଚଳିତ ବର୍ଷ ୧୫ଟି ସ୍ୱାସ୍ଥ୍ୟକେନ୍ଦ୍ର ସହାୟକ ଓ ଯନ୍ତ୍ରପାତି ଯୋଗାଇ ଦିଆଯିବ । ଜିଲ୍ଲା ସଦର ମହକୁମା, ରାଜଧାନୀ ଡାକ୍ତରଖାନା ଓ କେତେକ ମୁଖ୍ୟ ସବ୍‌ଡିଭିଜନାଲ ସ୍ତରୀୟ ଡାକ୍ତରଖାନାରେ ଚକ୍ଷୁ ବିଶେଷଜ୍ଞଙ୍କୁ ଅବସ୍ଥାପିତ କରାଯାଇଛି । ଅବଧି ୧୨ଟି ଜିଲ୍ଲା-ଡାକ୍ତରଖାନାରେ ଚକ୍ଷୁ ରୋଗ ନିର୍ଣ୍ଣୟ କରିବା ପାଇଁ ଆବଶ୍ୟକ ପଡୁଥିବା ଯନ୍ତ୍ରପାତି ଯୋଗାଇ ଦିଆଯାଇ ସାରିଲାଣି । ଚଳିତ ବର୍ଷ ଭୁବନେଶ୍ୱର ରାଜଧାନୀ ଡାକ୍ତରଖାନା ଏବଂ ଅବଶିଷ୍ଟ ଗୋଟିଏ ଜିଲ୍ଲାସ୍ତରୀୟ ଡାକ୍ତରଖାନାକୁ ଯନ୍ତ୍ରପାତି ଯୋଗାଇ ଦିଆଯିବ ।

ଚକ୍ଷୁରୋଗୀଙ୍କ ଚିକିତ୍ସା ପାଇଁ ରାଜ୍ୟର ତିନିଗୋଟି ମେଡିକାଲ କଲେଜକୁ କେନ୍ଦ୍ରୀୟ ସହାୟତାରେ ଅତ୍ୟାଧୁନିକ ଯନ୍ତ୍ରପାତି ଯୋଗାଇ ଦିଆଯାଇଛି ଏବଂ ଏହି ମେଡିକାଲ କଲେଜଗୁଡ଼ିକୁ ଉନ୍ନତ କରାଯାଇ ଶଯ୍ୟା ଏବଂ କର୍ମଚାରୀ ସଂଖ୍ୟା ବୃଦ୍ଧି କରାଯାଇଛି ।

---

## ସୁନାପେଣ୍ଡର ଗ୍ରାମ ପରିଚାଳକ

କେନ୍ଦୁଝରଠାରୁ ୭୬ କିଲୋମିଟର ଦୂରରେ ସୁନାପେଣ୍ଡ ଗ୍ରାମ ଅବସ୍ଥିତ । ଏହି ଗ୍ରାମଟି ହରିଚନ୍ଦନପୁର ବ୍ଲକର ସୁନାପେଣ୍ଡ ପଞ୍ଚାୟତରେ ଅବସ୍ଥିତ । ଏହି ଗ୍ରାମ ନିକଟରେ ବାଘିରା ବୋଲି ଗୋଟିଏ ନାଳ ବହି ଯାଉଛି ଏବଂ ବାଘିରା କ୍ଷୁଦ୍ର ଜଳସେଚନ ଏହା ନିକଟରେ ଅବସ୍ଥିତ । ଏହି ଗ୍ରାମରେ ୧୨୫ଟି ଘର ଏବଂ ଏହାର ଲୋକସଂଖ୍ୟା ଏକହଜାର । ଆଦିବାସୀ ହରିଜନଙ୍କ ସଂଖ୍ୟା ବହୁତ । ଏହି ଗ୍ରାମର ସମୂହ ବିକାଶ ନିମନ୍ତେ ଗ୍ରାମବାସୀମାନେ ଏକାଠି ବସି ଏକ ସରଳ ନିରାଡ଼ମ୍ବର ଏବଂ ଉଦ୍ୟମୀ ଯୁବକ ଶ୍ରୀ ମାୟାଧର ନାୟକଙ୍କୁ ଗ୍ରାମର ଗ୍ରାମ ପରିଚାଳକ ରୂପେ ନିର୍ବାଚିତ କଲେ । ଏହା ପରେ ଗ୍ରାମବାସୀଙ୍କର ଏହି ଉଦ୍ୟମ ତତ୍‌କାଳୀନ ବି. ଡି. ଓ.ଙ୍କୁ ଜଣାଇ ଦିଆଗଲା । ବି. ଡି. ଓ.ଙ୍କ ସୁପାରିଶ କ୍ରମେ ମାୟାଧର ନାୟକ ଗୋନାସିକାଠାରେ ପ୍ରଥମ କରି ଗଢ଼ି ଉଠିଥିବା ଗ୍ରାମ ପରିଚାଳକ ଅନୁଷ୍ଠାନକୁ ତାଲିମ୍ ପାଇବାକୁ ଗଲେ । ତାଲିମ୍ ପାଇ ସାରିଲା ପରେ ଅକ୍‌ଟୋବର ୧୯୮୨ ମସିହାରେ ଗାଁକୁ ଫେରିଲେ । ମାୟାଧର ନାୟକ ଅଣତିରିଶ ବର୍ଷର ଏକ ଉଦ୍ୟମୀ ବିବାହିତ ଯୁବକ ଏବଂ ତିନୋଟି ସନ୍ତାନର ପିତା । ତାଲିମ୍ ପ୍ରାପ୍ତ ମାୟାଧର ନାୟକ ଗ୍ରାମର ହାନୀ ଲାଭରେ ନିଜକୁ ସାମିଲ କରି ଗାଁର ସର୍ବବିଧ ଉନ୍ନତି ନିମନ୍ତେ ସବୁ ପ୍ରକାର ଉଦ୍ୟମ କଲେ । ସରକାର ଓ ଗ୍ରାମବାସୀଙ୍କ ମଧ୍ୟରେ ଏକ ସହଯୋଗୀ ରୂପେ ନିଷ୍ଠାର ସହିତ କାର୍ଯ୍ୟ କରିବାକୁ ଲାଗିଲେ । ପହଞ୍ଚିବାର ଅଳ୍ପଦିନ ପରେ ଜଣେକ ଗ୍ରାମବାସୀ ଶ୍ରୀ ନରବାସୀ ପାତ୍ର ଯେ କି ବାଲିମାଟି ଡ୍ୟାମ୍‌ରେ କାମ କରୁଥିଲେ ତାଙ୍କର ଆକସ୍ମିକ ଦୁର୍ଘଟଣାଜନିତ ମୃତ୍ୟୁ



ହରିଚନ୍ଦନପୁର ବ୍ଲକ୍‌ର ଗ୍ରାମ ପରିଦର୍ଶକ ଶ୍ରୀ ମାୟାଧର ନାୟକ ନିଜେ ଗ୍ରାମ ଯୁବକମାନଙ୍କ ସହିତ ଗହମଚାଷ ନିମନ୍ତେ ଜମିରେ ହଳ କରୁଛନ୍ତି । ଜମି ନିକଟସ୍ଥ ଅନ୍ୟ ସ୍ଥାନରେ ଅନ୍ୟାନ୍ୟ ଯୁବକମାନେ କଦଳୀ ଚାଷ ନିମନ୍ତେ ଗାତ ଖୋଳୁଛନ୍ତି ।

ସମ୍ବାଦ ପାଇ ତାଙ୍କର ସତ୍କାର ଓ ତାଙ୍କ ପରିବାରର ଭରଣ-
ପୋଷଣ ନିମନ୍ତେ ସମସ୍ତ ଚେଷ୍ଟା କରିଥିଲେ । ତତ୍‌କାଳୀନ
ଜିଲ୍ଲାପାଳଙ୍କ ସଙ୍ଗେ ସମ୍ପର୍କ ସ୍ଥାପନ କରି ଶ୍ରୀ ପାତ୍ରଙ୍କ ସାନ
ଭାଇକୁ ଇ. ଆର. ଆର. ପି. ଯୋଜନାରେ ଥଇଥାନ କରାଇ
ତାଙ୍କର ବିଧବା ପତ୍ନୀ ଏବଂ ଶିଶୁ ସନ୍ତାନର ଭରଣ ପୋଷଣ
ପାଇଁ ବ୍ୟବସ୍ଥା କରିଥିଲେ । ଏହା ଛଡ଼ା ୧୧ ଜଣ
ଆଦିବାସୀଙ୍କୁ ବି. ଡି. ଓ., ହରିଚନ୍ଦନପୁରଙ୍କ ସହିତ ଆଲୋଚନା
କରି ସେମାନଙ୍କର ଥଇଥାନ କରାଇବା ସଙ୍ଗେ ସଙ୍ଗେ
ସରକାରଙ୍କର ଯୋଜନା ଅନୁଯାୟୀ ସେମାନଙ୍କ ନିମନ୍ତେ
ବାସଗୃହର ମଧ୍ୟ ବ୍ୟବସ୍ଥା କରାଇ ଦେଇଛନ୍ତି । ଓଡ଼ିଶାର
ମୁଖ୍ୟ ଶାସନ ସଚିବ ଶ୍ରୀଯୁକ୍ତ ଜ୍ଞାନଚନ୍ଦ, ଆଇ. ଏ. ଏସ. ତାଙ୍କର
ସାମ୍ପ୍ରତିକ କେନ୍ଦୁଝର ଜିଲ୍ଲା ଗସ୍ତ ସମୟରେ ଏହି କାର୍ଯ୍ୟକ୍ରମକୁ
ପରିଦର୍ଶନ କରି ପ୍ରଶଂସା କରିବା ସଙ୍ଗେ ସଙ୍ଗେ ସନ୍ତୋଷ ପ୍ରକାଶ
କରିଛନ୍ତି । ହରିଚନ୍ଦନପୁର ଲ୍ୟାମ୍ପସରୁ ରବି ଫସଲ ପାଇଁ ଲୋନରେ
ତିନି କୁଇଣ୍ଟାଲ ଗହମ ବିହନ ଆଣି ଉକ୍ତ ଗ୍ରାମରେ ପ୍ରଥମ କରି ଦଶଜଣ
ଚାଷୀଙ୍କ ଦ୍ୱାରା ଗହମ ଚାଷ କରାଇ ବିହନ ଋଣ ପରିଶୋଧ
କରିବା ସଙ୍ଗେ ସଙ୍ଗେ ସମସ୍ତେ ଏହି ଚାଷ ନିମନ୍ତେ ଉଦ୍‌ବୋଧିତ
ହୋଇଥିଲେ ଓ ଗ୍ରାମର ଅନ୍ୟାନ୍ୟ ଚାଷୀମାନେ ଏହି ଗହମ
ଚାଷ ନିମନ୍ତେ ଆଗ୍ରହୀ ହୋଇ ପାରିଛନ୍ତି । ରବି ଋତୁରେ
ଶ୍ରୀ ନାୟକ ନିଜ ଗ୍ରାମର ଚାଷୀମାନଙ୍କ ମଧ୍ୟରେ ପ୍ରଥମ କରି
ଆଳୁ ଚାଷର ଆଗ୍ରହ ସୃଷ୍ଟି ନିମନ୍ତେ ଗ୍ରାମର ଚାଷୀମାନଙ୍କୁ

ଉତ୍ସାହିତ କରିବା ନିମନ୍ତେ ନିଜେ ଦେଢ଼ କୁଇଣ୍ଟାଲ ଆଳୁ
ବିହନ ଆଣି ଆଳୁ ଚାଷ କରି ପରୀକ୍ଷା ସ୍ୱରୂପ ଏହା ଏକ ଲାଭ
ଜନକ ଚାଷ ବୋଲି ଗ୍ରାମର ଚାଷୀମାନଙ୍କୁ ହୃଦବୋଧ କରାଇ
ପାରିଥିଲେ । ଯାହା ଫଳରେ କି ଏହି ଗ୍ରାମର ଚାଷୀମାନେ
ଆଳୁଚାଷ ନିମନ୍ତେ ଏବେ ଯଥେଷ୍ଟ ଆଗ୍ରହ ପ୍ରକାଶ କରୁଛନ୍ତି ।
ଏ ବର୍ଷ ଶ୍ରୀ ନାୟକ ଗ୍ରାମର ଚାଷୀମାନଙ୍କ ମଧ୍ୟରେ ଅର୍ଥକରୀ
ଫସଲର ପ୍ରଦର୍ଶନ ନିମନ୍ତେ ଏବଂ ପ୍ରଧାନମନ୍ତ୍ରୀଙ୍କ ବିଂଶସୂତ୍ରୀ
କାର୍ଯ୍ୟକ୍ରମ ଅନୁଯାୟୀ ତୈଳବୀଜ ଓ ଡାଲି ଜାତୀୟ ଫସଲର

ପରିବେଶ ସୃଷ୍ଟି କରିବା ନିମନ୍ତେ ଗ୍ରାମର ଚାଷୀମାନଙ୍କ ମଧ୍ୟରେ
କଦଳୀ ଚାଷ, ଗହମ ଚାଷ, ବିଭିନ୍ନ ଡାଲି ଜାତୀୟ ଓ ତୈଳ
ବୀଜ ଫସଲ ନିମନ୍ତେ ପଦକ୍ଷେପ ନେଇଛନ୍ତି । ଚଳିତ
ଖରିଫ୍ ଋତୁରେ ଗହମ ଓ କଦଳୀ ପ୍ରଭୃତି ବିଭିନ୍ନ ଫଳଚାଷ
ନିମନ୍ତେ ଗ୍ରାମର ଯୁବକମାନଙ୍କୁ ଏକତ୍ରିତ କରି ଶ୍ରୀ ନାୟକ
ଜମି ପ୍ରସ୍ତୁତି, ସାର ପ୍ରୟୋଗ, ଚାରା ରୋପଣ ପ୍ରଭୃତି କାର୍ଯ୍ୟ
ଆରମ୍ଭ କରି ଦେଇଛନ୍ତି । ମାସକ ତଳେ ଗାଁର ଧୀବର
ସାହିରେ ଆମାଶୟ ରୋଗ ଲାଗିଥିଲା । ଏ ଖବର ବ. ଡି. ଓ.ଙ୍କୁ
ଦେବା ସଙ୍ଗେ ସଙ୍ଗେ ଡାକ୍ତରଙ୍କୁ ଖବର ମଧ୍ୟ ଦେଇଥିଲେ ।
ବି. ଡି. ଓ.ଙ୍କ ପରାମର୍ଶରେ ଘଗାମୁଣ୍ଡା ପି. ଏଚ. ସି.କୁ ଯାଇ
ସେଠାରୁ ଡାକ୍ତର ଓ ଆବଶ୍ୟକୀୟ ଔଷଧପତ୍ର ଆଣି ରୋଗୀ-
ମାନଙ୍କୁ ତୁରନ୍ତ ଚିକିତ୍ସା କରାଇଥିଲେ ଏବଂ ଦୁଇଜଣ
ସାଂଘାତିକ ରୋଗୀଙ୍କୁ ଘଗାମୁଣ୍ଡା ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରର
ଡାକ୍ତରଙ୍କ ସଙ୍ଗେ ନେଇ ତାଙ୍କର ସମସ୍ତ ଚିକିତ୍ସା ବ୍ୟବସ୍ଥା
କରାଇଥିଲେ । ଏହା ଫଳରେ ଉକ୍ତ ଦୁଇଜଣ ରୋଗୀ
ଆରୋଗ୍ୟ ଲାଭ କରିବା ସଙ୍ଗେ ସଙ୍ଗେ ଜିଲ୍ଲା ସ୍ୱାସ୍ଥ୍ୟ କର୍ତ୍ତୃପକ୍ଷ
ଏବଂ ଜିଲ୍ଲାର ପ୍ରଶାସନିକ ସଂସ୍ଥା ଏପରି ଏକ ମାରାତ୍ମକ
ରୋଗର ପ୍ରସାରର ପ୍ରତିଷେଧ ନିମନ୍ତେ ସଚେତନ ହୋଇଥିଲେ ।
ଏତଦ୍ ବ୍ୟତୀତ ଶ୍ରୀ ନାୟକ ନିଜ ଗ୍ରାମରେ ପ୍ରୌଢ଼ ଶିକ୍ଷା
କେନ୍ଦ୍ରର ଉପଦେଷ୍ଟା ଭାବେ ଗାଁର ବୟସ୍କ ଅଶିକ୍ଷିତମାନଙ୍କୁ
ଶିକ୍ଷାର ଉପକାରିତା ସମ୍ବନ୍ଧରେ ପ୍ରବର୍ତ୍ତାଇ ପ୍ରୌଢ଼ ଶିକ୍ଷାକେନ୍ଦ୍ରରେ
ସେମାନଙ୍କ ସାକ୍ଷର କରାଇବା ନିମନ୍ତେ ବ୍ୟବସ୍ଥା କରାଇଛନ୍ତି ।
ଯାହା ଫଳରେ କି ଗ୍ରାମର ବହୁ ବୟସ୍କ ପୁରୁଷ ଏବଂ ମହିଳା
ସାକ୍ଷର ହେବା ନିମନ୍ତେ ଆଗ୍ରହ ପ୍ରକାଶ କରିଛନ୍ତି । ବର୍ତ୍ତମାନ
ସେମାନଙ୍କ ମଧ୍ୟରୁ ତିରିଶ ଜଣଙ୍କୁ ପ୍ରୌଢ଼ ଶିକ୍ଷା କେନ୍ଦ୍ରରେ
ଶିକ୍ଷା ଦାନ କରା ଯାଉଅଛି । ଏତଦ୍ ବ୍ୟତୀତ ଗ୍ରାମରେ
ସରକାରଙ୍କ ନିୟମ ଅନୁଯାୟୀ ଗ୍ରାମବାସୀଙ୍କ ମଧ୍ୟରେ
ଅତ୍ୟାବଶ୍ୟକ ପଦାର୍ଥର ବଣ୍ଟନର ସୁବ୍ୟବସ୍ଥା ପ୍ରତି ମଧ୍ୟ
ଶ୍ରୀ ନାୟକ ଏବଂ ତାଙ୍କର ଯୁବକ ବନ୍ଧୁମାନେ ବ୍ୟବସ୍ଥା କରିଛନ୍ତି
ଶ୍ରୀ ନାୟକ କହନ୍ତି ଯେ, ଗ୍ରାମ ପରିଦର୍ଶକ ହିସାବରେ

ଗୋନାସିକାଠାରେ ତାଲିମ କେନ୍ଦ୍ରରେ ନେଇଥିବା ତାଲିମ୍ କାର୍ଯ୍ୟକ୍ରମାନୁଯାୟୀ ନିଜର ତଥା ଗ୍ରାମବାସୀମାନଙ୍କର ଉନ୍ନତି ନିମନ୍ତେ ସେ ପ୍ରତିଜ୍ଞାବଦ୍ଧ । ତାଲିମ୍ ପୂର୍ବରୁ ନେଇଥିବା ସେ ଶପଥ ଅନୁଯାୟୀ ସେ ସରକାରର ବିଭିନ୍ନ ସଂସ୍ଥା ତଥା ଗ୍ରାମବାସୀଙ୍କ ମଧ୍ୟରେ ସମନ୍ୱୟତା ରକ୍ଷାକରି ନିଜର ଗ୍ରାମବାସୀଙ୍କର ଉନ୍ନତି କରିବା ସଙ୍ଗେ ସଙ୍ଗେ ନିଜ ଦେଶର ଉନ୍ନତି କରିବା ପାଇଁ ସେ ସର୍ବଦା ଚେଷ୍ଟିତ ।

## ଚକଡିଆ ଗ୍ରାମ ପରିଚାଳକ

ଚିକିଣିଆ ଗ୍ରାମଟି କେନ୍ଦୁଝରଠାରୁ ଶୋହଳ କିଲୋମିଟର ଦୂରରେ ମୁଖ୍ୟ ରାସ୍ତା ପାର୍ଶ୍ୱରେ ଅବସ୍ଥିତ । ଗ୍ରାମଟି ଘଟଗାଁ ବ୍ଲକ୍ ଅନ୍ତର୍ଗତ ଅଟେ । ଉକ୍ତ ଗ୍ରାମର ଘର ସଂଖ୍ୟା ୧୨୦ ଏବଂ ଲୋକସଂଖ୍ୟା ୭୯୨ ଅଟେ । ନାୟକ, ମହନ୍ତ, ମହାରଣା, ରଜକ, କୁମ୍ଭାର ଏବଂ ଆଦିବାସୀ ହରିଜନ ଶ୍ରେଣୀର ଲୋକମାନେ ଏଠାରେ ବାସ କରନ୍ତି । ଏହି ଗ୍ରାମର ସମୂହ ବିକାଶ ନିମନ୍ତେ ଗ୍ରାମବାସୀମାନେ ଏକାଠି ବସି ଏକ ଉଦିୟମାନ ଯୁବକ ଶ୍ରୀ ଜୟଦେବ ମହାନ୍ତଙ୍କୁ ନିଜ ଗ୍ରାମର ଗ୍ରାମ ପରିଚାଳକଭାବେ ନିର୍ବାଚିତ କଲେ । ଏହାକୁ ସୁପାରିଶ ନିମନ୍ତେ ବି. ଡ଼ି. ଓ. ଙ୍କ ନିକଟକୁ ଗଲ ଏବଂ ବି. ଡ଼ି. ଓ. ଏଥିରେ ସମ୍ମତି ପ୍ରକାଶ କଲେ । ଏହାପରେ ଶ୍ରୀ ମହାନ୍ତ ଗୋନାସିକାଠାରେ ଅବସ୍ଥିତ ଗ୍ରାମ ପରିଚାଳକ ଅନୁଷ୍ଠାନକୁ ଗ୍ରାମ ପରିଚାଳନା ବିଷୟରେ ତାଲିମ ପାଇବାକୁ ଗଲେ । ଉପଯୁକ୍ତ ତାଲିମ ପାଇଲା ପରେ ୧୯୮୨ ଅକ୍ଟୋବର ମାସରେ ନିଜ ଗ୍ରାମକୁ ଫେରିଆସି ଗ୍ରାମର ସମୂହ ଉନ୍ନତି ଏବଂ ଗ୍ରାମବାସୀଙ୍କ ଅର୍ଥନୈତିକ ଅବସ୍ଥାର ଉନ୍ନତି ନିମନ୍ତେ ସରକାର ଓ ଗ୍ରାମବାସୀମାନଙ୍କ ମଧ୍ୟରେ ଉତ୍ତମ ସମନ୍ୱୟ ରକ୍ଷାକରି ସବୁପ୍ରକାର ଉଦ୍ୟମ କରିବାକୁ ଲାଗିପଡ଼ିଲେ ।

ଶ୍ରୀ ମହାନ୍ତଙ୍କ ପ୍ରଥମ କାର୍ଯ୍ୟ ହେଲା ଗ୍ରାମର ଯୁବକମାନଙ୍କୁ ଏକତ୍ରିତକରି ଗ୍ରାମର ବିଭିନ୍ନ ଉନ୍ନୟନ କରିବା । ଗାଁରେ ଥିବା ଏକ ଛୋଟ ଗଡ଼ିଆକୁ ଗଭୀର ଏବଂ ଚଉଡ଼ାକରି ଖୋଳି ଦିଆଗଲା । ଗ୍ରାମର ସ୍କୁଲଟିକୁ ମରାମତି କରାଇବା ସଙ୍ଗେ ସଙ୍ଗେ ଦୁଇ ବଖରା ଅଧିକା ଘର ମଧ୍ୟ ଗ୍ରାମର ଯୁବକମାନେ ସଂପୂର୍ଣ୍ଣ କଲେ । ଗ୍ରାମରେ ପ୍ରୌଢ଼ଶିକ୍ଷା କେନ୍ଦ୍ର ପ୍ରତିଷ୍ଠା, ମହିଳା ସମିତିର ଖାଦ୍ୟ ବଣ୍ଟନ , ଗ୍ରାମ ନିକଟରେ ଥିବା ଜଙ୍ଗଲ ସଫାକରି ଜଙ୍ଗଲ ସଂରକ୍ଷଣ, ଗ୍ରାମରୁ ମଦ ତିଆରି ମଦ ବ୍ୟବହାର ବନ୍ଦ କରିବା । ମୃତ୍ତିକା ସଂରକ୍ଷଣ ନିମନ୍ତେ ସରକାରଙ୍କର ବିଭିନ୍ନ କାର୍ଯ୍ୟକ୍ରମ ସଫଳରୂପେ କାର୍ଯ୍ୟ କରାଇବା, ଗ୍ରାମର ଚାଷୀମାନଙ୍କର ପ୍ରାଚୀନ ଚାଷ ପଦ୍ଧତିରେ ପରିବର୍ତ୍ତନକରି ଉନ୍ନତ ଧରଣର ଧାନଚାଷ, ମିଶ୍ରିତ ଫସଲ, ହରଡ଼, ଚିନାବାଦାମ,

ଦୁନାଦେଶ ଗ୍ରାମର ଗ୍ରାମ ସେବକ ଶ୍ରୀ ମାୟାଧର ନାଏକ ଗ୍ରାମର ଯୁବକମାନଙ୍କୁ କେଳିଡ ଓରିଫ ଢଗରେ ଗହମ ଚାଷ ଓ ଢିପ ଜମିରେ କଦଳୀ ଚାଷ ନିମନ୍ତେ ବୁଝାଉଛନ୍ତି ।





ଟିଦିଦିଆ ଗ୍ରାମର ଗ୍ରାମ ପରିସ୍ରଳକ ଶ୍ରୀ ଜୟଦେବ ମହାନ୍ତ ନିଜ ସାଇକେଲ ମରାମତି ଦୋକାନରେ ଗୋଟିଏ ସାଇକେଲ ମରାମତି କରୁଛନ୍ତି । ଏହି ଦୋକାନ ନିମନ୍ତେ ସେ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନା ଅନୁଯାୟୀ ଋଣ ନେଇଥିଲେ ।

ମକା ଓ ତୈଳବୀଜ ପ୍ରଭୃତି ଅର୍ଥକର ଫସଲର ଚାଷ, ଗ୍ରାମରେ ଶିକ୍ଷାର ପ୍ରସାର, ଗୋଚର ଜମିର ସୁରକ୍ଷା ପ୍ରଭୃତି କାର୍ଯ୍ୟ ଶ୍ରୀ ମହାନ୍ତଙ୍କଦ୍ୱାରା କାର୍ଯ୍ୟ କରାଯାଇ ପାରିଥିଛି । ଇ. ଆର. ଆର. ପି. ଯୋଜନା ଅନୁଯାୟୀ ଗ୍ରାମର ୧୦ଜଣଙ୍କୁ ଛାଗ ପାଳନ, ଦୁଇଜଣଙ୍କୁ ମତ୍ସ୍ୟଚାଷ ଏବଂ ଆଇ. ଆର. ଡ଼ି. ଯୋଜନା ଅନୁଯାୟୀ ୨ଜଣଙ୍କୁ କ୍ଷୁଦ୍ର ବ୍ୟବସାୟ କରିବା ନିମନ୍ତେ ଘଟଗାଁ ବି. ଡ଼ି. ଓ.ଙ୍କ ସାହାଯ୍ୟରେ ଶ୍ରୀ ମହାନ୍ତ କରାଇ ପାରିଛନ୍ତି । ଏତଦ୍‌ବ୍ୟତୀତ ଏହି ଅଞ୍ଚଳରେ କେତେକ ଅସାମାଜିକ ଲୋକଙ୍କର ଚୋରା କାରବାର, ଚୋରା ମଦ କାରବାର ଏବଂ ଯୁବତୀ କାରବାର ପ୍ରଭୃତି ଅନ୍ୟାୟ କାର୍ଯ୍ୟମାନ ମଧ୍ୟ ଗ୍ରାମର ଯୁବକମାନଙ୍କ ସାହାଯ୍ୟରେ ବନ୍ଦ କରାଇବାର ସଫଳତା ଲାଭ କରିଛନ୍ତି । ନିଜେ ନିଜର ଭରଣ ପୋଷଣ ନିମନ୍ତେ ପ୍ରଧାନ ରାସ୍ତା କଡ଼ରେ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନାରେ ନିଜକୁ ଅନ୍ତର୍ଭୁକ୍ତ କରାଇ ଋଣ ନେଇ ସାଇକେଲ ମରାମତି କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ନିଜ ଗ୍ରାମର ବିଭିନ୍ନ ଉନ୍ନତି ନିମନ୍ତେ ଏବେ ମଧ୍ୟ ଶ୍ରୀ ମହାନ୍ତ ଚେଷ୍ଟିତ । ଗ୍ରାମର ପରିସ୍ରଳକମାନଙ୍କଠାରୁ ଆରମ୍ଭ କରି ବୟସ୍କ ଲୋକମାନେ ମଧ୍ୟ ଏବେ ବି ବହୁ ବିଷୟରେ ଶ୍ରୀ ମହାନ୍ତଙ୍କ ପରାମର୍ଶ ଅନୁଯାୟୀ କାର୍ଯ୍ୟ କରୁଅଛନ୍ତି । ଶ୍ରୀ ମହାନ୍ତଙ୍କ ଭାଷାରେ ତାଙ୍କ ଜୀବନର ଆଦର୍ଶ ହେଉଛି ସେହି ତିନୋଟି କଥା ଯାହାକି କୋଣାର୍କଠାରେ ଗ୍ରାମ୍ୟ ପରିସ୍ରଳକ ତାଲିମ କେନ୍ଦ୍ରରେ ପ୍ରବେଶ ପୂର୍ବରୁ ସେ ଶପଥ ନେଇଥିଲେ ।

## ଅନୁନ୍ନତ ଅଞ୍ଚଳରେ ୧,୨୦୦ ଛାତ୍ରାବାସ ନିର୍ମାଣ କରାଯାଉଛି : ଶ୍ରୀଉଲାକା

ରାଜ୍ୟ ହରିଜନ ଓ ଆଦିବାସୀ କଲ୍ୟାଣ ମନ୍ତ୍ରୀ ଶ୍ରୀ ରାମଚନ୍ଦ୍ର ଉଲକା ଗତକାଲି ପୂର୍ବାହ୍ନରେ କୋରାପୁଟ ଜିଲ୍ଲା ଅନ୍ତର୍ଗତ ପୋଡ଼ାଗଡ଼ଠାରେ ଏକ ବାଳିକା ଉଚ୍ଚ ବିଦ୍ୟାଳୟ ଓ ମହାଦେଇପୁଟଠାରେ ଏକ ଆବାସିକ ସେବାଶ୍ରମ ଉଦ୍‌ଘାଟନ କରିଥିଲେ । ଅପରାହ୍ନରେ ଶ୍ରୀ ଉଲକା ପାତ୍ରୁଆଠାରେ ଉକ୍ତ ଜିଲ୍ଲାର ଅନ୍ୟତମ ବାଳିକା ଉଚ୍ଚ ବିଦ୍ୟାଳୟ ଉଦ୍‌ଘାଟନ କରିଥିଲେ ।

ଏହି ଉପଲକ୍ଷେ ଆୟୋଜିତ ସାଧାରଣ ସଭାମାନଙ୍କରେ ଭାଷଣ ଦେଇ ଶ୍ରୀ ଉଲକା ଆଦିବାସୀ ତଥା ଅନୁନ୍ନତ ଅଞ୍ଚଳରେ ଶିକ୍ଷାର ପ୍ରସାର ଉପରେ ଗୁରୁତ୍ୱ ଆରୋପ କରି କହିଥିଲେ ଯେ ଆଦିବାସୀ ଓ ହରିଜନ ଲୋକମାନେ ଶିକ୍ଷିତ ହେଲେ ସେମାନଙ୍କ ସମାଜରେ ଯୁଗ ଯୁଗ ଧରି ପ୍ରଚଳିତ କୁସଂସ୍କାର ଓ ଅନ୍ଧ ବିଶ୍ୱାସ ଦୂରୀଭୂତ ହୋଇପାରିବ ଏବଂ ତଦ୍ୱାରା ସେମାନେ ଏହି ସୁସ୍ଥ ସମାଜ ଗଠନ କରିପାରିବେ । ଏହି ପ୍ରସଙ୍ଗରେ ଶ୍ରୀଉଲକା ସୂଚାଇଥିଲେ ଯେ, ଅନୁନ୍ନତ ଅଞ୍ଚଳରେ ଶିକ୍ଷାର ପ୍ରସାର ଓ ପ୍ରୋତ୍ସାହନ ଉଦ୍ଦେଶ୍ୟରେ ରାଜ୍ୟରେ ୧,୨୦୦ ଟି ସ୍ୱଳ୍ପ ଖର୍ଚ୍ଚ ଛାତ୍ରାବାସ ନିର୍ମାଣ କରାଯାଉଛି । ଏହାଦ୍ୱାରା ପ୍ରାଥମିକ ସ୍ତରରେ ଆଦିବାସୀ ଓ ହରିଜନ ଛାତ୍ରଛାତ୍ରୀମାନେ ଉପକୃତ ହୋଇପାରିବେ ଏବଂ ଶିକ୍ଷା ପ୍ରତି ସେମାନେ ଅଧିକ ଉତ୍ସାହିତ ହେବେ ବୋଲି ଶ୍ରୀ ଉଲକା ଆଶା ପ୍ରକାଶ କରିଥିଲେ ।



# କୁଆଙ୍ଗ ଝିଅ କସ୍ତୁରୀ

କେନ୍ଦୁଝର ବାଂଶପାଳ ବ୍ଲକ୍‌ରେ ପଣସନସା ଗୋଟିଏ ଛୋଟ ଜୁଆଙ୍ଗ ଗାଁ । ଗାଁଟିରେ ୩୦ଟି ଜୁଆଙ୍ଗ ଘର ଓ ଲୋକସଂଖ୍ୟା ହେବ ପ୍ରାୟ ୧୫୦ । ଏହି ଗାଁର ଜୁଆଙ୍ଗ ଲୁନା ନାୟକ ଏବଂ ତା'ର ସ୍ତ୍ରୀ ମଙ୍ଗୁଳି ଦେଇ । ସକାଳୁ ସଞ୍ଜଯାଏ ଲୁନା ନାୟକ ପୋଡୁ ଖଣ୍ଡରେ ମୁଣ୍ଡଝାଳ ତୁଣ୍ଡରେମାରି ଯାହା ଆଣନ୍ତି ସେଥିରେ ସ୍ତ୍ରୀ, ୫ଟି ଝିଅ ଓ ଦୁଇଟି ପୁଅକୁ ନେଇ ତେଲ ଲୁଣର ସଂସାର କରନ୍ତି । ବଡ଼ଝିଅ ଦୁହିଙ୍କି ବାହା ଦେଲାପରେ ଘରେ ବର୍ତ୍ତମାନ ତାଙ୍କର ୩ଟି ଝିଅ ଆଉ ୨ଟି ପୁଅ । ଏମାନଙ୍କ ଭିତରୁ କସ୍ତୁରୀ ନାୟକ ବଡ଼ । ବାପା, ମା ଓ ଭାଇ ଭଉଣୀଙ୍କ ଦୈନ୍ୟ ଅବସ୍ଥାରେ ବିଚଳିତ ନ ହୋଇ କସ୍ତୁରୀ ନିଜ ଗ୍ରାମ ପଣସନସାଠାରୁ ୭ ମାଇଲ ଦୂରରେ ଥିବା ରାମଚନ୍ଦ୍ରପୁର ଉଚ୍ଚପ୍ରାଥମିକ ସ୍କୁଲରେ ପାଠ ପଢ଼ା ଆରମ୍ଭକଲେ । ସେଠାରୁ କୃତିତ୍ୱର ସହ ପାସ୍‌କରି ସୁଆକାଟୀଠାରେ ଥିବା ବାଳିକା ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ମାଟ୍ରିକ୍ ପର୍ଯ୍ୟନ୍ତ ପଢିବାକୁ ମନ ବଳାଇଲେ । ହେଲେ ଏତେ ପାଠ ପଢିବାପାଇଁ ଟଙ୍କା ଦେବ କିଏ ? ତଥାପି କଷ୍ଟେ ମଷ୍ଟେ ସୁଆକାଟୀ ସ୍କୁଲରେ ନାଁ ଲେଖାଇଲେ । କିନ୍ତୁ ଅଭାବ ଅନାଟନ ଭିତରେ ପଡ଼ି ୯ମ ଶ୍ରେଣୀରୁ ବାଧ୍ୟହୋଇ ପଢ଼ା ଛାଡ଼ିଦେଲେ । ।

ଇତି ମଧ୍ୟରେ କସ୍ତୁରୀ ଜୀବନରେ ଆସିଲା ନୂଆ ସକାଳ । ଜିଲ୍ଲା କର୍ତ୍ତୃପକ୍ଷ କେନ୍ଦୁଝରର ଗାଁ ଗାଁ ବୁଲି ସରକାରଙ୍କ ପ୍ରଗତି-ମୂଳକ କାର୍ଯ୍ୟକ୍ରମରେ କିପରି ଉପକୃତ ହେବେ, ସେ ବିଷୟରେ ଜନସାଧାରଣଙ୍କୁ ଅବଗତ କରାଉ ଥାନ୍ତି । କସ୍ତୁରୀର ପ୍ରତିଭା ଜିଲ୍ଲା କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କଲା । ଜଣେ ଜୁଆଙ୍ଗ ଝିଅର ପାଠ ପଢିବାପାଇଁ ଅଦମ୍ୟ ଆଗ୍ରହ ଦେଖି ଜିଲ୍ଲା କର୍ତ୍ତୃପକ୍ଷ ତା'ର ଉଚ୍ଚ ଶିକ୍ଷାପାଇଁ ସମସ୍ତ ସାହାଯ୍ୟ କଲେ । ନାମଲେଖା, ହଷ୍ଟେଲରେ ରହିବା, ଖାଇବାପିଇବା ଏବଂ ବହିପତ୍ର ଆଦିର ସରକାରୀ ବ୍ୟବସ୍ଥା ହେଲା । ଏହାଛଡ଼ା ମାସିକ ୫୩ଟଙ୍କା ଲେଖାଏଁ ଷ୍ଟାଇପେଣ୍ଡ ମଧ୍ୟ ଦିଆଗଲା । ସଂକଳ୍ପ, ନିଜେ ନିଜ ଗୋଡ଼ରେ ଠିଆହୋଇ ତା'ର ଭବିଷ୍ୟତ ଗଢିବେ । ୧୯୮୧ ମସିହାରେ କୃତିତ୍ୱର ସହ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ୍ ପାସ୍‌କରି କେନ୍ଦୁଝର ମହିଳା କଲେଜରେ ଆଇ. ଏ. ପଢିଲେ । କିନ୍ତୁ ବିଧିର ନିଷ୍ଠୁର କଷାଘାତରେ ସ୍ୱାସ୍ଥ୍ୟ ଖରାପଥାଇ ପରୀକ୍ଷାଦେଇ ଅକୃତକାର୍ଯ୍ୟହେଲେ । ଏହାପରେ ଜୁନ୍ ୨୫ ତାରିଖ ୧୯୮୩ ମସିହାରେ ସେହି ମହିଳା କଲେଜରେ ମାସିକ ଟ୨୦୦ଙ୍କା ଦରମାରେ ନଭେମ୍ବର ୧୯୮୩ ମସିହା ପର୍ଯ୍ୟନ୍ତ ଚାକିରିକରି ଅଧିକା ଷ୍ଟାଫ୍ (Surplus Staff) ଯୋଗୁଁ ଛଟେଇ ହେଲେ । ଫେବୃଆରୀ ୨୦ ତାରିଖ ୧୯୮୪ ମସିହାରେ ଧରଣୀଧର ମହାବିଦ୍ୟାଳୟରେ ଜୁନିଅର କ୍ଲର୍କ ପୋଷ୍ଟରେ ନିଯୁକ୍ତି ପାଇଲେ । ବର୍ତ୍ତମାନ ସେ ଉକ୍ତ କଲେଜ ଅଫିସରେ ଇସୁ ଓ ଡେସ୍‌ପ୍ୟାଚ୍ ସେକ୍‌ସନ୍‌ରେ ଅତି ନିଷ୍ଠାର ସହିତ କାର୍ଯ୍ୟକରି ଚାକିରି କରୁଛନ୍ତି । ମାସିକ ଟ୫୬୭'୪୦ ପଇସା ଦରମା ପାଇ କୋଡ଼ିଏ ବର୍ଷର ଅବିବାହିତା ଝିଅ କସ୍ତୁରୀ ନାୟକ ନଜକୁ ଭାଗ୍ୟବତୀ ମନେକରୁଛନ୍ତି । କାରଣ ଜୁଆଙ୍ଗ ସଂପ୍ରଦାୟର କୌଣସ ଝିଅ ତାଙ୍କ ସ୍ତର ପର୍ଯ୍ୟନ୍ତ ଆସିପାରି ନାହାନ୍ତି । ସେ ଜୁଆଙ୍ଗ ଝିଅମାନଙ୍କର ଏକ ଆଦର୍ଶ । ଚାକିରି ପାଇବାପରେ ନିଜେ ଖୁବ୍ ଭଲରେ ଚଳି ବାପା, ମା' ଓ ଭାଇଭଉଣୀଙ୍କ ଚଳିବାପାଇଁ ଟଙ୍କା ପଠାନ୍ତି । ଏହାଛଡ଼ା ତାଙ୍କ ସାନ ଭାଇକୁ ପାଖରେ ଆଣିରଖି କେନ୍ଦୁଝର କମାରଗୋଡ଼ା ମି. ଇ. ସ୍କୁଲରେ ଚତର୍ଥ ଶ୍ରେଣୀରେ ପାଠ ପଢ଼ାଉଛନ୍ତି । ନିଜେ ଏମ୍. ଏ. ପର୍ଯ୍ୟନ୍ତ ପଢି ଅଧ୍ୟାପକ ହେବାପାଇଁ ମନରେ ଅଭିଳାସ ରହିଛି । ଏଥିପାଇଁ ସେ ଅନେକ ପରିଶ୍ରମ କରୁଛନ୍ତି । ପରିଶ୍ରମ ହିଁ ତାଙ୍କ ଜୀବନର ବ୍ରତ ଏବଂ ଈଶ୍ୱରଙ୍କ ଉପରେ ଭରସାରଖି ତାଙ୍କ ଜୀବନର ଲକ୍ଷ୍ୟ ହାସଲପାଇଁ ସେ ସଦାସର୍ବଦା ତତପର । ଇତି ମଧ୍ୟରେ କସ୍ତୁରୀ ନାୟକ ତା ୨୧-୬-୧୯୮୪ ରିଖରେ ମହିଳା କଲେଜରେ ପୁଣି ଜୁନିଅର କ୍ଲର୍କ ପୋଷ୍ଟରେ ନଯୁକ୍ତ ପାଇଛନ୍ତି ।



ରିଂ ରୋଡ୍, କଟକ





ଲିଙ୍କ ରୋଡ

PRINTED AT ORISSA GOVERNMENT PRESS,
CUTTACK-753010

Vol. XLI No. 1 UTKAL PRASANGA Regd. No. O-05/84
Licence No. C. R. N. P. 5—Licensed to post without Pre-Payment